# ବେଦାନ୍ତ ଅଧ୍ୟୟନ
# ଓ
# ଅନ୍ୟାନ୍ୟ ପ୍ରବନ୍ଧ

ସୁବାସ ଚନ୍ଦ୍ର ପଟ୍ଟନାୟକ
ସୁଶାନ୍ତ କୁମାର ପଣ୍ଡା

# ବେଦାନ୍ତ ଅଧ୍ୟୟନ ଓ ଅନ୍ୟାନ୍ୟ ପ୍ରବନ୍ଧ

**ଲେଖକ**
**ସୁବାସ ଚନ୍ଦ୍ର ପଟ୍ଟନାୟକ**
(ମୋ:୯୯୩୭୩୪୯୧୦୫)
୧୯୭/୧୫,ଜନନୀ ବିହାର, ଖଣ୍ଡଗିରି ବାରି
ପୋଷ୍ଟ-ଖଣ୍ଡଗିରି, ଭୁବନେଶ୍ୱର-୭୫୧୦୩୦
**ସୁଶାନ୍ତ କୁମାର ପଣ୍ଡା**
(ମୋ:୯୮୬୧୭୨୨୨୫୮)
ବାରବାଟୀ, ଭାୟା-ଧର୍ମଶାଳା, ଯାଜପୁର

**ପ୍ରକାଶକ**
ବିଶ୍ୱଲେଖା, ଭୁବନେଶ୍ୱର

**ସଂସ୍କରଣ**
ମକର ସଂକ୍ରାନ୍ତି
ଜାନୁଆରୀ, ୨୦୨୨

**ଡ଼ିଟିପି**
ପ୍ରଣତି ନନ୍ଦ,
ଫାୟାର ଷ୍ଟେସନ୍ ଛକ, ଭୁବନେଶ୍ୱର

**ପ୍ରଚ୍ଛଦ**
ରମେଶ ଗୁମାନ ସିଂ

**ମୁଦ୍ରଣ**
ବିଶ୍ୱରୂପା, ଭୁବନେଶ୍ୱର

**ମୂଲ୍ୟ: ୧୫୦/-**

# ଉତ୍ସର୍ଗ



ଧୃତକନକନିଭାଭା ଶୂଳଲାଙ୍ଗୁଳ ହସ୍ତା,
ପ୍ରବଳ ମହିଷପୃଷ୍ଠେ ଶୂଳମାଭେଦ୍ୟ ମାନା ।
ଗଣପତି ଫଣୀସମ୍ରାଟ୍-ଯୋନି-ଲିଙ୍ଗେନ୍ଦୁ ଚୂଡ଼ା
ରଚୟତୁ ବିରଜାମେ ମଙ୍ଗଳଂ ମଙ୍ଗଳାନାମ୍ ।

**ମା ବିରଜାଙ୍କ ପଦ ତଳେ ସମର୍ପିତ**

ସୁବାସ ଓ ସୁଶାନ୍ତ

ତା - ୨୭।୧୨।୨୦୨୧

**ସ୍ୱାମୀ ମାଧବାନନ୍ଦ ସରସ୍ୱତୀ**

**ଚିନ୍ମୟ ମିଶନ, ପାଟିଆଲା**

ଶ୍ରୀମାନ ସୁବାସ ଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀମାନ ସୁଶାନ୍ତ କୁମାର ପଣ୍ଡା ବେଦାନ୍ତ ଅଧ୍ୟୟନ ଓ ଅନ୍ୟାନ୍ୟ ପ୍ରବନ୍ଧ ପୁସ୍ତକଟି ପ୍ରକାଶ କରିବାକୁ ଯାଉଛନ୍ତି ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲି । ସେମାନେ ଅନେକ ଦିନରୁ ଚିନ୍ମୟ ମିଶନ ସହିତ-ସଂଯୁକ୍ତ ହୋଇ ରହିଛନ୍ତି । ଏହା ପୂର୍ବରୁ ପ୍ରକାଶିତ ଶ୍ରୀମାନ ସୁବାସ ଚନ୍ଦ୍ରଙ୍କର ଅଭୀପ୍ସା ଓ ଅନୁଭବର କାହାଣୀ ଓ ଶ୍ରୀମାନ ସୁଶାନ୍ତ କୁମାରଙ୍କର ସମର୍ପଣ ସୁମନ ଶତକ, ଭଜନ ସୁମନ ଶତକ ଦିବ୍ୟସରଣୀ ଓ ଅମୃତବିନ୍ଦୁ ଆଦି ପୁସ୍ତକ ପାଠକୀୟ ଆଦୃତି ଲାଭ କରିଛି ।

ଏ ପୁସ୍ତକଟି ମଧ୍ୟ ପାଠକ ମହଲରେ ଆଦୃତ ହେବ ବୋଲି ଆଶା କରୁଛି ଏବଂ ଗୁରୁଦେବଙ୍କ ଆଶୀଷ ସେ ଦୁହିଁଙ୍କ ଉପରେ ଝରିପଡୁ ବୋଲି ପ୍ରାର୍ଥନା କରୁଛି ।

ହରି ଓଁ

Sw Madhavanand

ସ୍ୱାମୀ ମାଧବାନନ୍ଦ ସରସ୍ୱତୀ

# ନିଜ କଥା

ଆଜିଯାଏ ଯାହା ପଢିଛି ଓ ଜାଣିଛି ତାକୁ ଜନସମାଜରେ ବାଣ୍ଟିବା ପାଇଁ ଆଶା କରିଥିଲି । ମାତ୍ର ଚାକିରୀ ଜୀବନର ଶୃଙ୍ଖଳା ଭିତରେ ରହି ଅନେକ କଥା କରି ହେଲା ନାହିଁ । ପିଲାଦିନରୁ ବର୍ତ୍ତମାନ ଯାଏ ସଦଗ୍ରନ୍ଥ ପାଠ, ସତ୍‌ସଙ୍ଗ କେବେହେଲେ ଛାଡିପାରିନାହିଁ । ସେଥିରୁ ମତେ ଅନେକ ଶିକ୍ଷା, ସନ୍ଦେଶ ଓ ଅଭିଜ୍ଞତା ମିଳିଛି । ଆଶ୍ରମରୁ ଅନେକ ଶିକ୍ଷା ମିଳିଛି । ପିଲାଦିନରୁ ଶ୍ରୀ ଅରବିନ୍ଦ ପାଠଚକ୍ର ସହିତ ଯୁକ୍ତ ହୋଇ ରହିଛି । ଭୁବନେଶ୍ୱରରେ ଅବସ୍ଥାନ କାଳରେ ଚିନ୍ମୟମିଶନ ସହିତ ସମ୍ପୃକ୍ତ ହୋଇ ବେଦାନ୍ତ, ପଢିବାର ସୁଯୋଗ ପାଇଲି ।

ଶ୍ରୀ ଅରବିନ୍ଦ ବେଦ, ଉପନିଷଦ ଓ ଶ୍ରୀମଦ୍ ଭଗବଦ୍‌ଗୀତା ଉପରେ ଯେଉଁ ସାରଗର୍ଭକ ପୁସ୍ତକ ସବୁ ଲେଖିଛନ୍ତି ତାକୁ ଆଲୋଚନା କରିବା ନିମନ୍ତେ ପାଠଚକ୍ରରେ କୌଣସି ଗୁରୁ ସେଭଳି ମୁଁ ପାଇନାହିଁ । ଚିନ୍ମୟ ମିଶନର କାର୍ଯ୍ୟହେଲା ଏହିସବୁ ଶାସ୍ତ୍ରକୁ ଜନମାନସରେ ଶିକ୍ଷାପ୍ରଦାନ କରିବା । କିନ୍ତୁ ଗୁରୁଗ୍ରହଣ କଥା ଏଥିରେ ଏକ ପ୍ରଶ୍ନ । ମାତ୍ର ଚିନ୍ମୟମିଶନର ଶୃଙ୍ଖଳା ହେଲା ଯେ ଯାହାର ଗୁରୁ ସେ ତାହା ବଦଳାଇବା ଦରକାର ନାହିଁ, କିନ୍ତୁ ଶିକ୍ଷା ଲାଭ କରିପାରିବ । ତେଣୁ ମୁଁ ମା, ଶ୍ରୀଅରବିନ୍ଦଙ୍କ ଛତ୍ରଛାୟାରେ ରହି ବେଦବେଦାନ୍ତ ଶିକ୍ଷା କରିବାକୁ ଏଠାକୁ ଆସିଥିଲି ଓ ବର୍ତ୍ତମାନ ଯାଏ ଚିନ୍ମୟମିଶନର ଗୁରୁମାନଙ୍କ ଅଧିନରେ ରହିଛି । ଏଠାରୁ ଯାହା ଶିକ୍ଷା ପାଇଲି ତାହା ବହୁ ଉଚ୍ଚତର ଜ୍ଞାନ ଓ ଏସବୁ ଶ୍ରୀ ଅରବିନ୍ଦଙ୍କୁ ଅଧିକ ପଢିବା ପାଇଁ ସହାୟକ ହେଲା ।

କରୋନା କାଳରେ ଘରେ ବସି ରହିବାକୁ ହେଲା । ଚିନ୍ମୟ ମିଶନର ଓଡିଶା ମୁଖ୍ୟ ସ୍ୱାମୀ ସଦାନନ୍ଦ ସରସ୍ୱତୀ ଅନଲାଇନ୍‌ରେ ବେଦାନ୍ତ ଶିକ୍ଷାକୁ ବହୁଳ ଭାବରେ ପ୍ରଦାନ କଲେ । ଭୁବନେଶ୍ୱରରୁ ସେ ଏହି କାର୍ଯ୍ୟ ସାରା ଓଡିଶା, କ୍ରମେ ସାରାଭାରତ ପରେ ଭାରତବାହାରେ ଥିବା ଅନୁରାଗୀଙ୍କ ନିକଟରେ ପହଞ୍ଚାଇଲେ । କରୋନା

ପୂର୍ବରୁ ଆମେ କେତେକ ମୁଷ୍ଟିମେୟ ଶ୍ରଦ୍ଧାଳୁ ବଡିଭୋରରୁ ଉଠି ଆଶ୍ରମ ଯାଉଥିଲୁ ଓ ବେଦାନ୍ତ ଶିକ୍ଷା ଗ୍ରହଣ କରୁଥିଲୁ । ଏହା ପ୍ରାୟ ୧୯୯୦ ମସିହାରୁ ଆରମ୍ଭ ହୋଇଥିଲା । ଯେଉଁ ବିଦ୍ୟା ମୁଷ୍ଟିମେୟ କେତେକଙ୍କ ନିକଟରେ ପହଞ୍ଚୁଥିଲା ତାହା କ୍ରମେ ବହୁଳ ପ୍ରସାରିତ ହେବାରୁ ମୋ ମନରେ ଆନନ୍ଦ ଆସିଲା । ସମସ୍ତେ ଏ ଶିକ୍ଷା ପାଆନ୍ତୁ ବୋଲି ମୋ ମନରେ ଯେଉଁ ଆକୁଳତା ଥିଲା ତାହା ଜଗଦୀଶ୍ୱର ପୂର୍ଣ୍ଣ କଲେ ।

କରୋନା କାଳରେ ବହୁଭାବରେ ଉତ୍ସାହିତ ହୋଇ ମୁଁ ଆଶ୍ରମରୁ ଶୁଣିଥିବା ବହୁ ଗଳ୍ପ ଓ ମୋ ଜୀବଦ୍ଦଶାରେ ଅନୁଭବ କରିଥିବା ଅନେକ କାହାଣୀକୁ ନେଇ ଏକ ଗଳ୍ପ ସଙ୍କଳନ ପୁସ୍ତକ "ଅଭୀପ୍‌ସା ଓ ଅନୁଭବର କାହାଣୀ" ପ୍ରକାଶ କଲି ଓ ଏହା ପାଠକ ମହଲରେ ଖୁବ୍ ପ୍ରଶଂସିତ ହେଲା । ମୋର ଆତ୍ମୀୟ ସ୍ୱଜନ ଓ ସାଙ୍ଗସାଥୀ ଆହୁରି ଲେଖିବାକୁ ଉତ୍ସାହିତ କଲେ । ସେମାନଙ୍କ ମଧ୍ୟରୁ ପୂଜ୍ୟା ସତ୍ୟଭାମା ବିଶ୍ୱାଳ, ଡାକ୍ତର ବିଜୟ କୁମାର ଦାସ, ଓୟୁଏଟିର ପ୍ରାକ୍ତନ ମୁଖ୍ୟ ଗ୍ରନ୍ଥାଗାରିକ ତାରା ପ୍ରସାଦ ଖାଡଙ୍ଗା ଓ ମୋର ବାଲ୍ୟବନ୍ଧୁ ମଧୁପୁର କଲେଜର ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା ଅନ୍ୟତମ । ମୋ ପରିବାରରୁ ଦାଦା ପ୍ରତାପ କିଶୋର ପଟ୍ଟନାୟକ, ପ୍ରବୋଧ କୁମାର ପଟ୍ଟନାୟକ, ଭାଇ ଚିତ୍ତରଂଜନ ପଟ୍ଟନାୟକ ଓ ମୋ ଖୁଡୀ ସୌଦାମିନୀ ପଟ୍ଟନାୟକ ସେ ବହିପଢି ବହୁ ସୁନ୍ଦର ମତାମତ ଦେଲେ ଓ ଲେଖା ଚାଲୁରଖିବାକୁ ଆଶୀର୍ବାଦ କଲେ । ମୋର ବଡ ସଢୁ ଶିକ୍ଷକ ପ୍ରମୋଦ କୁମାର ପଟ୍ଟନାୟକ, କୁହୁଡି , ଜିଲ୍ଲାଖୋର୍ଦ୍ଧା ଓ ମୋର ଅନୁଜପ୍ରତୀମ ଭବାନୀ ମୋହନ ପଟ୍ଟନାୟକ, ଜଗମୋହନନଗର ଭୁବନେଶ୍ୱର ବହିଟି ପଢି ସୁନ୍ଦର ମତାମତ ଦେଇ ଏହା ଭବିଷ୍ୟତ ବଂଶଧରଙ୍କ ନିକଟରେ ବହୁ ଉପାଦେୟ ହୋଇପାରିବ ବୋଲି ମତଦେଲେ । ଆମ ଝିଅ ଅଭୀପ୍‌ସା ବହିଟି ପଢି ଖୁସି ହୋଇଗଲା ଓ କେତେକେତେ ଜୀବନର କଥା ଉପଲକ୍ଷ ଦେଇ କହିଚାଲିଲା । ଆମ ଜ୍ୱାଇଁ ସାର୍ଥକ ଦାସ ପଟ୍ଟନାୟକ ଓଡିଶା ବାହାରେ ରହି ଇଂରେଜୀ ମାଧ୍ୟମ ସ୍କୁଲରେ ଶିକ୍ଷାଲାଭ କରିଥିବାରୁ ଓଡିଆ ଭାଷା ଜାଣିନଥିଲା । ତେଣୁ ଝିଅ ତାକୁ ଇଂରାଜୀ ଭାଷାରେ ଗଳ୍ପ ସବୁକୁ ଶୁଣାଇଥିଲା । ସେ ମଧ୍ୟ ବହୁ ସୁନ୍ଦର ମତାମତ ଦେଇଥିଲେ । ମୋର ବନ୍ଧୁ ଅଧ୍ୟାପକ ପ୍ରକାଶ ପରିଡା ଉତ୍ସାହିତ ହୋଇ କହିଥିଲା -ଗଳ୍ପ ଲେଖା ଚାଲୁ ରହୁ, ମଲାପରେ ବି ବଞ୍ଚି ରହିବୁ । ସାଥୀ ନଳିନୀ କାନ୍ତ ରଥ ବହୁ ଭାବରେ ମୋତେ ଉତ୍ସାହିତ କଲେ । କିନ୍ତୁ ବାନ୍ଧବୀ ସ୍ନେହଁ ମିଶ୍ର ଏ ଗଳ୍ପଲିଖନ ଛାଡି ପ୍ରବନ୍ଧ ଲେଖିବାକୁ ପରାମର୍ଶ ଦେଇଥିଲେ ।

ମୋର ସହଧର୍ମୀଣୀ ଶ୍ରୀମତୀ ଗୀତାଞ୍ଜଳୀ ବହିଟି ପଢ଼ି ଖୁସିହେଲା । ମାତ୍ର କହିଲା – ଏ ଗପ ବହିରେ ମୁଁ ସନ୍ତୁଷ୍ଟ ହୋଇପାରୁନାହିଁ । ଜୀବନଯାକ ଆଶ୍ରମ ସହିତ ସଂପୃକ୍ତ ହୋଇ ଯେଉଁ ଜ୍ଞାନ ଅର୍ଜନ କରିଛ ସେ ସବୁ କୁଆଡେ ଗଲା ? ସେଗୁଡାକ ଆମେ ସମସ୍ତେ ଜାଣିବା ଦରକାର । ଏତିକିବେଳେ ମୋର ବନ୍ଧୁ ସୁଶାନ୍ତ କୁମାର ପଣ୍ଡା ସମର୍ପଣ ସୁମନ ଶତକ ନାମରେ ଗୋଟିଏ କବିତା ଗ୍ରନ୍ଥ ପ୍ରକାଶ କଲେ ଓ ମୋ ନିକଟକୁ ପଠାଇଲେ । ସେ ବହିରେ ବେଦାନ୍ତର ଅନେକ ତତ୍ତ୍ୱକୁ ସେ କବିତାରେ ଲେଖିଛନ୍ତି ତାହା ପଢି ଆମେ ଦୁହେଁ ଖୁସିହେଲୁ ଓ ତାଙ୍କୁ ବାରମ୍ବାର କହି ଆଲୋଚନା ଟେଲିଫୋନରେ କଲୁ । ସେ ଖୁସି ହେଲେ ନିଶ୍ଚୟ, ଯାହାର ଫଳସ୍ୱରୂପ ତାଙ୍କର ଅନ୍ୟ ଦୁଇଟି ପୁସ୍ତକ ଯଥା- ଦିବ୍ୟସରଣୀ ଓ ଅମୃତବିନ୍ଦୁ ନିଜସ୍ୱ ଖର୍ଚ୍ଚରେ ପ୍ରକାଶ କରି ବିତରଣ କଲେ । ଏ ସବୁ ପୁସ୍ତକ ପଢି ମୋର ସାନଭାଇ ପ୍ରବାସ ଚନ୍ଦ୍ର ପଟ୍ଟନାୟକ ମୋତେ ଧରି ଶ୍ରୀଯୁକ୍ତ ପଣ୍ଡାଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ ବାସଭବନ ବାରବାଟୀକୁ ଯାଇଥିଲା । ମୋର ସବା ସାନଭଉଣୀ ତୃପ୍ତିମୟୀ ମୋ ବହିପଢି ଅନେକ ଖୁସି ହୋଇ ବାରବାର ଟେଲିଫୋନ୍ କଲା । ସବୁଠାରୁ ବେଶୀ ପରାମର୍ଶ ଦେଲେ ମୋର ଦାଦା ବିଜୟ କୁମାର ପଟ୍ଟନାୟକ (ବୁଲୁ ଦାଦା) । ସେ ବଡ଼ ଗପ ଓ ପ୍ରବନ୍ଧ ଲେଖିବା ପାଇଁ ଉପଦେଶ ଦେଲେ ।

ଏହି ସମସ୍ତ ଆଲୋନଚା ପର୍ଯ୍ୟାଲୋଚନା ଶେଷରେ ବନ୍ଧୁ ସୁଶାନ୍ତ କୁମାର ପଣ୍ଡା ମୋତେ କହିଲେ ଏକ ବେଦାନ୍ତତତ୍ତ୍ୱ ମୂଳକ ପୁସ୍ତକ ସାଥୀହୋଇ ବାହାର କରିବା । ସୁଶାନ୍ତ କୁମାର ପଣ୍ଡା ମୋର ସହପାଠୀ ହେଲେ ମଧ୍ୟ ମୁଁ ତାଙ୍କ କଥାକୁ ଗୁରୁବାକ୍ୟ ଭଳି ମାନ୍ୟ ପ୍ରଦାନ କରେ । ସେ ଆଗେ ତାଙ୍କର ପ୍ରବନ୍ଧଗୁଡିକ ମୋ ପାଖକୁ ପଠାଇଦେଲେ । ତାଙ୍କର ବାରମ୍ବାର ତାଗିଦା ସତ୍ତ୍ୱେ ସେ ନିର୍ଦ୍ଦେଶ ଦେଇଥିବା ସମସ୍ତ ପ୍ରବନ୍ଧ ଲେଖାହୋଇ ପାରିଲା ନାହିଁ । ସେସବୁ ଆଗାମୀ ପ୍ରବନ୍ଧ ପୁସ୍ତକରେ ପ୍ରକାଶ ପାଇବ ।୨୦୨୧ ମସିହା ଶେଷସୁଦ୍ଧା ଏ ବହି ବାହାରିବା କଥା ଏ ଭିତରେ କରୋନା ଯୋଗୁଁ ବଜାର, ପ୍ରେସ୍, ଡିଟିପି ସେଣ୍ଟର ବନ୍ଦ ରହିଲା । ବିଶ୍ୱ ଲେଖା ପ୍ରକାଶନର ମାଲିକ ଶ୍ରୀ ଦେବେନ୍ଦ୍ର କୁମାର ରାଉତ କରୋନା ଓ ଡେଙ୍ଗୁରେ ଆକ୍ରାନ୍ତ ହୋଇ ଦୀର୍ଘଦିନ କାର୍ଯ୍ୟ ବନ୍ଦ ରଖିଲେ । ମୋର ମଧ୍ୟ ଦେହ ଖରାପ ହୋଇ କିଛିଦିନ ମୁଁ ଘରେ ଚୁପ୍ ହୋଇ ରହିଲି । ତେଣୁ ଦଶହରା ୨୦୨୧ରେ ବହି ପ୍ରକାଶିତ ହୋଇପାରିଲା ନାହିଁ ।

ଏବେ ପରିସ୍ଥିତି ଅନୁକୂଳ ହେବାରୁ ଏ ପୁସ୍ତକ ପ୍ରକାଶିତ ହେଉଛି । ଏହାର ପ୍ରକାଶକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ରାଉତ, ଅତି ସୁନ୍ଦର ତଥା ନିର୍ଭୁଲ ଡ଼ିଟିପି

କରିଥିବା ଭଉଣୀ ପ୍ରଣତି ନନ୍ଦ, ଗ୍ରନ୍ଥଟିକୁ ଠିକ୍ ଭାବରେ ସଜାଇ ରୂପ ଦେଇଥିବା ବନ୍ଧୁ ପ୍ରମୋଦ କୁମାର ସାହୁ ଓ ଏକ ଯଥାର୍ଥ କଭର ପୃଷ୍ଠା ତିଆରି କରିଥିବା ବନ୍ଧୁ ରମେଶ ଗୁମାନ ସିଂଙ୍କୁ କୃତଜ୍ଞତା ଜଣାଉଛି । ପାଠକମାନଙ୍କୁ ଏହା କିଛି ଶିକ୍ଷଣୀୟ ଉପାଦାନ ଯୋଗାଇବ ବୋଲି ଆଶା ରଖି ମା ବିରଜାଙ୍କ ନିକଟରେ ତଥା ମା ବାଇଲକ୍ଷ୍ମୀଙ୍କ ନିକଟରେ ପ୍ରାର୍ଥନା କରି ଆଶୀର୍ବାଦ ଭିକ୍ଷା କରୁଛି ।

ସୁବାସ ଚନ୍ଦ୍ର ପଟ୍ଟନାୟକ

# ମୁଖବନ୍ଧ

ଦୃଶ୍ୟମାନ ବିବିଧ ଦ୍ରବ୍ୟ, ପ୍ରାଣୀ ପ୍ରଭୃତି ଏବଂ ପଞ୍ଚ ଜ୍ଞାନେନ୍ଦ୍ରିୟ ଜନ୍ୟ ଜ୍ଞାନ ଦ୍ୱାରା ଯେଉଁ ଜ୍ଞାନ ବା ଧାରଣା ଆମ ମନରେ ଉତ୍ପନ୍ନ ହୁଏ ଜଗତ କେବଳ ସେତିକିରେ ସୀମାବଦ୍ଧ ନୁହେଁ । ଇନ୍ଦ୍ରିୟ ତଥା ମନ, ବୁଦ୍ଧି ଚିତ୍ତ ଅହଂକାରର ଉର୍ଦ୍ଧ୍ୱରେ ଯେଉଁ ତତ୍ତ୍ୱ ବା ଶକ୍ତି ଚରାଚର ସୃଷ୍ଟିକୁ ପାଳନ, ସଂହାର ଆଦି କ୍ରିୟା କରୁଛନ୍ତି ତାହାର ଅସ୍ତିତ୍ୱ ସଂବଧରେ କୁହାଯାଇଛି, ତାହା ଅବାଂମାନସ ଗୋଚର । ଅର୍ଥାତ୍ ମନ ଆମ ସ୍ଥୁଳଶରୀରର ସକଳ କାର୍ଯ୍ୟାବଳୀକୁ ନିର୍ଦ୍ଧାରଣ ଓ ନିୟନ୍ତ୍ରଣ କରୁଛି । ଯେ କୌଣସି କାର୍ଯ୍ୟ କରୁ ବା କରିବୁ, ପ୍ରଥମେ ମନରେ ସେହି ସିଦ୍ଧାନ୍ତ ଗ୍ରହଣ, ପରେ କର୍ମେନ୍ଦ୍ରିୟ ବା ଜ୍ଞାନେନ୍ଦ୍ରିୟ ଆଦି ଦ୍ୱାରା ସମାହିତ ହୋଇଥାଏ । ଛୋଟ ବଡ ଯେ ପ୍ରକାର କର୍ମ ହେଉ, ସିଦ୍ଧାନ୍ତ ଗ୍ରହଣରେ ସ୍ଥିରତା, ନିଶ୍ଚିତତା ନଆସିବା ସ୍ଥିତି ମଧ୍ୟ ସାମୟିକ ଭାବେ କେବେ କେବେ ମାନସିକସ୍ତରରେ ଦେଖାଦେଇଥାଏ । ଏହି ଅବସ୍ଥାକୁ କିଂ କର୍ତ୍ତବ୍ୟ ବିମୂଢ ଅବସ୍ଥା କୁହାଯାଇଛି । ଏ ସ୍ଥିତିର ମଧ୍ୟ ସମାଧାନ ହୋଇଥାଏ । ତେବେ କର୍ମ ସଂପାଦନର ମୂଳବୀଜାଙ୍କୁର ମନୋରାଜ୍ୟରେ ହିଁ ହୋଇଥାଏ । ପରେ ସାଧନ ମାର୍ଗ ମଧ୍ୟରେ ଗତିକରି ପଞ୍ଚ ହେତବ ଆଶ୍ରୟରେ କାର୍ଯ୍ୟ ସିଦ୍ଧି ଘଟିଥାଏ । ସାଧାରଣ ଶରୀର କ୍ରିୟାଠାରୁ ଭବିଷ୍ୟତ ଜୀବନର ଯୋଜନା ପର୍ଯ୍ୟନ୍ତ ସମସ୍ତ ବିଚାର, ଚିନ୍ତନ ମନ ଦ୍ୱାରା ହିଁ ହୋଇଥାଏ । କିନ୍ତୁ ଏତିକିରେ କଣ ଗତର ବ୍ୟାପାର, ଆକଳନ ସମାପ୍ତ ବା ସୀମିତ ହୋଇଗଲା କି ? ସ୍ଥୁଳ ବିଚାରରେ ତ ଏଇଠି ଜଗତ ହିଁ ସମାପ୍ତି, କାରଣ ଏହାପରକୁ ଆଉ ମନ ଚିନ୍ତା କରିପାରୁନାହିଁ, କରିବା ମଧ୍ୟ ସମ୍ଭବ ନୁହେଁ । ଏହାକୁ ଆମେ ଜୀବ (ଜୀବାତ୍ମାର) ସସୀମତା କହିପାରିବା । ସେଥିପାଇଁ ବେଦାନ୍ତରେ କର୍ତ୍ତା ଭୋକ୍ତା, ପୁଣ୍ୟ-ପାପ, ସ୍ୱର୍ଗ-ନରକ, ସୁଖ-ଦୁଃଖ, ଅଶାନ୍ତ-ଶାନ୍ତ, ଅଜ୍ଞାନ-ଜ୍ଞାନ, ବନ୍ଧ-ମୋକ୍ଷ, ଇତ୍ୟାଦି ଭାବେ ବିବୃତ୍ତ ହୋଇଛି । ମୁଁ ଯେଉଁ ସାକ୍ଷୀ ଆତ୍ମା ଉପଯୁକ୍ତ ସାତ ଧର୍ମ ଶରୀରର ନୁହେଁ କିମ୍ବା ମୁଁ ସାକ୍ଷୀ ଆତ୍ମାର ନୁହେଁ । ଏହି ସୂକ୍ଷ୍ମ ଶରୀରର ଧର୍ମରୁ ମୁଁ ପୂର୍ଣ୍ଣ ଅଂସଗ । ମନ ହିଁ କର୍ମର କର୍ତ୍ତା ଏବଂ ଚଉରାଅଶୀ ଲକ୍ଷ ଯୋନିକୁ ଧାରଣ କରି ସେହି

ସେହି କର୍ମ ଫଳର ଭୋକ୍ତା । ମନୁଷ୍ୟ ଜୀବନରେ ଆସି ସଦ୍‌ଗୁରୁଙ୍କ ଠାରୁ ସ୍ୱରୂପ ଜ୍ଞାନ, ସୋଽହମ୍ ଜାଣି ସଂସାର ବଂଧନରୁ ମୁକ୍ତ ହୋଇଥାଏ ।

ସଦା ମେ ସମତ୍ୱଂ ନ ମୁକ୍ତି ନ ବନ୍ଧଃ । ଚିଦାନନ୍ଦ ରୂପ ଶିବୋହଂ ଶିବୋଽହଂ ।

ଯାହା ଅଛି, କିନ୍ତୁ ସାଧାରଣ ଇନ୍ଦ୍ରିୟ ଏବଂ ମନଦ୍ୱାରା ଗୋଚରୀଭୂତ ହେଉନାହିଁ । ଏପରିକି କୁକୁର, ବିରାଡି, କପୋତ, ଶାଗୁଣା ପ୍ରଭୃତି ଜୀବଙ୍କର ଦୃଷ୍ଟି ଓ ଶ୍ରବଣ୍ ମନୁଷ୍ୟଠାରୁ କେତେଗୁଣ ଅଧିକ । ଅତି ମାନସ ଶକ୍ତିର ଅଧିକାରୀ ଋଷି ମୁନିଗଣ କିଛି ଅସାଧାରଣ ଅଦୃଶ୍ୟ ଶବ୍ଦ-ରୂପ, ଅନୁଭବ ଶ୍ରବଣ, ଦର୍ଶନ ବା ଅନୁଭବ ନିର୍ଦ୍ଦିଷ୍ଟ ସ୍ତରରେ ନିଜ ମଧ୍ୟକୁ ଆଣିପାରିଥାନ୍ତି ।

ସାଂପ୍ରତିକ ମନୁଷ୍ୟ ବିବିଧ କାରଣରୁ ବସ୍ତୁବାଦୀ. ଭୋଗବାଦୀ ବିଚାରକୁ ଆପଣେଇ ନେଇଛି । ଫଳରେ ସଂଗ୍ରହ ସଂଚୟ ଜୀବନର ଲକ୍ଷ୍ୟ ବୋଲି ସିଦ୍ଧାନ୍ତ କରିନେବା ସଚରାଚର ପରିଦୃଷ୍ଟ । ସାଧାରଣ ବ୍ୟକ୍ତିଠାରୁ ଗରିଷ୍ଠ ବରିଷ୍ଠ ଉଚ୍ଚପଦସ୍ଥ ମାନେ ମଧ୍ୟ ଏଥିରୁ ବାଦ୍ ପଡୁନାହାଁନ୍ତି । "କିବା ରାଜପୁତ୍ର କିବା ସାଧୁସନ୍ଥ ସର୍ବେ ହୋଇବେ ଦୁର୍ଜନା, ସର୍ବତ୍ର ଉପଲବ୍ଧ ଯାହା ସତ୍ୟ ସନାତନ ଶାଶ୍ୱତ ସେହି ପରମଙ୍କ ବିଚାର ବିଲୟପ୍ରାପ୍ତ । ଅପରପକ୍ଷେ ଯାହା ନଶ୍ୱର କ୍ଷୟଶୀଳ ବିନାଶଶୀଳ ସେ ସବୁକୁ ଏକତ୍ୱ କରିବାରେ ସାରା ସାମର୍ଥ୍ୟ ବିନିଯୋଗ । ତ୍ରିକାଳଦର୍ଶୀ ଋଷିବାକ୍ୟ ଆଧାରରେ ତଦ୍ ବିଷୟକ କେତେକ ସୂଚନାତ୍ମକ ବିଚାର ପ୍ରଣିତ ପ୍ରବଂଧ ଗୁଡିକର ଆଧାର ଶିଳା ।

ଦ୍ୱିତୀୟତଃ ବାଲ୍ୟବଂଧୁ,ସମଭାବାପନ୍ନ, ସୁଚୀଶୀଳ ସୁବାସ ପଟ୍ଟନାୟକଙ୍କ ଚିନ୍ତନ ସହିତ ଏକାତ୍ମ ଦୃଷ୍ଟିରୁ ସମନ୍ୱୟାତ୍ମିକ ଏହି ପୁସ୍ତକ ଆତ୍ମପ୍ରକାଶ କରିବାକୁ ଯାଉଛି । ଭିନ୍ନ ପରିବେଶ ତଥା କାଳାନ୍ତରରେ ଏଗୁଡିକ ରଚିତ ହୋଇଥିଲେ ହେଁ ଏହା ମଧ୍ୟରେ ପାଠକେ "ସୂତ୍ରେ ମଣିଗଣାଇବ" ସୂକ୍ଷ୍ମ ଧାରାଟିକୁ ଅନ୍ତତଃ ଲକ୍ଷ୍ୟ କରିପାରିବେ ।

ସଂପୃକ୍ତ ବିଷୟରେ ସ୍ୱତନ୍ତ୍ର ପୁସ୍ତକ ହେବାର ସଂଭାବନାକୁ ଅସ୍ୱୀକାର କରିହେବନାହିଁ । ମାତ୍ର ସଂକ୍ଷେପରେ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଅବଧାରଣାରେ ସହାୟକ ହେବାର ଆଶା ରଖିବା ଅଯୌକ୍ତିକର ମଧ୍ୟ ନୁହେଁ । ସୁଧୀ ପାଠକଙ୍କ ଯତ୍ କିଞ୍ଚିତ୍ ଉପକାର ହୋଇପାରିଲେ ଶ୍ରମ ସାର୍ଥକ ହେବ । କାରଣ କାର୍ଯ୍ୟ ନିୟନ୍ତା ପରମାତ୍ମାଙ୍କୁ ବିନୀତ ଶରଣ ପୂର୍ବକ ବକ୍ତବ୍ୟ ସମାପନ କରୁଛି । ଅଳଂମତି ବିସ୍ତାରେଣ । ଇତି ।

ସୁଶାନ୍ତ କୁମାର ପଣ୍ଡା
ଅବସରପ୍ରାପ୍ତ ପ୍ରାଧାପକ, ମଧୁପୁର ମହାବିଦ୍ୟାଳୟ.

## ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କ କଲମରୁ.....

# ଅଭିମତ

**ଧନେଶ୍ୱର ସାହୁ**
**ପ୍ରାକ୍ତନ ବିଭାଗୀୟ ମୁଖ୍ୟ, ଦର୍ଶନ ବିଭାଗ**
**ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟ, ଭୁବନେଶ୍ୱର**

ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କ ତିନିଟି ପ୍ରବନ୍ଧ (କ) ବେଦାନ୍ତ ଅଧ୍ୟୟନ କାହିଁକି ? (ଖ) ଭଗବଦ୍ ପାଦ ଶଙ୍କର ଓ ମଣ୍ଡନ ମିଶ୍ର ଶାସ୍ତ୍ରାଲୋଚନା (ଗ) ଯୁଧିଷ୍ଠିର ଓ ଧର୍ମବକଙ୍କ ସମ୍ବାଦ ପଢ଼ିଲି । ତାଙ୍କର ଲେଖାରେ ସେ କେତେକ ପୌରାଣିକ ବିଷୟ ଓ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ଓ ତାଙ୍କ ଲେଖାରେ କିଛି ବାର୍ତ୍ତା ଦେଇଛନ୍ତି । ପ୍ରଥମ ପ୍ରବନ୍ଧଟିରେ ଲେଖକ ସମାଜକୁ କିଛି ମାନବିକ ବାର୍ତ୍ତା ଦେବାକୁ ପ୍ରୟାସ କରିଛନ୍ତି । ଦୁଇଟି ପରିବାର ମଧ୍ୟରେ ସୃଷ୍ଟି ହୋଇଥିବା ଅନାବିଳ ସ୍ନେହ ମମତା କିପରି ପରିସ୍ଥିତି କ୍ରମେ ପୃଥକ ହୋଇଯିବା ପରେ ସ୍ମୃତିର ବିଷୟ ହୋଇଛି ତାହାର ମାର୍ମିକ କାହାଣୀଟିଏ ଦେଇଛନ୍ତି । ବେଦର ସଂହିତା, ବ୍ରାହ୍ମଣ ଉପନିଷଦ୍ ବିଷୟରେ ସୂଚନା ଦେବା ସହ ବେଦାଙ୍ଗ ବିଷୟରେ ଉଲ୍ଲେଖ କରିଛନ୍ତି । ଈଶାବାସ୍ୟ ଉପନିଷଦ୍ ଉପରେ ଆଲୋଚନା ସମୟରେ ତ୍ୟାଗପୂର୍ବକ ଉପଭୋଗ, ପରାବିଦ୍ୟା ଓ ଅପରାବିଦ୍ୟା, ପ୍ରବୃତ୍ତି ମାର୍ଗ ତଥା ନିବୃତ୍ତି ମାର୍ଗ ବିଷୟରେ ସଂକ୍ଷିପ୍ତ ବ୍ୟାଖ୍ୟା ଦେଇଛନ୍ତି । ଭୋଗମୟ, କର୍ମମୟ ଓ ତ୍ୟାଗମୟ ଜୀବନର ତାତ୍ପର୍ଯ୍ୟ  ବିଷୟ କହିଛନ୍ତି ଓ କର୍ମ, ଜ୍ଞାନ ଭିତରେ ପାର୍ଥକ୍ୟ ଦର୍ଶାଇଛନ୍ତି । ପୁରୁଷାର୍ଥର ଭାବନା ବିଷୟ ଧର୍ମ, ଅର୍ଥ,କାମ, ମୋକ୍ଷର ବି ଆଲୋଚନା କରିଛନ୍ତି । ଏସବୁ ବେଦ, ବେଦାନ୍ତର ବିଷୟ ଉଲ୍ଲେଖ କରି ବେଦାନ୍ତ ଅଧ୍ୟୟନର ମହତ୍ତ୍ୱ ବିଷୟକୁ ସୂଚାଇଛନ୍ତି । ଶଙ୍କର ଓ ମଣ୍ଡନ ମିଶ୍ର ଶାସ୍ତ୍ରାଲୋଚନା ପ୍ରବନ୍ଧରେ ଉଭୟ ପ୍ରାଜ୍ଞ ଦାର୍ଶନିକଙ୍କର ତର୍କ ଓ ବିତର୍କ ବିଷୟରେ ଭାରତୀୟ ସମାଜରେ ରହିଥିବା ବିଭିନ୍ନ କିମ୍ବଦନ୍ତୀ ବିଷୟକୁ ନେଇ ଆଲୋଚନା କରିଛନ୍ତି । ଶଙ୍କରଙ୍କ ଅଦ୍ୱୈତବାଦକୁ ଲେଖକ ମହତ୍ତ୍ୱ ଦେଇଛନ୍ତି ଓ ମଣ୍ଡନଙ୍କ ଭାବଧାରାକୁ ନ୍ୟୁନ ଦର୍ଶାଇଛନ୍ତି । ପ୍ରସ୍ଥାନ ତ୍ରୟ ହେଉଛି ଉପନିଷଦ, ବ୍ରହ୍ମସୂତ୍ର ଓ ଗୀତା । ଏହି ଗ୍ରନ୍ଥକୁ ବ୍ୟାଖ୍ୟା କରି

ଭାରତୀୟ ଦର୍ଶନ ପରମ୍ପରାରେ ଅନେକ ଗୁଡିଏ ବେଦାନ୍ତର ଧାରା ଯଥା ଅଦ୍ୱୈତବାଦ, ଦ୍ୱୈତ୍ୱବାଦ, ବିଶିଷ୍ଟାଦ୍ୱୈତବାଦ, ଶୁଦ୍ଧା ଦ୍ୱୈତବାଦ, ଦ୍ୱୈତାଦ୍ୱୈତବାଦ ସୃଷ୍ଟି ହୋଇଛି । ଏଗୁଡିକ ତାତ୍ତ୍ୱିକ ପରିକଳ୍ପନା ଓ ପରସ୍ପର ବିରୋଧୀ । ଏହି ଦୃଷ୍ଟିରୁ ଅଦ୍ୱୈତବାଦ ଏକ ପରିକଳ୍ପିତ ସିଦ୍ଧାନ୍ତ ଓ ବେଦାନ୍ତର ବିଭିନ୍ନ ଧାରା ମଧ୍ୟରୁ ଗୋଟିଏ ଧାରା ମାତ୍ର । ଲେଖକ ଶଙ୍କରଙ୍କ ସହିତ ସଂଶ୍ଳିଷ୍ଟ କରିଥିବା ଚମତ୍କାରିତା ଗୁଡିକ ଅହେତୁକ ଓ ଅବାନ୍ତର । ମହାଭାରତର ବନପର୍ବରେ ଥିବା କାହାଣୀ ଯୁଧିଷ୍ଠିର ଓ ଧର୍ମବକଙ୍କ ସମ୍ବାଦ ଏକ ଜନପ୍ରିୟ କାହାଣୀ । ଏହି କାହାଣୀରେ ସମାଜ ପାଇଁ କେତେକ ନିର୍ଦ୍ଦିଷ୍ଟ ବାର୍ତ୍ତା ରହିଛି । ମୃତ୍ୟୁ ଜୀବନରେ ଅବଶ୍ୟମ୍ଭାବୀ । ଏହା ଜାଣି ସୁଦ୍ଧା ସବୁଦିନ ପାଇଁ ବଞ୍ଚି ରହିବାକୁ ମଣିଷର ପ୍ରଚେଷ୍ଟା ଏକ ଆଶ୍ଚର୍ଯ୍ୟର ବିଷୟ । ଏହି ଆଲୋଚନାରେ ଯୁଧିଷ୍ଠିରଙ୍କ ଧୈର୍ଯ୍ୟ, ସହନଶୀଳତା ଓ ବୁଦ୍ଧିଦୀପ୍ତ ମନର ସୂଚନା ମିଳିଥାଏ । କାହାଣୀ ମାଧ୍ୟମରେ ଜନମାନସକୁ କିଛି ବାର୍ତ୍ତା ଦେବା ଅଧିକାଂଶ ପୌରାଣିକ କଥାର ମହତ୍ତ୍ୱ ମନେହୁଏ ।

ଲେଖକଙ୍କ ଉତ୍ତରୋତ୍ତର ସାରସ୍ୱତ ସଫଳତା କାମନା କରୁଛି ।

ଧନେଶ୍ୱର ସାହୁ

# ବେଦାନ୍ତ ଅଧ୍ୟୟନ କାହିଁକି ?

ଗୋଟିଏ ତାତ୍ତ୍ୱିକ ବିଷୟ ଆଲୋଚନା କରିବା ପାଇଁ ମନରେ ସାହସ ବାନ୍ଧିଥିଲେ ହେ, ଗୋଟିଏ ସରଳ କାହାଣୀରୁ କଥା ଆରମ୍ଭ କରିବାକୁ ଶ୍ରେୟସ୍କର ମନେ କରୁଛି । ଚାକିରୀ କାଳରେ ଗୋଟିଏ ପଡାରେ ରହୁଥିବା ବେଳେ ଗୋଟିଏ ପରିବାର ସହିତ ଆମ ପରିବାରର ସଂପର୍କ ହୋଇଥିଲା । ଆମ ପରିବାରରେ ସ୍ତ୍ରୀ ଓ ପୁଅ, ଝିଅ । ପଡୋଶୀଙ୍କ ପରିବାରରେ ସ୍ୱାମୀ, ସ୍ତ୍ରୀ ଗୋଟିଏ ୭।୮ ବର୍ଷର ପୁଅ । ସ୍ତ୍ରୀ ଗର୍ଭବତୀ । ପ୍ରତିବେଶୀ ପ୍ରତିଦିନ ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି ଏଥରକ ଝିଅଟିଏ ହେଉ । ପ୍ରଥମେ ପୁଅଟିଏ ହୋଇଛି ଏଥରକ ଝିଅଟିଏ ହେଲେ ପରିବାର ସଂପୂର୍ଣ୍ଣ ହୋଇଯିବ । ଏ ପରିବାରର ମାନସିକତା ସହିତ ଆମ ଦୁଇଜଣଙ୍କ ମାନସିକତା କେତେକାଂଶରେ ମେଳଖାଉଥିବାରୁ ଦୁଇ ପରିବାର ଭିତରେ ଘନିଷ୍ଠତା ସୃଷ୍ଟି ହେଲା । ଆମେ ଦୁଇଜଣ ମଧ୍ୟ ଆମ ପରିବାରକୁ ଝିଅଟିଏ ଆସୁବୋଲି ପ୍ରଥମେ ଚାହିଁ ରାଧାକୃଷ୍ଣଙ୍କର ଉପାସନା କରିଥିଲୁ ଓ ୨ୟ ଗର୍ଭରେ ପୁତ୍ରଯାତ ହେଉ ବୋଲି ମନାସୀ ମହାଦେବଙ୍କ ଆଶ୍ରୟ ନେଇଥିଲୁ । ପ୍ରତିବେଶୀଙ୍କ  ପ୍ରାର୍ଥନା ଈଶ୍ୱର ଶୁଣିଲେ ଓ ତାଙ୍କ ପରିବାରକୁ ସୁନ୍ଦର ଝିଅଟିଏ ଆସିଲା । ପରିବାରରେ ଖୁସି ଖେଳିଗଲା । ଆମେ ମଧ୍ୟ ବହୁତ ଖୁସି ହେଲୁ । ଝିଅଟି ଯେମିତି ଆମ ଦୁଇ ପରିବାରର ସଂପତ୍ତି । ପିଲାକୁ ଜନ୍ମଦେବାପରେ ମାତା କେତେକାଂଶରେ ଦୁର୍ବଳ ହୋଇଯାଏ ତାର ବିଶ୍ରାମ ଦରକାର ହୁଏ, ସେହି ନ୍ୟାୟରେ ଝିଅଟିର ମା ବିଶ୍ରାମ ଲୋଡିଲା । ଆମ ପରିବାରରୁ ସେ ଛୁଆଟିକୁ ପାଳନ କରିବାର ଅନେକ ଦାୟିତ୍ୱ ଶ୍ରୀମତୀ ବହନ କଲେ । ଏକଥା ବିଶେଷଭାବେ ଆଲୋଚନା କରିବାର ଆବଶ୍ୟକତା ନାହିଁ, ପାଠକ ସହଜରେ ଅନୁମାନ କରିପାରୁଥିବେ । ଏହିଭଳି ଭାବରେ ଦୁଇ ପରିବାର ଏକ ପରିବାର ଭଳି ଚଳିବା ଅନ୍ୟମାନେ ଲକ୍ଷ୍ୟ କଲେ ।

କିଛି ବର୍ଷ ଏହିଭଳି ବିତିବା ପରେ ଝିଅଟି ସ୍କୁଲକୁ ଯିବାକୁ ଯୋଗ୍ୟ ହେଲା । ଆଜିକାଲି ଭଲ ସ୍କୁଲରେ ନାମ ଲେଖାଇବା ପାଇଁ ସବୁ ଅଭିଭାବକ ଆଶା କରୁଛନ୍ତି

ଯଦିଓ ଭଲସ୍କୁଲର ସଂଜ୍ଞା ସମସ୍ତଙ୍କୁ ଅଜଣା । ଝିଅଟିର ନାମ ଗୋଟିଏ ସ୍କୁଲରେ ଲେଖାଗଲା ଯାହାକି ଆମେ ରହୁଥିବା ଅଞ୍ଚଳରୁ ଅନେକ ଦୂର । ଶିଶୁ ଶ୍ରେଣୀର ପିଲାଙ୍କୁ ଅଭିଭାବକ ନେବା ଆଣିବା କରିବା ଦରକାର । ସ୍କୁଲ ବସ୍‌ରେ ଛୋଟପିଲାଙ୍କୁ ଛାଡିଦେବା ପାଇଁ ସବୁ ଅଭିଭାବକ ନାରାଜ । ସହରରେ ପୁରୁଷ ଲୋକ ଚାକିରୀ କରେ ଘର ସମ୍ଭାଳେ ସ୍ତ୍ରୀ । କେଉଁଠି କେଉଁଠି ସ୍ତ୍ରୀ ମଧ୍ୟ ଚାକିରୀ କରେ । ଯେଉଁଠି ସ୍ତ୍ରୀ ପୁରୁଷ ଉଭୟେ ଚାକିରୀ କରନ୍ତି ସେଠି ପିଲାମାନେ ଅବହେଳିତ । ପରିବାରରେ କେବଳ ପୁରୁଷ ଚାକିରୀ କରୁଥିବାରୁ ସ୍ତ୍ରୀ ଉପରେ ପରିବାରର ପୁରାଭାର ପଡୁଥାଏ । ପୁରୁଷ ସକାଳେ ନେଇ ସ୍କୁଲ ରେ ଝିଅକୁ ଛାଡେ ଓ ସ୍ତ୍ରୀ ଯାଇ ଦିନ ଦଶଟା ପରେ ପିଲାଙ୍କୁ ସ୍କୁଲରୁ ଆଣେ । ଏହିଭଳି କିଛିଦିନ ଯିବାପରେ ପ୍ରତିବେଶୀ ସ୍ଥିର କଲେ ଯେ, ସେ ଘର ବଦଳାଇ ସ୍କୁଲ ପାଖକୁ ଚାଲିଯିବେ । ସେହି ଅନୁସାରେ ଘର ଖୋଜାଗଲା ଓ ପ୍ରତିବେଶୀ ପରିବାର ସେଠାରେ ଯାଇ ରହିଲେ ।

ଘର ବଦଳାଇ ଚାଲିଯିବା ଦିନ, ଦୁଇ ପରିବାରରେ କାନ୍ଦ ବୋବାଳି । ସେମାନେ ଆମକୁ ଛାଡି ଦୁଃଖରେ ଗଲେ ଆମେ ମଧ୍ୟ ସେମାନଙ୍କୁ ଛାଡି ବିଶେଷ କରି ଛୁଆ ଦି'ଟାଙ୍କୁ ନ ଦେଖି କିଛି ଦିନଯାଏ ମ୍ରିୟମାଣ ହେଲୁ । ଆମ ଶ୍ରୀମତୀ ପିଲାଦୁଇଟିଙ୍କୁ ଭୁଲି ନପାରି କେତେଦିନଯାଏ ତାଙ୍କ ଘରକୁ ଅଟୋଭଡା କରି, କେବେ କେବେ ଚାଲି ଚାଲି ଯିବା ଆସିବା କଲେ । ତାଙ୍କ ପରିବାର ମଧ୍ୟ ସପ୍ତାହରେ କେବେ କେମିତି ଆମ ଘରକୁ ଆସି ସ୍ନେହଁ ପ୍ରୀତି ବଢାଇଲେ । ମାତ୍ର ଏହା ବେଶି ଦିନ ରହିପାରିଲା ନାହିଁ । ପରିବାରର ବୋଝ ସମସ୍ତଙ୍କ ଉପରେ ରହିଛି ତା ଛଡା ପାଖରୁ ଅନ୍ତର ହେଲେ ମନରୁ ଅନ୍ତର ଗୋଟେ ପ୍ରବାଦ ରହିଛି । କ୍ରମେ ଦୁଇ ପରିବାର ଭିତରେ ଯିବା ଆସିବା କମିଗଲା । ଆମ ଶ୍ରୀମତୀ ବେଳେବେଳେ ରବେଇଖବେଇ ହୋଇ କହିବେ ଦେଖ ଏ ଲୋକ କେତେ ବେଦର୍ଦ୍ଦୀ, ସ୍ୱାର୍ଥୀ ? ପିଲାଟାକୁ ଟିକେ କେତେବେଳେ ହେଲେ ଆଣି ଆସୁନାହିଁ । ମୁଁ କେବଳ ଯାଉଛି ତାର ତ ଦିନେ ଦେଖା ନାହିଁ । ଏମିତି ଏମିତିରେ ଦୁଇ ପରିବାର ଭିତରେ ବ୍ୟବଧାନ ସୃଷ୍ଟି ହେଲା । କିନ୍ତୁ କିଛି ହେଲେ ମନାନ୍ତର ନାହିଁ । ମୁଁ ଆଗେ ବୁଝିଗଲି- ପରିବାର ଚଳାଇବା କେତେ କଷ୍ଟ । ସମୟ କାହିଁ କାହା ପାଖକୁ ଯାଇ ସୁଖ ଦୁଃଖ ହେବା ପାଇଁ ? ସ୍ତ୍ରୀ ମଧ୍ୟ ନବୁଝି ମନମାରି ରହିଲେ- ସଂସାରତ ଏଇୟା ସମସ୍ତେ ସ୍ୱାର୍ଥରେ ବନ୍ଧା । ଆମେ ସିନା ତା ପିଲାର ସବୁ କାମ କରିଦେଉଥିଲୁ ହେଲେ ତାର କଣ ମନରେ ଆଉ ଅଛି ?

ଏମିତିରେ ଚାରି ପାଞ୍ଚ ବର୍ଷ ବିତିଗଲା । ସଂପର୍କ ଟେଲିଫୋନରେ ସୀମିତ ରହିଥାଏ । ଦିନେ ଗୋଟେ ବାହାଘରରେ ଆମ ଦୁଇଜଣଙ୍କର ସେ ଦୁଇଜଣଙ୍କ ସହିତ ସାକ୍ଷାତ ହେଲା ।  ଆମ ଶ୍ରୀମତୀ ବଡ ଅଭିମାନରେ ସେ ଦୁଇଜଣଙ୍କୁ କେତେ କଥା କହିଲେ, ଗାଳିଦେଲେ, ତା ଝିଅକୁ କୋଳକଲେ, କାନ୍ଦିଲେ । ଅଭିମାନରେ କହିଲେ ତୁମେ ଆମକୁ ଭୁଲିଗଲ । ପିଲାଟାକୁ ଆମେ ସ୍ନେହଁ କରୁଥିଲୁ ତାକୁ ଦିନେ ଦେଖେଇଲ ନାହିଁ ? ଏମିତି କେତେ କେତେ ପୁରୁଣା ଦିନର କଥା । କେତେ ମାନ, ଅଭିମାନ ଆରୋପ ପ୍ରତ୍ୟାରୋପ ଇତ୍ୟାଦି ।

ଏ ସବୁ ମୁଁ ନୀରବରେ ଦେଖୁଥାଏ, ମନକୁ ମନ ମୋ ଭିତରକୁ ପଶିଆସିଲା । ଏଇଠି ବେଦାନ୍ତର ଆବଶ୍ୟକତା ଅଛି । ମଣିଷ ଛାଡି ନପାରିଲେ ଦୁଃଖ ପାଇବ ହିଁ ପାଇବ ।  ଭାଗବତର କୁରର ପକ୍ଷୀ ଏକ ସମୟରେ ଖଣ୍ଡେ ମାଂସକୁ ଧରି ଗୋଟେ ପକ୍ଷୀ ଖାଇବା ଆଶାରେ ଅନ୍ୟ ଡାଳକୁ ଉଡିଯାଆନ୍ତେ ତାକୁ ଅନେକ କାକ ପକ୍ଷୀ ଗୋଡାଇଲେ । ମାଂସକୁ ଥଣ୍ଟରେ ଧରି କୁଆଟି ଉଡିଚାଲିଛି, ପଛେ ପଛେ ଡକାଡକି ହୋଇ ଦଳେ ପକ୍ଷୀ ତାକୁ ଗୋଡାଉଛନ୍ତି । ସମସ୍ତଙ୍କର ଲକ୍ଷ୍ୟ ସେ ପକ୍ଷୀ ଧରିଥିବା ମାଂସକୁ ଛଡାଇ ଆଣିବା । କାଳକ୍ରମେ ଗୋଡାଉଥିବା ପକ୍ଷୀଙ୍କ ସଂଖ୍ୟା ବଢି ବଢି ଚାଲିଛି, ସତେ ଯେମିତି ସେମାନେ ମାଂସନେଇଯାଉଥିବା କାଉଟିକୁ ମାରିଦେବେ । ଏମାନଙ୍କ ସଂଖ୍ୟା ଦେଖି ଆଗରେ ପଳାଇଯାଉଥିବା କାଉଟି ମନରେ ଭାବିଲା-ଜୀବନ  ଯିବା ନିଶ୍ଚିତ, ଏତେ ସଂଖ୍ୟକ କାଉ ମୋତେ ମାରିଦେବେ । ଏ ମାଂସ ଖଣ୍ଡକ ମୋର ଜୀବନ ନେବ ସିନା । ତେଣୁ ଏହାକୁ ଛାଡିଦେବା ବୁଦ୍ଧିମାନର କାମ ହେବ । ତେଣୁ କାଉଟି ମାଂସ ଖଣ୍ଡକୁ ପାଟିରୁ ଛାଡିଦେଲା । ମାଂସ ଖଣ୍ଡକ ତଳେ ପଡନ୍ତେ ସବୁ କାଉ ତାକୁ ଛାଡିଦେଇ ମାଂସ ଖଣ୍ଡକ ନିକଟକୁ ଉଡିଗଲେ । ଏବେ ଶାନ୍ତିରେ କାଉଟି ଗଛ ଡାଳରେ ବସି କିଛି ସମୟ ବିଶ୍ରାମ କଲା ଓ ନିଜ  ଗନ୍ତବ୍ୟ ପଥରେ ଚୁପ ଚାପ୍ ଚାଲିଗଲା । ଏଥିରୁ ସାଧକ ଅନେକ କିଛି ଶିକ୍ଷା କରିପାରିବ । ସଂସାରକୁ ଜାବୁଡି ଧରିଥିଲେ ସଂସାର ତୁମକୁ ଦଂଶନ କରୁଥିବ, ଦୁଃଖ ଦେଉଥିବ । ସଂସାରକୁ ଅନିତ୍ୟବୋଲି ମନେ କରି ଯେ ଅନିତ୍ୟବସ୍ତୁକୁ ଛାଡି ନିତ୍ୟ ବସ୍ତୁ ସନ୍ଧାନରେ ମନଦିଏ ସେ ଦୁଃଖ ପାଏ ନାହିଁ । ବେଦାନ୍ତ ଏଇ କଥା କହେ ।

ବେଦାନ୍ତ ଏକ ଦର୍ଶନ । ଦର୍ଶନ ଶବ୍ଦ ଦୃଶ୍ ଧାତୁରୁ କରଣ ଅର୍ଥରେ ଲ୍ୟୁଟ ପ୍ରତ୍ୟୟ ନିଷ୍ପନ୍ନ ହୋଇଥିବାରୁ ଏହାର ସରଳ ଅର୍ଥ ହେଉଛି –ଯାହା ଦ୍ୱାରା ଦେଖାଯାଏ । ଆମେ ସାଧାରଣତଃ ଆଖିଦ୍ୱାରା ଦେଖିଥାଉ, କିନ୍ତୁ ସଂସାରର ସବୁକଥା ଆଖିଦ୍ୱାରା ବା ଇନ୍ଦ୍ରିୟ

ଦ୍ୱାରା ବା ଦର୍ଶନେନ୍ଦ୍ରିୟ ଦ୍ୱାରା ଦେଖିହୁଏ ନାହିଁ । ଅନେକ ଭାବାତ୍ମକ ବସ୍ତୁ ସୂକ୍ଷ୍ମ ଦୃଷ୍ଟିରେ ଦେଖିହୁଏ । ଏହାକୁ ଜ୍ଞାନପ୍ରାପ୍ତି ବୋଲି କୁହାଯାଏ । ଏହି ଜ୍ଞାନୀବ୍ୟକ୍ତିର ଦୃଷ୍ଟିକୁ ପ୍ରଜ୍ଞାଚକ୍ଷୁ, ଜ୍ଞାନଚକ୍ଷୁ ବା ଦିବ୍ୟଚକ୍ଷୁ ବୋଲି କୁହାଯାଇଥାଏ । ରହିଁଥିବୁ ଦିବ୍ୟନେତ୍ରରେ ବାବୁ, ରୂପ ନ ଦିଶିବ ଦିଶିବ ସବୁ- ଭୀମଭୋଇଙ୍କ ଏ ବାର୍ତ୍ତା ମନୁଷ୍ୟର ଅନୁଭବ ସିଦ୍ଧ ଜ୍ଞାନ ବା ଦୃଷ୍ଟି । ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଲେ- ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟମେ ଯୋଗମୈଶ୍ୱରମ୍ । ଅର୍ଥାତ୍ ହେ ଅର୍ଜୁନ ! ମୁଁ ତୁମକୁ ଦିବ୍ୟଚକ୍ଷୁ ଦେଉଅଛି ଯାହା ସାହାଯ୍ୟରେ ତୁମେ ମୋର ଐଶ୍ୱରିକ ବିଭୂତି ସକଳକୁ ଦର୍ଶନ କରିପାରିବ । ମହାଦେବଙ୍କର ତୃତୀୟ ନେତ୍ରର ବର୍ଣ୍ଣନା ମଧ୍ୟ ପୁରାଣରେ ଦେଖିବାକୁ ମିଳେ । ତେଣୁ ଦର୍ଶନ ଶାସ୍ତ୍ରରେ ସୂକ୍ଷ୍ମ ଦୃଷ୍ଟି ସମ୍ଭୂତ ଜ୍ଞାନ କହିଲେ ଏକ ଦିବ୍ୟ ଅବବୋଧକୁ ବୁଝାଏ । ଏହି ବୋଧ ବା ଜ୍ଞାନ ସୂକ୍ଷ୍ମାତିସୂକ୍ଷ୍ମ ବିଚାର ଓ ବିଶ୍ଳେଷଣ ଦ୍ୱାରା ଲାଭ ହୁଏ ବା ପ୍ରାପ୍ତ ହୁଏ । ଏହିଭଳି ସୂକ୍ଷ୍ମବିଚାର ପ୍ରସୂତ ଜ୍ଞାନ ବା ଅବବୋଧକୁ ଦର୍ଶନ କୁହାଯାଏ । ଯାହାଦ୍ୱାରା ପ୍ରକୃତ ତତ୍ତ୍ୱ ହୃଦୟଙ୍ଗମ କରାଯାଏ ତାହା ଦର୍ଶନ । ସର୍ବଶେଷକଥା ଯାହା କୁହାଯାଏ ତାହା ହେଉଛି ତତ୍ତ୍ୱଦର୍ଶନ । ତତ୍ତ୍ୱଦର୍ଶନର ଅର୍ଥ ହେଉଛି ପ୍ରତ୍ୟେକବସ୍ତୁ ମଧ୍ୟରେ ଥିବା ଅନ୍ତର୍ନିହିତ ଭାବକୁ ଯଥାର୍ଥ ଭାବରେ ବୁଝିବା । ତେଣୁ ଦର୍ଶନ କହିଲେ କେବଳ ଦେଖିବା ବା ଦର୍ଶନ କରିବା ନ ବୁଝି ସମ୍ୟକ୍ ରୂପେ ଦେଖିବା, ବୁଝିବା, ହୃଦୟଙ୍ଗମ କରିବା ବା ଜ୍ଞାନଲାଭ କରିବା ଅର୍ଥରେ ବୁଝିବା ।

ମନୁଷ୍ୟ ଜନ୍ମ, ଏ ସୃଷ୍ଟିର ବୈଚିତ୍ର୍ୟ, ଜୀବନମୃତ୍ୟୁକୁ ନେଇ ଅନେକ ପ୍ରଶ୍ନ ମନୁଷ୍ୟ ମନରେ ଉତ୍ପତ୍ତି ହୋଇଛି । ଏ ପ୍ରଶ୍ନ ଶାଶ୍ୱତ ।ଏ ସୃଷ୍ଟି କେମିତି ହୋଇଛି, ଏ ଆକାଶରେ କିଏ ରଂଗ ଭରିଛି, କିଏ ଏତେ ବଡ ସମୁଦ୍ର ଏ ସୂର୍ଯ୍ୟ ଚନ୍ଦ୍ର ତାରକାଗଣ ତିଆରି କରିଛନ୍ତି ? ମନୁଷ୍ୟ ଖୋଲା ଆକାଶତଳେ ନିଜକୁ ଆବିଷ୍କାର କରିବା ପାଇଁ ବାରମ୍ବାର ଚେଷ୍ଟା କରିଚି । ମୁଁ କିଏ, କୁଆଡୁ ଆସିଛି କେଉଁଠାକୁ ଯିବି ? ମୋ ଜନ୍ମର କାରଣ କଣ- ଏପରି ଅନେକ ଅନେକ ପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର ମନୁଷ୍ୟ ସୃଷ୍ଟିର ଆରମ୍ଭରୁ ଖୋଜିଚାଲିଛି, ଯାହା ତାକୁ ଜଣେ ଅନିସନ୍ଧିତ୍ସୁ ଭାବେ ଦଣ୍ଡାୟମାନ କରାଇଛି । ମନୁଷ୍ୟ ମନରେ ସ୍ୱତଃ ଉଦୟ ହୋଇଛି ଯେ ଏ ସବୁର ଅନ୍ତରାଳରେ କେହି ନା କେହି ଅବଶ୍ୟ ରହିଛି । କେହି ଜଣେ ନିର୍ମାଣକାରୀ ଏସବୁ ସୃଷ୍ଟି କରିଦେଇ କୋଉଠି ନା କୋଉଠି ଲୁଚିଯାଇଛି । ମନୁଷ୍ୟର ଏଇ ଅନିସନ୍ଧିତ୍ସୁ ମନ ଅନବରତ ସେଇ ଅଦୃଶ୍ୟକୁ ଖୋଜିବାର ପ୍ରୟାସ କରିଛି । ଏଇ ଖୋଜିବା ବାଟରେ ମନୁଷ୍ୟ ପାଇଛି ଅନେକ

ପ୍ରଶ୍ନର ଉତ୍ତର ପୁଣି ପାଇନାହିଁ ଅନେକର ଉତ୍ତର । ତେଣୁ ମନୁଷ୍ୟ ଆଖିରେ ସର୍ବଦା ଭରି ହୋଇରହିଛି ଅନେକ କୌତୂହଳ । ଏଇ ଅନନ୍ତ ଖୋଜିବାରୁ ଆରମ୍ଭ ହୋଇଛି ଦର୍ଶନ । କେତେକ କହିଛନ୍ତି ଏ ସୃଷ୍ଟି ଓ ମନୁଷ୍ୟର ନିର୍ମାଣ ଅନ୍ତରାଳରେ କେହି ନା କେହି ମହାନ୍ ପୁରୁଷ ବିଦ୍ୟମାନ ରହିଛି ତ କେହି କହିଛନ୍ତି- ଏ ସବୁ ମୂଳରେ କେହି ବ୍ୟକ୍ତି ନାହିଁ, ରହିଛି କିଛି ତତ୍ତ୍ୱ । ସେହି ତତ୍ତ୍ୱ ବଳରେ ଏ ସବୁ ସୃଷ୍ଟି ସମ୍ଭବ ହୋଇଛି ।

ଜୀବନ ଓ ଏହିସବୁ ବିଷୟର ଅନ୍ତଘଟାଇ ପ୍ରାଚୀନ ଆର୍ଯ୍ୟଋଷିଗଣ ବେଦ ଉଚ୍ଚାରଣ କରିଥିଲେ । ପରବର୍ତ୍ତୀ କାଳରେ ଏଇ ବେଦକୁ ନେଇ ସୃଷ୍ଟି ହୋଇଛି ବିଭିନ୍ନ ମତବାଦ ବା ଦର୍ଶନ । ଯେଉଁ ଦ୍ରଷ୍ଟା ପୁରୁଷମାନେ ବେଦକୁ ସ୍ୱୀକାର କଲେ ସେମାନଙ୍କୁ ଭାରତୀୟ ଦର୍ଶନରେ କୁହାଗଲା ଆସ୍ତିକ ଓ ଯେଉଁମାନେ ବେଦର ପ୍ରାମାଣିକତାକୁ ସ୍ୱୀକାର କଲେ ନାହିଁ ସେମାନଙ୍କୁ ନାସ୍ତିକ ବୋଲି କୁହାଗଲା ।ତେଣୁ ଭାରତୀୟ ଦର୍ଶନକୁ ଦୁଇଭାଗରେ ବିଭକ୍ତ କରାଯାଇଛି । ଗୋଟିଏ ହେଲା ଆସ୍ତିକଦର୍ଶନ ଓ ଅନ୍ୟଟି ନାସ୍ତିକ ଦର୍ଶନ । ସାଂଖ୍ୟ, ଯୋଗ, ମୀମାଂଶା, ନ୍ୟାୟ ବୈଶେଷିକ ଓ ବେଦାନ୍ତ ହେଲେ ଆସ୍ତିକ ଦର୍ଶନ ଓ ଏମାନେ ସମସ୍ତେ ବେଦରେ ଅଟଳ ବିଶ୍ୱାସ ସ୍ଥାପନ କରନ୍ତି । ଅପରପକ୍ଷରେ ବେଦକୁ ବିରୋଧ କରୁଥିବା ଦର୍ଶନ ସମୂହ ହେଲେ ଚାର୍ବାକ, ବୌଦ୍ଧ ଓ ଜୈନ ଦର୍ଶନ । ଏମାନଙ୍କୁ ନାସ୍ତିକ ଦର୍ଶନ କୁହାଯାଏ ।

ଏଇ ଆସ୍ତିକ ଦର୍ଶନମାନଙ୍କ ଭିତରୁ ବେଦାନ୍ତ ଦର୍ଶନ ସଂପର୍କରେ କିଛିମାତ୍ର ଆଲୋଚନା କରିବା ଆମର ଲକ୍ଷ୍ୟ । ବେଦାନ୍ତ କହିଲେ ବେଦର ଅନ୍ତକୁ ବା ଶେଷଭାଗକୁ ହିଁ ବୁଝାଏ । ବେଦକୁ ତିନିଭାଗରେ ବିଭକ୍ତ କରାଯାଏ ଯଥା ସଂହିତା, ବ୍ରାହ୍ମଣ ଓ ଉପନିଷଦ । ଉପନିଷଦ ହେଉଛି ବେଦର ଶେଷଭାଗ । ସଂହିତା ଅଂଶରେ ବେଦର ମନ୍ତ୍ରଗୁଡ଼ିକ ସଂକଳିତ ହୋଇଛନ୍ତି ଏହି ସଂହିତା ଚାରିଗୋଟି ଯଥା ଋକ୍, ଯଜୁଃ, ସାମ ଏବଂ ଅଥର୍ବ । ବ୍ରାହ୍ମଣ ଅଂଶରେ ସଂହିତାରେ ବର୍ଣ୍ଣିତ ହୋଇଥିବା ଯାଗ ଯଜ୍ଞର ବିବରଣୀ ଓ ବ୍ୟାଖ୍ୟା ଦିଆଯାଇଛି । ବୈଦିକ ଯୁଗର ସର୍ବଶେଷ ରଚନା ଗୁଡ଼ିକ ହେଲେ ଉପନିଷଦ । ଉପନିଷଦରେ ବୈଦିକ ଚିନ୍ତା ଓ ଚେତନାର ପରିପୂର୍ଣ୍ଣ ଉପଲବ୍ଧି ପରିଦୃଷ୍ଟ ହୁଏ । ତେଣୁ ଉପନିଷଦ ସମୂହକୁ ବେଦାନ୍ତ ନାମରେ ଅଭିହିତ କରାଯାଏ । ଉପନିଷଦ ଶବ୍ଦଟି ଉପ+ନି+ସଦ୍ ଭାବେ ସନ୍ଧିବିଚ୍ଛେଦ କରାଯାଇପାରେ । ଉପ ଅର୍ଥାତ୍ ସମୀପ । ଗୁରୁଙ୍କ ସମୀପବର୍ତ୍ତୀ ହୋଇ ଯେଉଁ ଜ୍ଞାନ ଲାଭ କରାଯାଏ ତାହା ଉପନିଷଦ । ଉପନିଷଦ ବେଦାନ୍ତ ଦର୍ଶନର ଭିତ୍ତି ହୋଇଥିଲେ ହେଁ ବ୍ରହ୍ମସୂତ୍ର ଓ ଶ୍ରୀମଦ୍‌ଭଗବଦ୍ ଗୀତାକୁ ଏହି ଦର୍ଶନ ସହିତ ଯୁକ୍ତ କରାଯାଏ । ଉପନିଷଦ, ଗୀତା ଓ

ବ୍ରହ୍ମସୂତ୍ରଙ୍କୁ ବେଦାନ୍ତ ଦର୍ଶନରେ ପ୍ରସ୍ଥାନତ୍ରୟୀ ବୋଲି କୁହାଯାଏ । ଏହି ପ୍ରାମାଣିକ ତଥା ପ୍ରସିଦ୍ଧ ଗ୍ରନ୍ଥ ତ୍ରୟ ହେଲେ ବେଦାନ୍ତ ଦର୍ଶନର ତିନି ସ୍ତମ୍ଭ ବା ଆଧାର । ଉପନିଷଦ ସମୂହ ହେଲେ ଶ୍ରୁତି ପ୍ରସ୍ଥାନ, ବ୍ରହ୍ମସୂତ୍ର ଓ ତାର ଭାଷ୍ୟକୁ ନ୍ୟାୟ ବା ତର୍କ ପ୍ରସ୍ଥାନ ଓ ଶ୍ରୀମଦ୍ ଭଗବଦ୍ ଗୀତାକୁ ସ୍ମୃତି ପ୍ରସ୍ଥାନ ବୋଲି ଅଭିହିତ କରାଯାଏ । ବେଦାନ୍ତ ଦର୍ଶନର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଲା ବ୍ରହ୍ମ । ବ୍ରହ୍ମସୂତ୍ରର ପ୍ରଥମସୂତ୍ର -ଅଥାତୋ ବ୍ରହ୍ମ ଜିଜ୍ଞାସାରୁ ଏହା ସ୍ପଷ୍ଟ ହୁଏ । ମାତ୍ର ଜୀବ ଓ ବ୍ରହ୍ମର ସଂପର୍କ ଘେନି ବେଦାନ୍ତୀମାନଙ୍କ ମଧ୍ୟରେ କିଛିଟା ପାର୍ଥକ୍ୟ ପରିଲକ୍ଷିତ ହେଲେ ମଧ୍ୟ ବ୍ରହ୍ମ ହିଁ ଶେଷକଥା ବୋଲି ସଭିଏଁ ସ୍ୱୀକାର କରନ୍ତି । ଦ୍ୱୈତବାଦୀ ମାଧ୍ୱାଚାର୍ଯ୍ୟ ଜୀବ ଓ ବ୍ରହ୍ମକୁ ଦୁଇଗୋଟି ଭିନ୍ନ ତତ୍ତ୍ୱ ବୋଲି ବିଚାର କରନ୍ତି । ଶଙ୍କରାଚାର୍ଯ୍ୟଙ୍କ ମତରେ ଜୀବ ଓ ବ୍ରହ୍ମ ଏକ ଓ ଅଭିନ୍ନ । ତେଣୁ ଶଙ୍କରଙ୍କ ମତକୁ ଅଦ୍ୱୈତବାଦୀ ଦର୍ଶନ ବୋଲି ଅଭିହିତ କରାଯାଏ । ରାମାନୁଜାଚାର୍ଯ୍ୟ ଜୀବ ଓ ବ୍ରହ୍ମ ସଙ୍ଗେ ସଂପର୍କ ଅଂଶ ଓ ଅଂଶୀର ସମ୍ପର୍କ ବୋଲି ଗ୍ରହଣ କରି ବିଶିଷ୍ଟ ଦ୍ୱୈତମତ ସ୍ଥାପନ କରିଛନ୍ତି । ତାଛଡା ବ୍ରହ୍ମ ସଗୁଣ କିମ୍ବା ନିର୍ଗୁଣ ସେ ସଂପର୍କରେ ମଧ୍ୟ ଭାଷ୍ୟକାରଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । ଶଙ୍କରଦର୍ଶନ ନିର୍ଗୁଣ ବ୍ରହ୍ମବାଦୀ ପର୍ଯ୍ୟବେସିତ ହୋଇଥିବା ସ୍ଥଳେ ରାମାନୁଚାର୍ଯ୍ୟ ସଗୁଣ ବ୍ରହ୍ମର ପ୍ରତିପାଦକ । ଉପନିଷଦରେ ସୃଷ୍ଟିର ସତ୍ୟତା ଓ ଅସତ୍ୟତା ଦୁଇଟି ଯାକ ମତବାଦ ଦେଖିବାକୁ ମିଳେ । ବ୍ରହ୍ମ ଏ ଜଗତର ସୃଷ୍ଟିକର୍ତ୍ତା ଏବଂ ବ୍ରହ୍ମଦ୍ୱାରା ସୃଷ୍ଟ ଜଗତ୍ ସତ୍ୟ କୁହାଯାଇଛି ପୁଣି ବ୍ରହ୍ମ ଏକମାତ୍ର ସତ୍ୟ ଏବଂ ଜଗତ୍ ମିଥ୍ୟା ଏ କଥା ମଧ୍ୟ କୁହାଯାଇଛି । ଛାନ୍ଦୋଗ୍ୟ ଉପନିଷଦର ଶାଣ୍ଡିଲ୍ୟବିଦ୍ୟା ଅଧ୍ୟାୟରେ ବ୍ରହ୍ମଙ୍କୁ ଜଗତର ସ୍ରଷ୍ଟା, ପାଳନକର୍ତ୍ତା ଓ ସଂହାରକର୍ତ୍ତା ରୂପେ 'ତଜ୍ଜଲାନ୍' ବୋଲି ବର୍ଣ୍ଣନା କରାଯାଇଛି । ଏହାକୁ ବ୍ରହ୍ମର ସପ୍ରପଞ୍ଚ ବର୍ଣ୍ଣନା ବୋଲି ବୁଝିବାକୁ ହେବ । ବୃହଦାରଣ୍ୟକ ଉପନିଷଦରେ ନିଷ୍ପ୍ରପଞ୍ଚ ବ୍ରହ୍ମର ବର୍ଣ୍ଣନା ଦେଖିବାକୁ ମିଳେ । ଋଷି ଯାଜ୍ଞବଲ୍କ୍ୟ ନେତି ନେତି ତତ୍ତ୍ୱଦ୍ୱାରା ବ୍ରହ୍ମତତ୍ତ୍ୱକୁ ବୁଝାଇବାକୁ ଚେଷ୍ଟା କରିଛନ୍ତି । ନିଷ୍ପ୍ରପଞ୍ଚ ମତାନୁସାରେ ଜଗତପ୍ରକୃତରେ ନାହିଁ ଜଗତ୍ କେବଳ ମାୟା । ପ୍ରପଞ୍ଚ ଶବ୍ଦର ଅର୍ଥ ଦୃଶ୍ୟମାନ ଜଗତ । ଯାହାକିଛି ପରିଦୃଷ୍ଟ ହେଉଛି ତାହା ପ୍ରପଞ୍ଚ । କଠୋପନିଷଦର ନେହନାନାସ୍ତି କିଞ୍ଚନ ପ୍ରଭୃତି ଉକ୍ତିଗୁଡିକ ନିଷ୍ପପ୍ରପଞ୍ଚ ସିଦ୍ଧାନ୍ତକୁ ଅନୁମୋଦନ କରୁଥିଲେ ମଧ୍ୟ ବ୍ରହ୍ମର ସାରବତ୍ତାକୁ ସ୍ୱୀକାର କରାଯାଇଛି । ଉପନିଷଦର ଏହିସବୁ ଧାରଣାକୁ ଆଧାର କରି ଶଙ୍କର ଏବଂ ରାମାନୁଜଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । ଆଚାର୍ଯ୍ୟଶଙ୍କର ନିଷପ୍ରପଞ୍ଚ ମତବାଦକୁ ଅନୁସରଣ କରି ଉପନିଷଦ, ଗୀତା ଓ ବ୍ରହ୍ମସୂତ୍ରର ଭାଷ୍ୟରଚନା କରିଛନ୍ତି । ଏହି

କାରଣରୁ ବିଭିନ୍ନ ବେଦାନ୍ତ ସଂପ୍ରଦାୟ ସୃଷ୍ଟି ହୋଇଛି । ତନ୍ମଧ୍ୟରେ ଶଙ୍କରଙ୍କର ଅଦ୍ୱୈତ ବେଦାନ୍ତ ଦର୍ଶନ ଓ ରାମାନୁଜଙ୍କର ବିଶିଷ୍ଟ ଦ୍ୱୈତ ଦର୍ଶନ ବିଶେଷ ଭାବରେ ପ୍ରସିଦ୍ଧି ଲାଭ କରିଛି ।

ଅଦ୍ୱୈତ ଦର୍ଶନ କହିଲେ ଶଙ୍କରଙ୍କର ପ୍ରବର୍ତ୍ତିତ ବେଦାନ୍ତ ଦର୍ଶନକୁ ବୁଝାଏ । ଅଦ୍ୱୈତ ମତବାଦର ସିଦ୍ଧାନ୍ତ ସର୍ବପ୍ରଥମ ଗ୍ରନ୍ଥ ଗୁରୁ ଗୌଡପାଦଙ୍କ ବିରଚିତ ମାଣ୍ଡୁକ୍ୟ କାରିକାରେ ଦେଖିବାକୁ ମିଳେ । ଏହି ମାଣ୍ଡୁକ୍ୟ କାରିକା ଶଙ୍କରଙ୍କ ଦର୍ଶନର ମୂଳଭିତ୍ତି ବୋଲି ସ୍ୱୀକାର କରାଯାଏ । ଶ୍ରୀ ଗୋବିନ୍ଦପାଦ ଶଙ୍କରଙ୍କର ଗୁରୁ ଓ ଗୌଡପାଦ ହେଉଛନ୍ତି ଗୋବିନ୍ଦପାଦଙ୍କ ଗୁରୁ । ଏହି ଗୁରୁ ପରମ୍ପରାକ୍ରମେ ଆଚାର୍ଯ୍ୟଶଙ୍କର ଅବତୀର୍ଣ୍ଣ ହୋଇଥିଲେ । ମାଣ୍ଡୁକ୍ୟ ଉପନିଷଦ ଉପରେ ମାଣ୍ଡୁକ୍ୟ କାରିକା ରଚନା କରିଛନ୍ତି ଗୁରୁ ଗୌଡପାଦ । ଏ ଗ୍ରନ୍ଥରେ ଚାରିଗୋଟି ପରିଚ୍ଛେଦ ରହିଛି । ପ୍ରଥମ ପରିଚ୍ଛେଦ ଆଗମ ପ୍ରକରଣ, ଯେଉଁଥିରେ ମାଣ୍ଡୁକ୍ୟ ଉପନିଷଦର ବାଖ୍ୟା କରାଯାଇଛି । ଦ୍ୱିତୀୟ ପରିଚ୍ଛେଦ ବୈତଥ୍ୟ ପ୍ରକରଣ ଯେଉଁଥିରେ ଜଗତର ମିଥ୍ୟାତ୍ୱ ପ୍ରତିପାଦନ କରାଯାଇଛି । ତୃତୀୟ ପରିଚ୍ଛେଦ ହେଉଛି ଅଦ୍ୱୈତ ପ୍ରକରଣ ଯେଉଁଥିରେ ଜୀବ ଓ ବ୍ରହ୍ମର ଏକତ୍ୱ ପ୍ରତିପାଦନ କରାଯାଇଛି । ଚତୁର୍ଥ ପରିଚ୍ଛେଦ ଅଲାତ ଶାନ୍ତି ପ୍ରକରଣ,ଯେଉଁଥିରେ ମାୟାର ପ୍ରଭାବରେ କିଭଳି ଜଗତ୍ ସତ୍ୟ ବୋଲି ପ୍ରତିଭାତ ହେଉଛି ତାହାର ବର୍ଣ୍ଣନା ଦେଖିବାକୁ ମିଳେ । ଏହିସବୁ ତତ୍ତ୍ୱ ଉପରେ ଆଚାର୍ଯ୍ୟଶଙ୍କର ତତ୍ତ୍ୱବୋଧ, ଆତ୍ମବୋଧ, ଦୃଗ୍ ଦୃଶ୍ୟ ବିବେକ, ବିବେକ ଚୂଡାମଣି, ଅପରୋକ୍ଷାନୁଭୂତି ଭଳି ପ୍ରକରଣ ଗ୍ରନ୍ଥ ରଚନା କରିବା ସହିତ ମାଣ୍ଡୁକ୍ୟ କାରିକା ଉପରେ ମଧ୍ୟ ଏକ ଭାଷ୍ୟ ରଚନା କରିଛନ୍ତି । ଶଙ୍କରଙ୍କ ବିରଚିତ ବିପୁଳ ଦର୍ଶନ ସାହିତ୍ୟ ବିଶ୍ୱକୁ ଚମତକୃତ କରିବା ନିମନ୍ତେ ପର୍ଯ୍ୟାପ୍ତ ଅଟେ । ତାଙ୍କ ଦର୍ଶନର ସିଦ୍ଧାନ୍ତ ସେ ଅର୍ଦ୍ଧମାତ୍ର ଶ୍ଳୋକରେ ପରିପ୍ରକାଶ କରି ଦେଇଛନ୍ତି-

ଶ୍ଳୋକାର୍ଦ୍ଧେନ ପ୍ରବକ୍ଷ୍ୟାମି ଯଦୁକ୍ତଂ ଗ୍ରନ୍ଥକୋଟିଭିଃ

ବ୍ରହ୍ମସତ୍ୟଂ ଜଗନ୍ମିଥ୍ୟା ଜୀବୋ ବ୍ରହ୍ମୈବ ନାପରଃ ।

ଶ୍ରୀ ରାମାନୁଜ ଓ ଶ୍ରୀ ସଂପ୍ରଦାୟ -ବୈଷ୍ଣବ ଧର୍ମରେ ଚାରିଗୋଟି ସଂପ୍ରଦାୟ ରହିଅଛି । ତାହା ହେଉଛି

୧. ଶ୍ରୀ ବୈଷ୍ଣବ ସଂପ୍ରଦାୟ- ଏହାର ପ୍ରଧାନ ଆଚାର୍ଯ୍ୟ ହେଉଛନ୍ତି ଶ୍ରୀ ରାମାନୁଜ । ସେ ବିଶିଷ୍ଟାଦ୍ୱୈତ ମତର ପ୍ରଚାରକ । ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ସେ ସର୍ବାଧିକ ପ୍ରତିଭାସମ୍ପନ୍ନ ବୋଲି ପ୍ରତିଭାତ ହୁଅନ୍ତି ।

୨. ବ୍ରହ୍ମ ସଂପ୍ରଦାୟ- ଏହାର ଆଚାର୍ଯ୍ୟ ଆନନ୍ଦତୀର୍ଥ ଅଟନ୍ତି । ସେ ମାଧ୍ୱାଚାର୍ଯ୍ୟ ନାମରେ ପରିଚିତ । ତାଙ୍କ ପ୍ରଚାରିତ ମତବାଦକୁ ଦ୍ୱୈତ ମତବାଦ ବୋଲି କୁହାଯାଏ ।

୩. ରୁଦ୍ର ସଂପ୍ରଦାୟ - ଏହି ସଂପ୍ରଦାୟର ଆଚାର୍ଯ୍ୟ ହେଉଛନ୍ତି ବିଷ୍ଣୁସ୍ୱାମୀ ଓ ତଦନୁଯାୟୀ ଆଚାର୍ଯ୍ୟ ବଲ୍ଲଭ ଶୁଦ୍ଧା ଦ୍ୱୈତବାଦର ପ୍ରଚାରକ ।

୪. ସନକ ସଂପ୍ରଦାୟ- ଆଚାର୍ଯ୍ୟ ନିମ୍ବାର୍କ ଏ ସଂପ୍ରଦାୟର ପ୍ରବର୍ତ୍ତକ ଓ ସେ ଦ୍ୱୈତା ଦ୍ୱୈତ ସିଦ୍ଧାନ୍ତର ପ୍ରଚାରକ ଅଟନ୍ତି ।

ବେଦାନ୍ତ ଦର୍ଶନକୁ ଏତେଗୁଡିଏ ମତବାଦ ପରିପୁଷ୍ଟ କରିଥିଲେ ମଧ ଶ୍ରୀଶଙ୍କର ଭାରତ ଜନମାନସରେ ବିଶେଷ ପ୍ରଭାବ ପକାଇଯାଇଛନ୍ତି ଓ ତାଙ୍କର ମତବାଦ ଭାରତୀୟ ଜନମାନସରେ ବହୁଳ ପ୍ରଚାରିତ । ଆମର ଆଲୋଚନାଟି ବିଶେଷଭାବରେ ଶଙ୍କର ବେଦାନ୍ତକୁ ନେଇ ଆଲୋଚିତ ହୋଇଛି ।

ବେଦାନ୍ତ ଶବ୍ଦ ଶୁଣିବା ମାତ୍ରେ କେହି କେହି ଭାବନ୍ତି ଯେ, ଏହା ଏକ ଗମ୍ଭୀର ବିଷୟ । ସାଧୁସନ୍ଥମାନେ ଏହାକୁ କେବଳ ପଢନ୍ତି କିମ୍ବା ଶୁଣନ୍ତି । ମାତ୍ର ଏହା ସେଭଳି କଥା ନୁହେଁ । ବେଦାନ୍ତ ଗୋଟିଏ ଦର୍ଶନ ଯାହାକୁ କି ଭାରତର ସବୁଠାରେ ଆଲୋଚିତ ହୋଇଥିବାର ଦେଖିବାକୁ ମିଳେ । ଅତି ସାଧାରଣ ସ୍ତରର ନିରକ୍ଷର ଚାଷୀ, କହୁଥିବାର ଶୁଣାଯାଏ- ହଉ ଯା' ଧର୍ମ ଅଛି ସେ କଥା ବୁଝିବ । କେହି ଅନ୍ୟାୟ କରି ଖସିଗଲେ ତାର ଶିକାର ହୋଇଥିବା ବ୍ୟକ୍ତି କହେ ହଉ ମୁଁ ସହିଲି ଧର୍ମ ବୁଝିବ । କଥା କଥାକେ ଭାରତୀୟ ହିନ୍ଦୁ କହେ ଈଶ୍ୱର ଅଛନ୍ତି, ସେ ସବୁ ଦେଖୁଛନ୍ତି ସେ ବିଚାର କରିବେ । ଏହା ହେଉଛି ଜୀବନ୍ ବଞ୍ଚିବାର କଳା । ମୃତ୍ୟୁପରେ ମଣିଷର କଣ ହୁଏ ବା ଆତ୍ମାର ଗତି କିପରି ହୁଏ, ଏ ବିଷୟ ଜାଣିବା ପାଇଁ ପ୍ରତ୍ୟେକଙ୍କ ମନରେ କୌତୁହଳ ଯାତ ହୋଇଥାଏ । ସେଥିପାଇଁ ମନୁଷ୍ୟ ଅନେକ ପ୍ରଯତ୍ନ କରେ ତାହାକୁ ଜାଣିବା ପାଇଁ, ମାତ୍ର ଜନ୍ମ ପରବର୍ତ୍ତୀ ଜୀବନ ସମ୍ବନ୍ଧରେ ଜାଣିବା ଯେ ଅତ୍ୟନ୍ତ ଜରୁରୀ ସେ କଥା ମନୁଷ୍ୟ ଭୁଲିଯାଏ । ପୃଥିବୀରେ ଜନ୍ମ ହେବାପରେ କିଭଳି ବଞ୍ଚିବା ଉଚିତ୍ ବା ଜୀବନଧାରଣ କରିବା ଉଚିତ୍ ସେ କଥା ଶିଖିବା ଦିଗରେ କୌଣସି ପ୍ରଯତ୍ନ କରିନଥାନ୍ତି । ଜନ୍ମ ହେବାପରେ ଏ ପୃଥିବୀରେ ଅନେକ ମଣିଷ କେବଳ ଥାଆନ୍ତି (Existing) କେତେକ୍ ଯେନତେନ ପ୍ରକାରେ ବଞ୍ଚିରହନ୍ତି (Surviving) ଅଳ୍ପ କେତେକ ପ୍ରକୃତ ପକ୍ଷେ ବଞ୍ଚନ୍ତି (Living) । ମାତ୍ର କେତେକ ମଣିଷ ଆନନ୍ଦର ସହିତ ବଞ୍ଚିପାରନ୍ତି (Living happily) ଏମାନଙ୍କ ସଂଖ୍ୟା କମ୍ । ମାତ୍ର ଆହୁରି କମ୍ ସଂଖ୍ୟକ ମଣିଷ ମୃତ୍ୟୁପରେ

ମଧ୍ୟ ଜନମାନସରେ ବଞ୍ଚିରହିପାରନ୍ତି (outliving life) । ଏଇ ଶେଷୋକ୍ତ ଦୁଇ ଧାଡ଼ିର ମଣିଷମାନଙ୍କ ସଂଖ୍ୟା ସ୍ୱଳ୍ପ ହେଲେ ମଧ୍ୟ ସେମାନେ ଯଥାର୍ଥରେ ସାର୍ଥକ ମଣିଷ । ଏମାନେ ଜୀବନର ପ୍ରତ୍ୟେକ ଅବସ୍ଥାକୁ ଯଥାର୍ଥ ଭାବରେ ସାମ୍ନାକରି ପ୍ରତ୍ୟେକ ପରିସ୍ଥିତିରେ ସେମାନେ ଖୁସି ରହନ୍ତି ଓ ସେମାନଙ୍କ ସଙ୍ଗଲାଭ କରୁଥିବା ବ୍ୟକ୍ତିଙ୍କୁ ଆନନ୍ଦର ସାଗରରେ ଭସାଇ ନେଇଯାଆନ୍ତି । ଏ ଅସାଧାରଣ ବ୍ୟକ୍ତି ମାନଙ୍କ ସଂଖ୍ୟା ଖୁବ ନଗଣ୍ୟ ଓ ସେମାନଙ୍କ ସଙ୍ଗ ଲାଭ କରୁଥିବା ମଣିଷ ମାନେ ମଧ୍ୟ ବହୁ କୃପା ପାତ୍ର । ସେଥିପାଇଁ କୁହାଯାଇଛି ସାଧୁ ଯେ ମଳୟ ପବନ, କାଷ୍ଠକୁ କରଇ ଚନ୍ଦନ । ଯେଉଁ ମନୁଷ୍ୟମାନେ କେବଳ ପୋକ ମାଛି ପରି ବଞ୍ଚନ୍ତି, ଗୋଟିଏ ପରେ ଗୋଟିଏ ସମସ୍ୟାର ସମାଧାନ କେବଳ କରୁଥାନ୍ତି ଓ ଏସବୁ ସମାଧାନ ପାଇଁ ନାନା କୁଟିଳ ପନ୍ଥାର ଅନୁସରଣ କରୁଥାନ୍ତି ସେମାନେ ସମାଜରେ ଚତୁର ବ୍ୟକ୍ତି ଭାବେ ଗଣାହୁଅନ୍ତି ସିନା, ପୂର୍ଣ୍ଣତା ସେମାନଙ୍କ ଜୀବନରେ ଆସେ ନାହିଁ ।

ସଂସାରରେ ମନୁଷ୍ୟର ଦୁଃଖ ଅନେକ । ତାହାକୁ ବେଦାନ୍ତ ଭାଷାରେ ତ୍ରିତାପ କୁହାଯାଏ- ଏହା ଆଧିଦୈବିକ, ଆଧିଭୌତିକ ଓ ଆଧ୍ୟାତ୍ମିକ ଭାବେ ତିନିପ୍ରକାରରେ ବର୍ଣ୍ଣନା କରାଯାଇଛି । ଇନ୍ଦ୍ରିୟମାନଙ୍କ ଦ୍ୱାରା ଦେଖାଯାଉନଥିବା ଦୁଃଖକୁ ଆଧିବୈଦିକ ଦୁଃଖ କୁହାଯାଏ । ଭୂମିକମ୍ପ, ଅତିବୃଷ୍ଟି, ଅନାବୃଷ୍ଟି, ମହାମାରୀ, ବଜ୍ରପାତ ପ୍ରଭୃତି ଦୈବୀକୋପ ଏହି ଆଧିଦୈବିକ ଦୁଃଖର କାରଣ । ଇନ୍ଦ୍ରିୟମାନଙ୍କ ଦ୍ୱାରା ଜାଣି ହେଉଥିବା ଦୁଃଖକୁ ଆଧିଭୌତିକ ଦୁଃଖ କୁହାଯାଏ । ଶୀତଉଷ୍ଣ, ଚୋର, ହିଂସ୍ରଜନ୍ତୁଭୟ ଯଥା ବ୍ୟାଘ୍ର, ସର୍ପ, ମଶା ଜନିତ ଦୁଃଖ ସକଳ, ଶରୀରର ବିଭିନ୍ନ ରୋଗ, ସ୍ତ୍ରୀ ପୁତ୍ର କନ୍ୟାଙ୍କ ଠାରୁ ମିଳୁଥିବା ଦୁଃଖ ସକଳ ଏହି ଆଧିଭୌତିକ ଦୁଃଖର ଅନ୍ତର୍ଗତ । ଆତ୍ମାକୁ ଆଶ୍ରୟକରି ରହୁଥିବା ସ୍ଥୂଳ, ସୂକ୍ଷ୍ମଶରୀର ସମ୍ବନ୍ଧ ଯୋଗୁ ସୃଷ୍ଟି ହେଉଥିବା ଦୁଃଖକୁ ଆଧ୍ୟାତ୍ମିକ ଦୁଃଖ କୁହାଯାଏ । ମଣିଷର ଚିନ୍ତା, ବିଭିନ୍ନ ଅବସ୍ଥା ଯଥା ଗରିବୀ, ମାନସିକ ଚିନ୍ତା, କ୍ରୋଧ ଈର୍ଷା, କାମ, ଇନ୍ଦ୍ରିୟର ନିଷ୍କ୍ରିୟତା, ବୁଦ୍ଧିର ମାନ୍ୟତା ଓ ଶାରୀରିକ ଦୁର୍ବଳତା ଏହାର ଅନ୍ତର୍ଭୁକ୍ତ ।

ତେବେ ମାନବ ଜୀବନରେ ଦୁଃଖ କଷ୍ଟ ସବୁ ସମୟରେ ରହିଛି । ଏପରି କୌଣସି ବ୍ୟକ୍ତି ସଂସାରରେ ନାହିଁ ଯାହାକୁ ଦୈନନ୍ଦିନ ଜୀବନରେ ଶାରୀରିକ, ମାନସିକ ଅଥବା ବୌଦ୍ଧିକ ଦୁଃଖ ଯନ୍ତ୍ରଣାକୁ ଭୋଗିବାକୁ ପଡ଼ିନାହିଁ । ଶାରୀରିକ ବ୍ୟାଧି ନିଶ୍ଚିତରୂପେ ଜୀବ ଉପରେ ଆକ୍ରମଣ କରିଥାନ୍ତି । ଜନ୍ମମୃତ୍ୟୁ ହେଉଛି ଶାରୀରିକ କ୍ଳେଶର ଚିହ୍ନ । ସେହିପରି କ୍ଷୁଧା ତୃଷା ହେଉଛି ପ୍ରାଣୀର ଓ ସୁଖ ଦୁଃଖ ଭୋଗ ହେଉଛି ମନର କ୍ଳେଶ । ଏ ସମସ୍ତ ସ୍ତରରେ ମଣିଷ ନାନାବିଧ କ୍ଳେଶ ବା କଷ୍ଟପାଇଥାଏ ।

ଏହାଛଡା ଜନ୍ମମୃତ୍ୟୁ ମଣିଷକୁ ଦାର୍ଶନିକରେ ପରିଣତ କରେ । ନିଜ ଜୀବଦ୍ଦଶାରେ ମନୁଷ୍ୟ କେତେକେତେ ନୂତନ ମନୁଷ୍ୟକୁ ଜନ୍ମହେବାର ଦେଖେତ କେତେକେତେ ମନୁଷ୍ୟକୁ ପ୍ରତିଦିନ ମୃତ୍ୟୁ ମୁଖକୁ ଯାଉଥିବାର ଦେଖେ । ଏମାନେ କେଉଁଠୁ ଆସନ୍ତି ଓ କେଉଁଠାକୁ ଯାଆନ୍ତି ତାର ସମାଧାନ ମନୁଷ୍ୟ ନପାଇ ଚିନ୍ତାଗ୍ରସ୍ତ ହୁଏ, ଖୋଜେ, ଅନୁସନ୍ଧାନ କରେ । ତାର ଇନ୍ଦ୍ରିୟ ଗୁଡିକ ଏ ସବୁର ସମାଧାନ ଦେଇପାରେ ନାହିଁ ।

ଏ ସମସ୍ତ ପ୍ରଶ୍ନର ଉତ୍ତର ଦିଏ ବେଦାନ୍ତ ଦର୍ଶନ । ମାନବ ଜୀବନର ଦୁଃଖର କାରଣ ଓ ସୁଖ ଭଣ୍ଡାରର ସନ୍ଧାନ ଦିଏ ବେଦାନ୍ତ । ତେଣୁ ବେଦାନ୍ତ ଦର୍ଶନ ମନୁଷ୍ୟ ପାଇଁ ବହୁ ଉପଯୋଗୀ । ଏହା ମାନବ ମନର ବିକାଶ ସାଧନ କରେ ଓ ଏକ ପରିତୃପ୍ତ ଅବସ୍ଥା ପ୍ରଦାନ କରେ ।

ମୁଣ୍ଡକ ଉପନିଷଦରେ ଶିଷ୍ୟ ସୌନକ ଗୁରୁ ଅଙ୍ଗୀରସଙ୍କୁ ପ୍ରଶ୍ନ ପଚାରିଛନ୍ତି- ଯେ କଣ ଜାଣିଲେ ବା ଜାଣିବା ପରେ ମନୁଷ୍ୟକୁ ଆଉ ଜାଣିବା ପାଇଁ କିଛି ବାକି ରହେନାହିଁ । ଉପନିଷଦ ଦର୍ଶନର ଏ ବାର୍ତ୍ତା ମାଧ୍ୟମରେ ଜଗତକୁ ଅସଲ ଶିକ୍ଷା ବିଷୟରେ କୁହାଯାଇଛି । ଗୁରୁ ଅଙ୍ଗୀରସ ଏହାର  ଉତ୍ତରରେ ଶିଷ୍ୟ ସୌନକଙ୍କୁ କହୁଛନ୍ତି- ସଂସାରରେ ବିଦ୍ୟା ଦୁଇପ୍ରକାର । ଗୋଟିଏ ହେଲା ପରା ବିଦ୍ୟା ଅନ୍ୟଟି ଅପରାବିଦ୍ୟା । ଅପରାବିଦ୍ୟାକୁ ଜାଣିସାରିବାପରେ  ମନୁଷ୍ୟ ପରା ବିଦ୍ୟାକୁ ଜାଣିବା ଦରକାର । ସମସ୍ତ ଚାରିବେଦ ଓ ଷଢ ଅଙ୍ଗ ହେଉଛନ୍ତି ଅପରାବିଦ୍ୟାର ଅନ୍ତର୍ଗତ । ଋକ୍, ଯଜୁଃ, ସାମ, ଅଥର୍ବବେଦ ସହିତ ଷଡ ଅଙ୍ଗ ଜାଣିବା ଜରୁରୀ । ବେଦରେ ଛଟି ଅଙ୍ଗ ବିଷୟରେ କୁହାଯାଇଛି ତାହା ହେଲା ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଏବଂ ଜ୍ୟୋତିଷ । ଆଧୁନିକ ଯୁଗରେ ଆମେ ଯାହା ସବୁ ଜାଣୁଛେ ଯାହା ସବୁ ପଢୁଛେ, ଯଥା ଗଣିତ, ସାହିତ୍ୟ, ବିଜ୍ଞାନ, ଦର୍ଶନ ଏ ସମସ୍ତ ଅପରାବିଦ୍ୟାର ଅନ୍ତର୍ଗତ । ଆଧ୍ୟାତ୍ମିକ ଶାସ୍ତ୍ର ଅଧ୍ୟୟନ ମଧ ଅପରାବିଦ୍ୟାର ଅନ୍ତର୍ଗତ । ଜ୍ଞାନ ଦୃଷ୍ଟିରୁ ବେଦର ରଚନା ଶୈଳୀକୁ ନେଇ ଏହାକୁ ତିନିଭାଗରେ ବିଭକ୍ତ କରାଯାଏ । ତାହାହେଲା ଗଦ୍ୟରଚନା, ପଦ୍ୟରଚନା ଓ ଗୀତିରଚନା । ଗଦ୍ୟ ପ୍ରଧାନ ଯର୍ଜୁଃବେଦ, ପଦ୍ୟପ୍ରଧାନ ଋକ୍‌ବେଦ ଓ ଗୀତିପ୍ରଧାନ ସାମବେଦ । ଏହି ତିନି ବେଦକୁ ତ୍ରୟୀବିଦ୍ୟା କୁହାଯାଏ । ବିଷୟବସ୍ତୁ ଦୃଷ୍ଟିରୁ ବେଦ ଚତୁଷ୍ଟୟ । ଋକବେଦରୁ ଜ୍ଞାନ, ଯର୍ଜୁଃବେଦରୁ କର୍ମକାଣ୍ଡ, ସାମବେଦରୁ ଉପାସନା ପଦ୍ଧତି ଓ ଅଥର୍ବ ବେଦରୁ ବିଜ୍ଞାନ ଶିକ୍ଷା କରିବାକୁ ମିଳେ । ଏହି ଚାରିବେଦର ବିଶେଷଜ୍ଞ ମାନେହେଲେ ଋକବେଦର ହୋତା, ଯର୍ଜୁଃର୍ବେଦର ଅଧ୍ୱର୍ଯ୍ୟୁ, ସାମବେଦର ଉଦ୍‌ଗାତା ଓ ଅଥର୍ବବେଦର ବ୍ରହ୍ମା । ଏହି ବେଦବିଦ୍ୟା ସଂପର୍କରେ

ବିଶଦ ଭାବରେ ଅନ୍ୟତ୍ର ଆଲୋଚିତ ହେବ । ଏବେ ଷଡ଼ଅଙ୍ଗ ବିଷୟରେ ସାମାନ୍ୟ ଧାରଣା ଦେଉଛି-

ଶିକ୍ଷା:- ଆଧୁନିକ ଯୁଗର Phonetics ଏହାର ଅନ୍ତର୍ଭୁକ୍ତ । ମନ୍ତ୍ରଗୁଡ଼ିକୁ କେଉଁଭଳି ଭାବରେ ଉଚ୍ଚାରଣ କରାଯିବ, ପ୍ରତ୍ୟେକ ଉଚ୍ଚାରଣରେ କିଭଳି ଯଥାର୍ଥ ଧ୍ୱନୀ ସୃଷ୍ଟି କରିହେବ ତାହା ଏହି ବିଦ୍ୟାର ଅନ୍ତର୍ଗତ । ଯଥାର୍ଥ ଉଚ୍ଚାରଣ ନିର୍ଦ୍ଦିଷ୍ଟ ଧ୍ୱନୀ ସୃଷ୍ଟିହୋଇ ବାୟୁମଣ୍ଡଳରେ ତରଙ୍ଗ ସୃଷ୍ଟିକରି ଆମପାଖରେ ପହଞ୍ଚିବ (Vibration) । ଉପଯୁକ୍ତ ଶବ୍ଦ ତରଙ୍ଗ ମନରେ ଶାନ୍ତି ପ୍ରଦାନ କରିବା ନିମନ୍ତେ ସକ୍ଷମ । ଏହା ସ୍ୱରଶିକ୍ଷା ।

କଳ୍ପ:- ଏହା କର୍ମକାଣ୍ଡର ବିଭିନ୍ନ ନିୟମାବଳୀକୁ ସୁଚାଏ । ନିର୍ଦ୍ଦିଷ୍ଟ ପ୍ରକାର ଯଜ୍ଞରେ କିଭଳି ଯଜ୍ଞକୁଣ୍ଡ ନିର୍ମାଣ କରାଯିବ, କୁଣ୍ଡର ଗଭୀରତା, ଆକାର ଓ କେତେ ଦ୍ରବ୍ୟ ଲାଗିବ ତାହା ସୂଚିତ କରେ ।

ବ୍ୟାକରଣ:- ଆଧୁନିକ ସାହିତ୍ୟରେ ଆମେ ପାଣିନୀଙ୍କ ପ୍ରଦର୍ଶିତ ବ୍ୟାକରଣ ଅନୁସରଣ କରୁଚେ । ମାତ୍ର ବୈଦିକ ବ୍ୟାକରଣର ବ୍ୟବହାର ସ୍ୱତନ୍ତ୍ର ।

ନିରୂକ୍ତ:- ପ୍ରତ୍ୟେକ ଶବ୍ଦର ଯେପରି ଅର୍ଥ ରହିଛି ସେହିପରି ତାର ଗୋଟିଏ ଧାତୁରୂପ ରହିଛି । ଗୋଟିଏ ଶବ୍ଦର ଧାତୁ ବା (Origin) କଣ ତାହା ଏଠାରେ ଆଲୋଚିତ ହୋଇଛି । ଶବ୍ଦର ଧାତୁ ଜାଣିଗଲେ ତାର ଅର୍ଥ ମଣିଷ ପାଇଁ ସୁଗମ ହୋଇଥାଏ । ଉଦାହରଣ - ଜିଘ୍ରତି ଇତି ବ୍ୟାଘ୍ର । ଯେ ଘ୍ରାଣ କରିପାରେ ଅର୍ଥାତ୍ ଯାହାର ଘ୍ରାଣ ଶକ୍ତି ଅଧିକ ସେ ବ୍ୟାଘ୍ର । ସବୁ ଶବ୍ଦର ଅର୍ଥ ରହିଛି । ନାମବାଚକ, ଗୁଣବାଚକ, ସ୍ଥାନବାଚକ ପ୍ରତ୍ୟେକ ଶବ୍ଦର ନିର୍ଦ୍ଦିଷ୍ଟ ମୂଳ ଓ ଅର୍ଥ ରହିଛି । ପ୍ରତ୍ୟେକ ବିଦ୍ୟାର ମୂଳ -ନିରୂକ୍ତ ।

ଛନ୍ଦ- ନିର୍ଦ୍ଦିଷ୍ଟ ଛନ୍ଦରେ ମନ୍ତ୍ର ଆବୃତ୍ତି କରାଯାଏ । ସ୍ୱରଭଗ୍ନ ହେଲେ ଏକାଗ୍ରତା ଭଗ୍ନ ହୁଏ । ତେଣୁ ମନ୍ତ୍ର ଆବୃତ୍ତି ପାଇଁ ନିର୍ଦ୍ଦିଷ୍ଟ ଛନ୍ଦ ତିଆରି ହୋଇଛି । ତ୍ରିଷ୍ଟୁପ୍,ଅନୁଷ୍ଟୁପ୍, ବୃହତୀ, ଓ ଗାୟତ୍ରୀ ଛନ୍ଦଙ୍କୁ ଏଠାରେ ଆଲୋଚନା ପର୍ଯ୍ୟାୟକୁ ନିଆଯାଇପାରେ । ଅନୁଷ୍ଟୁପ୍ ଛନ୍ଦ ଓ ତ୍ରିଷ୍ଟୁପ୍‌ଛନ୍ଦରେ ଗୀତା ରଚିତ ହୋଇଛି । ଗାୟତ୍ରୀ ଛନ୍ଦରେ ଗାୟତ୍ରୀ ମନ୍ତ୍ର ଓ ବେଦମନ୍ତ୍ର ସମୂହ ରଚିତ ହୋଇଛନ୍ତି । ଶ୍ରୀମଦ୍ ଭାଗବତ ବୃହତୀ ଛନ୍ଦରେ ଲେଖାଯାଇଛି ।

ଜ୍ୟୋତିଷ- ବେଦରେ ଜ୍ୟୋତିଷର ଅର୍ଥ ସ୍ଥାନ ଓ କାଳ ନିର୍ଣ୍ଣୟ । କେଉଁ ସମୟରେ କେଉଁ କର୍ମ କଲେ ବାଞ୍ଛିତ ଫଳମିଳେ ଜ୍ୟୋତିଷ ଶାସ୍ତ୍ରରୁ ଜଣାପଡେ ।

କେଉଁଛନ୍ଦ ଦିନରେ ବା ରାତ୍ରୀର କେଉଁ ପ୍ରହରରେ ଗାନ କରିବେ ତାହା ଏଥିରେ ଦର୍ଶାଯାଇଛି । ସନ୍ଧ୍ୟାସମୟରେ, ରାତ୍ରୀର ୨ୟ ପ୍ରହରରେ, ୩ୟ ପ୍ରହରରେ କିମ୍ବା ପାହାନ୍ତାରେ କଣ ଗାନ କରିବେ ତାହା ଏଥିରେ ବର୍ଣ୍ଣିତ ହୋଇଛି । ଉପନିଷଦ ପାଠର ସମୟ ସୂର୍ଯ୍ୟୋଦୟ ପୂର୍ବରୁ । ଏସବୁ ପାଳନ ନକଲେ ଯଜ୍ଞର / ବିଦ୍ୟାଅଧ୍ୟୟନର ଫଳ ମିଳେନାହିଁ । ବୈଦିକ ଯୁଗର ଋଷିମାନେ ନିର୍ଦ୍ଦିଷ୍ଟ ଭାବରେ ନିୟମ ପାଳନ କରିଥିବାରୁ ତାହା ମନେ ରହିପାରୁଥିଲା ।ପରବର୍ତ୍ତୀ ସମୟରେ ଜ୍ୟୋତିଷ ଶାସ୍ତ୍ର ଭାଗ୍ୟ ସହିତ ଯୋଡାହେଲା ଓ ଧନରୋଜଗାରର ଏକ ମାଧ୍ୟମ ଭାବରେ ପରିଗଣିତ ହେଲା । କିନ୍ତୁ ଶୁଭାଶୁଭ ବେଳ, ସମୟ ସ୍ଥାନ, ଜ୍ୟୋତିଷ ଶାସ୍ତ୍ର ବିଶାରଦ କହିବେ । ବର୍ତ୍ତମାନ ବିଜ୍ଞାନରେ ମଧ୍ୟ ତାହାର ଉପଯୋଗ କରାଯାଉଛି । କେଉଁ ଋତୁରେ କେଉଁ ଫସଲ ଲାଗିବ, ତାହା ଆମ କୃଷି ପଞ୍ଜିକାରେ ଲେଖାଯାଇଛି । କୋଉ ସମୟରେ ସମୁଦ୍ର ଭିତରକୁ ଯିବେ ଓ ଫେରିବେ ଏସବୁ ମଧ୍ୟ ଏ ଶାସ୍ତ୍ରର ଅନ୍ତର୍ଗତ ।

ଏ ସମସ୍ତ ଶାସ୍ତ୍ର ଅପରାବିଦ୍ୟାର ଅନ୍ତର୍ଭୁକ୍ତ । ଆଜିକାଲି ସ୍କୁଲ କଲେଜରେ ପଢା ହେଉଥିବା ସମସ୍ତ ବିଦ୍ୟା ଅପରାବିଦ୍ୟାର ଅନ୍ତର୍ଗତ । ଅପରାବିଦ୍ୟା ପ୍ରାଚୁର୍ଯ୍ୟ ଦେଇପାରେ ମାତ୍ର ଜୀବନର ପୂର୍ଣ୍ଣତା ଦେଇପାରେନାହିଁ । ତେଣୁ ପରାବିଦ୍ୟା ଜାଣିବା ନିହାତି ଜରୁରୀ । ପରାବିଦ୍ୟା ମନୁଷ୍ୟକୁ ପୂର୍ଣ୍ଣତା ଦିଏ । ଏକଥା ବେଦାନ୍ତ ଶିକ୍ଷାଦିଏ । ପରାବିଦ୍ୟା ତାହା– ଯାହାଦ୍ୱାରା ସେହି ଅକ୍ଷର ବ୍ରହ୍ମଙ୍କ ପ୍ରାପ୍ତିହୁଏ । ଯେଉଁ ବିଦ୍ୟାଦ୍ୱାରା ଅକ୍ଷର ଅବିନାଶୀ ବ୍ରହ୍ମତତ୍ତ୍ୱର ଅନୁଭୂତି ହୁଏ ତାହା ପରାବିଦ୍ୟା । କର୍ମକାଣ୍ଡ ନିୟମ ପାଳନ ପୂର୍ବକ ଆଚରଣ କରିବାପରେ ବା କର୍ମଯୋଗ ଆଚରଣ କରିବାପରେ ସାଧକର ଅନ୍ତଃକରଣ ଶୁଦ୍ଧ ହୋଇଯାଏ ଓ ସେ ଗୁରୁଙ୍କ ନିକଟକୁ ଯାଇ ଜ୍ଞାନ ପ୍ରାପ୍ତି ନିମନ୍ତେ ପ୍ରାର୍ଥନା କରେ । ଗୁରୁ ଏଭଳି ବିଦ୍ୟା ପ୍ରଦାନ କରନ୍ତି ଯାହାକୁ କି ଶବ୍ଦଦ୍ୱାରା କିମ୍ବା ବାଣୀଦ୍ୱାରା ପରିପ୍ରକାଶ କରାଯାଇପାରିବ ନାହିଁ । କର୍ମଯୋଗ ବା କର୍ମକାଣ୍ଡ ପରେ ସେହି ତତ୍ତ୍ୱକୁ ଜ୍ଞାନ କରାଯାଏ ଯାହାର ଫଳହେଉଛି ଅମୃତତ୍ୱ ପ୍ରାପ୍ତି ଅର୍ଥାତ୍ ସମସ୍ତ ବନ୍ଧନରୁ ମୁକ୍ତି । ମନୁଷ୍ୟ ଜୀବନର ସର୍ବଶେଷ ଲକ୍ଷ୍ୟ ଏହି ଅମୃତତ୍ତ୍ୱ ପ୍ରାପ୍ତିରେ ହିଁ ନିହିତ–ଏହା ବେଦାନ୍ତ ଶିକ୍ଷାଦିଏ । ପରା ବିଦ୍ୟା ହେଲା ଅକ୍ଷର ତତ୍ତ୍ୱକୁ ଜାଣିବା । ଏହି ଅକ୍ଷର ତତ୍ତ୍ୱର ଜ୍ଞାନ ଉପନିଷଦରେ ବର୍ଣ୍ଣନା କରାଯାଇଛି । ଶ୍ରୀମଦ୍ ଭଗବଦ୍ ଗୀତାର ଅକ୍ଷର ବ୍ରହ୍ମ ଯୋଗ (ଅଷ୍ଟମ ଅଧ୍ୟାୟ) ମଧ୍ୟ ପ୍ରଣିଧାନ ଯୋଗ୍ୟ । ଅ –କ୍ଷର ଅର୍ଥାତ୍ ଅପରିବର୍ତ୍ତନୀୟ ଯାହା ବଦଳେ ନାହିଁ । ଯାହା ନିତ୍ୟ । ଯାହାଦ୍ୱାରା ନିଜର ଅମୃତତ୍ତ୍ୱକୁ ଅନୁଭବ କରିହୁଏ ତାହା ଅକ୍ଷର । ତେଣୁ ବେଦମାନଙ୍କୁ କୁହାଯାଇଛି ଶବ୍ଦ ବ୍ରହ୍ମ ।

ମାଣ୍ଡୁକ୍ୟ ଉପନିଷଦରେ ଆତ୍ମାର ଚାରିପାଦ ବୋଲି କୁହାଯାଇଛି । ଆତ୍ମ ଅନୁଭୂତି ହେଲା ପରାବିଦ୍ୟା । ଯେ ଅକ୍ଷରତତ୍ତ୍ୱକୁ ଜାଣିବା ପାଇଁ ପ୍ରୟାସ କରେ ସେ ପରାବିଦ୍ୟାର ଅନୁସନ୍ଧାନକାରୀ ହୋଇଉଠେ । ଏହା ଜାଣିଲେ ସବୁ ଜାଣିବା ହୋଇଯାଏ । ଆଉ କୌଣସି ଜିନିଷ ଜାଣିବା ପାଇଁ ବାକୀ ରହେନା । ଉପନିଷଦ ବା ବେଦାନ୍ତ ଏହି ଶିକ୍ଷା ଦିଏ ।

ଏ ସମ୍ପର୍କରେ ଆମେ ଅଧିକ ଆଲୋଚନା ପାଇଁ ଇଶାବାସ୍ୟ ଉପନିଷଦର ପ୍ରଥମ ତିନୋଟି ମନ୍ତ୍ରକୁ ନେଇପାରିବା- ପ୍ରଥମମନ୍ତ୍ର -

ଇଶାବାସ୍ୟମିଦଂ ସର୍ବଂ ଯକ୍ରିଞ୍ଚ ଜଗତ୍ୟାଂ ଜଗତ୍

ତେନ ତ୍ୟକ୍ତେନ ଭୁଞ୍ଜିଥାଃ ମା ଗୃଧଃ କସ୍ୟ ସ୍ୱିଦ୍ଧନମ୍ ॥

ଏ ବିଶ୍ୱରେ ଯାହା କିଛି ରହିଛି ତାହା ସମସ୍ତ ଈଶ୍ୱରଙ୍କ ଦ୍ୱାରା ପରିବ୍ୟାପ୍ତ ବା ଆଚ୍ଛାଦିତ । ତେଣୁ ଏହିସବୁ ସଂପଦକୁ ତୁମେ ତ୍ୟାଗ ପୂର୍ବକ ଉପଭୋଗ କର । ଅନ୍ୟ କାହାରି ଧନ ପ୍ରତି ଲୋଭ କରନାହିଁ । ଏ ଉପନିଷଦର ପ୍ରଥମମନ୍ତ୍ର ଓ ଏହା ଇଶଉପନିଷଦର ସାରକଥା । ଯାହାକିଛି ଆମେ ଆମର ମନବୁଦ୍ଧି ତଥା ଇନ୍ଦ୍ରିୟଦ୍ୱାରା ଅନୁଭବ କରିପାରୁଛୁ ତାହା ସବୁ ଈଶ୍ୱରଙ୍କ ଦ୍ୱାରା ପରିବ୍ୟାପ୍ତ । ଈଶତତ୍ତ୍ୱ ସବୁର ସାରତତ୍ତ୍ୱ, ଯାହାକୁ ଆତ୍ମତତ୍ତ୍ୱ ମଧ୍ୟ କୁହାଯାଏ । ଅବିଦ୍ୟା ସମୂହ ଦୁଃଖମାନଙ୍କର ମୂଳକାରଣ । ଅବିଦ୍ୟାକୁ ବିଦ୍ୟାଦ୍ୱାରା ଦୂର କରି ସବୁ ଦୁଃଖକୁ ଦୂରେଇଦେବା ଆବଶ୍ୟକ । ଏହି ଅବିଦ୍ୟାରୂପୀ ଆବରଣ ଦୂରହେଲେ ଈଶ୍ୱର ଦର୍ଶନ ସମ୍ଭବ ହେବ । ବ୍ରହ୍ମବିଦ୍ୟା ବା ଯୋଗଶାସ୍ତ୍ର ଶ୍ରୀମଦ୍ ଭଗବତ୍ ଗୀତାକୁ ମଧ୍ୟ କୁହାଯାଏ । ଯୋଗଶାସ୍ତ୍ର ହେଲା ଗୋଟେ ଜିନିଷକୁ ଜାଣିବା ଓ ତାକୁ ଜୀବନକ୍ଷେତ୍ରରେ ପ୍ରଯୋଗ କରିବା । ପ୍ରଥମେ ଜୀବନ୍ଦର୍ଶନ, ଜ୍ଞାନ ଯୋଗ, କହିଲେ କଣ ତାକୁ ବୁଝିବା । ମା ଗୃଧଃ କସ୍ୟସ୍ୱିଦ ଧନମ୍ , ଶେଷରେ ତେନ ତ୍ୟକ୍ତେନ ଭୁଞ୍ଜିଥା । ସେ କାହାର ସଂପତ୍ତିରେ ଲୋଭାନ୍ୱିତ ହେବନାହିଁ । ସେ ନିଜକୁ ଅନ୍ୟ ସହିତ ତୁଳନା କରି ନିଜକୁ କେବେ ବଡ କିମ୍ବା କେବେ ସାନବୋଲି ଭାବିବ ନାହିଁ । ପୁଣି ସଂସାରକୁ ଭୋଗ କରିବ । ଉପନିଷଦରେ ଭୋଗକୁ ନିଷିଦ୍ଧ କରାଯାଇନାହିଁ । ସେ ତ୍ୟାଗ ଦ୍ୱାରା ଭୋଗ କରିବ । ତାର ଯେତିକି ଦରକାର ସେତିକିରେ ସଂସାରକୁ ନେଇ ଭଗବାନଙ୍କ ପ୍ରସାଦ ବୁଦ୍ଧିରେ ତାକୁ ଭୋଗ କରିବ । ଅନ୍ୟକୁ ହିଂସା କରିବ ନାହିଁ କିମ୍ବା ଦ୍ୱେଷ ରଖିବ ନାହିଁ । ଭଗବାନଙ୍କର ସ୍ୱରୂପ ତିନୋଟି, ସେ ସର୍ବଶକ୍ତିମାନ ସେ ସର୍ବଜ୍ଞ ଓ ସେ ସର୍ବବ୍ୟାପକ । ଏ ତତ୍ତ୍ୱକୁ ଅନୁଭବ

କଲେ ମନୁଷ୍ୟ ବୁଝିପାରିବ ଯେ ଭଗବାନଙ୍କ ନିୟନ୍ତ୍ରଣରେ ଏ ସଂପୂର୍ଣ୍ଣ ଜଗତ ପରିବ୍ୟାପ୍ତ । ସମସ୍ତଙ୍କ ପାଇଁ ନିୟମକୁ ଆମେ ଚାହିଁଲେ ଈଶ୍ୱର ପ୍ରଦତ୍ତ କରିପାରିବା ।ପୁଣି ମନୁଷ୍ୟ ନିଜର ମନକୁ ରାଗ ଦ୍ୱେଷ ସ୍ୱାର୍ଥ ନିଜ ମନ ଭିତରେ ରଖି ବାହାରେ ଶାନ୍ତ ରହି ସମତା ଦେଖାଇବାରେ କିଛି ଉପକାର କରିପାରିବ ନାହିଁ । କେତେକ ବ୍ୟକ୍ତି ବାହାରକୁ ଶିଷ୍ଟ ଦିଶୁଥିଲେ ହେଁ ଭିତରେ ଶାନ୍ତ ନୁହଁନ୍ତି । ସେମାନଙ୍କର ମନ ନକାରାତ୍ମକ ହୋଇଥାଏ ଓ ସେମାନେ ଅଶାନ୍ତ ହୋଇଥାନ୍ତି । ଅଶାନ୍ତ ମନୁଷ୍ୟର ସୁଖ ଅନୁଭୂତି ହୋଇପାରେନା । ଯେଉଁ ମଣିଷ ଭାବୁଛି ମୋ ଜୀବନରେ ବହୁତ ଦୁଃଖ, ଯେ ଭାବୁଛି ମୋତେ କେହି ଭଲପାଉନାହାଁନ୍ତି ସେ ମଣିଷ ବାହାରେ କର୍ତ୍ତବ୍ୟ କର୍ମ କରୁଥିଲେ ମଧ୍ୟ ତାର ମନ ନକାରାତ୍ମକ ଥାଏ । ସେ ତାମସିକ ବ୍ୟକ୍ତି ଭାବରେ ଜୀବନଯାପନ କରେ ଓ ଜୀବନରେ ଭଗବାନଙ୍କ ଦାନକୁ ପ୍ରତିମୂହୁର୍ତ୍ତରେ ଅସ୍ୱୀକାର କରିଚାଲିଥାଏ । ସେ ନକାରାତ୍ମକ ଭାବନାକୁ ସକାରାତ୍ମକ ଓ ସକାରାତ୍ମକକୁ ନକାରାତ୍ମକ ବୋଲି ଭାବୁଥାଏ । ସେ ମନୁଷ୍ୟ ଭଗବାନଙ୍କର ସର୍ବଶକ୍ତିମାନ ତଥା ସର୍ବଜ୍ଞ ବିଭାବକୁ ବୁଝିପାରେନାହିଁ ।

ତେନ ତ୍ୟକ୍ତେନ- ଅର୍ଥାତ୍ ସେହି ତ୍ୟାଗଦ୍ୱାରା । ଈଶ୍ୱରଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିବା ଦ୍ରବ୍ୟ ସମୂହ । ଈଶ୍ୱର ଯାହାକିଛି କର୍ମଫଳସ୍ୱରୂପ ପ୍ରଦାନ କରିଛନ୍ତି ତାକୁ ପ୍ରସାଦ ରୂପେ ଭାବି ତାକୁ ଭୋଗ କରି ମନୁଷ୍ୟ ସୁଖୀ ହେବା ଉଚିତ୍ । ଧନ ହେଉଛି ସମ୍ପଦ । ଜୀବନ ବଞ୍ଚିବାର ପ୍ରତ୍ୟେକ ସାଧନ ହେଉଛି ଧନ । ଜ୍ଞାନ, ଭକ୍ତି, ସେବା ମଧ୍ୟ ଧନ । ମୋ ପାଖରେ ନଥାଇପାରେ ଅନ୍ୟକାହାର ଦେଖି ଦୁଃଖୀ ହେବିନାହିଁ । ମୁଁ ସବୁ ଭୋଗ କରିବି ଅନ୍ୟ କାହାକୁ ଦେବିନାହିଁ ଏପରି ମଧ୍ୟ ନୁହେଁ । ଅନ୍ୟର ସଂପତ୍ତି ବା ଧନକୁ ଦେଖି ହିଂସା କରନାହିଁ । ସମଭାଗୀ ହେଲେ ସୁଖ । ଅନ୍ୟକୁ ନ ଦେଇ ଭୋଗ କଲେ ଦୁଃଖ । ବେଦାନ୍ତର ଏହା ସାର୍ବଜନୀନ ଆବେଦନ ।

ଭଗବାନଙ୍କ ସମ୍ବନ୍ଧରେ ଏ ହେଉଛି ଜ୍ଞାନ । ଜ୍ଞାନରେ ଯୁକ୍ତହୋଇ ମଣିଷ ଏଭଳି ତ୍ୟାଗପୂତ ଜୀବନଯାପନ କଲେ ନିଜେ ସୁଖୀ ହେବା ସହିତ ଅନ୍ୟକୁ ମଧ୍ୟ ସୁଖରେ ରଖିପାରିବ । ଯଦି ଜଣେ ଜ୍ଞାନଯୁକ୍ତ ଜୀନନ ଯାପନ କରୁନାହିଁ ତେବେ ସେ କର୍ମମାର୍ଗ ଅନୁସରଣ କରିପାରେ ।

କୁର୍ବନ୍ନେବେହ କର୍ମାଣି ଜିଜୀବିଷେତ୍ ଶତଗଂ ସମାଃ
ଏବଂ ତ୍ୱୟି ନାନ୍ୟଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ ॥

ଏହି ଜଗତରେ କର୍ମ କରି ମନୁଷ୍ୟ ଏକଶହ ବର୍ଷ ବଞ୍ଚିବାକୁ ଇଛା କରିବା ଉଚିତ୍ । ଏହା ବ୍ୟତୀତ ଅନ୍ୟ କୌଣସି ମାର୍ଗ ନାହିଁ ।ଏଭଳି ପୁରୁଷକୁ କର୍ମ ବାନ୍ଧିପାରେ

ନାହିଁ ଅର୍ଥାତ୍ ବନ୍ଧନରେ ପକାଏ ନାହିଁ । ଋଷିମାନେ ମନୁଷ୍ୟର ଆୟୁକୁ ଶହେବର୍ଷ ବୋଲି କହିଛନ୍ତି । ତେଣୁ ମନୁଷ୍ୟ କର୍ମ କରି କରି ଶେଷ ପର୍ଯ୍ୟନ୍ତ ଶହେ ବର୍ଷ ବଞ୍ଚିବା ଉଚିତ୍ । ଦଳେ ଲୋକ ବଞ୍ଚିବାରେ ମଧ୍ୟ ବିଚ୍ଛାର ହୋଇଯାଆନ୍ତି କାରଣ ସେମାନଙ୍କ ନିକଟରେ କର୍ମ ନଥାଏ । କର୍ମର କୌଶଳ ଜଣାନଥିବାରୁ ବୃଦ୍ଧାବସ୍ଥାରେ କର୍ମ କରିପାରନ୍ତି ନାହିଁ । ତେଣୁ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଉଚିତ୍- ମୋ କର୍ମକୁ ମୁଁ ବଞ୍ଚିବି । ଜୀବନର ଶେଷ ପର୍ଯ୍ୟନ୍ତ କର୍ମ କରୁଥିବି ତାହା କର୍ମ ନିଷ୍ଠା । ଗୀତାର କର୍ମଯୋଗରେ କୁହାଗଲା ଅକର୍ମ ପ୍ରତି କେବେହେଲେ ମୋର ସଙ୍ଗ ନଆସୁ । ଜୀବନରେ ଥିବାବେଳେ ଭାବୁ ଯେ ଆମେ କର୍ମ କରିବୁ ନାହିଁ, ମାତ୍ର ଫଳଭୋଗ କରିବୁ । ସାଧୁସନ୍ଥଙ୍କର ଅଲୌକିକତାରୁ ଦେଖୁ, ଭାବୁ ସେହିଭଳି ହୋଇଗଲେ କିଛି ନକରି ଜୀବନ ବଞ୍ଚି ହୁଅନ୍ତା । ମାତ୍ର ଜଗତର ସବୁ ସାଧୁସନ୍ଥଙ୍କ ଜୀବନକୁ ଅନୁଧ୍ୟାନ କଲେ ଜଣାଯାଏ ସେମାନଙ୍କ ଜୀବନ କେତେ ତ୍ୟାଗ ପୂର୍ଣ୍ଣ, ସେ କେତେ ଅଳପରେ ଜୀବନ ବିତେଇଛନ୍ତି, ପରପାଇଁ କରିଛନ୍ତି, ଅନ୍ୟର ମଙ୍ଗଳ ଚାହିଁଛନ୍ତି । ତାଙ୍କ କର୍ମକୁ ଅନୁଭବ କରିବା । ତେଣୁ ଜୀବନକୁ ଏକ ଯଜ୍ଞକୁଣ୍ଡ ହିସାବରେ ଭାବିବା ଯେଉଁଥିରେ ନିଆଁ ହୁତୁହୁତୁ ହୋଇ ଜଳୁଥିବ । ଜଳିବା ମାନେ କର୍ମ । ଅଗ୍ନିର ଅନ୍ୟନାମ ହୁତାଶନ । ଅଗ୍ନିତତ୍ତ୍ୱ ସୂର୍ଯ୍ୟଙ୍କ ତତ୍ତ୍ୱ ସହିତ ସମାନ । ଗୀତା ଜୀବନକୁ ଏକ ସଂଗ୍ରାମ ଭାବରେ ଗ୍ରହଣ କରିଛି । ଜୀବନରେ ରସ ଆସ୍ୱାଦନ ପାଇଁ ଆହ୍ୱାନ ଦେଇ କହିଛି ଜୀବନ ରସମୟ । ସୁଖ ଓ ଦୁଃଖ ଉଭୟେ ରସ । ରସ ଆସ୍ୱାଦନ କରିବା ଓ ବଂଚିବା । ତ୍ୟାଗର ଜୀବନ ହେଉଛି କର୍ମର ଜୀବନ । ତେବେ ମୁଁ କଣ ତ୍ୟାଗ କରିବି ? କର୍ମର ବାସନା ତ୍ୟାଗ କରିବି । ସଂସାର ପାଇଁ କାମ କରିବି । ଆଜି ପ୍ରଣମି ତୋମାରେ ଚଲିବ ନାଥ ସଂସାର କାଜେ (ରବୀନ୍ଦ୍ରନାଥ) । ଏ ଜୀବନର ଅଭିପ୍ରାୟ ହେଉଛି ଅନ୍ୟପାଇଁ କିଛି କରିଯିବ । ସେ ମନୁଷ୍ୟ ସଂସାର ପାଇଁ ପ୍ରାର୍ଥନା କରେ -ସର୍ବେ ଭବନ୍ତୁ ସୁଖୀନଃ । କେହି ସଂସାରରେ ଦୁଃଖରେ ନ ରହନ୍ତୁ । ଯୋଗ ଦର୍ଶନରେ କର୍ମର ତିନୋଟି ଶ୍ରେଣୀ ବୋଲି କୁହାଯାଇଛି । ଯଥା -୧) କୃତ - ନିଜେ କରିବା ଦ୍ୱାରା ୨) କାରିତ -କର୍ମୀକୁ ସାହାଯ୍ୟ କରିବା ଦ୍ୱାରା ୩) ଅନୁପ୍ରେରିତ -ସତକର୍ମକୁ ଉତ୍ସାହିତ କରିବା ଦ୍ୱାରା । ଭଲକାମ ନିଜେ କରିବା କିମ୍ବା ଅନ୍ୟକୁ ସାହାଯ୍ୟ କରିବା କିମ୍ବା ସତକର୍ମ ପାଇଁ ଉତ୍ସାହିତ କରିବା ମନୁଷ୍ୟ ପାଇଁ ମଙ୍ଗଳକାରକ ହୋଇଥାଏ । ଶେଷରେ ନକର୍ମ ଲିପ୍ୟତେ ନରେ -ଏ ମନୁଷ୍ୟମାନଙ୍କୁ କର୍ମ ବାନ୍ଧିପାରେ ନାହିଁ । କର୍ମକୁ ସମର୍ପଣ ବୁଦ୍ଧିରେ କଲେ କର୍ମ ବାନ୍ଧିପାରେ ନାହିଁ । ସେହିଭଳି କର୍ମକଲେ ଦରକାରବେଳେ ସେ ତୁମର ଆବଶ୍ୟକତା ଅନୁସାରେ ଧନ ଦେବେ । କର୍ମ କରିବା

ବେଳେ ଈଶ୍ୱରଙ୍କୁ ସାକ୍ଷୀ ରଖି ଯେ କର୍ମକରେ ସେ ମହାନ୍ । ସେ ମୋ କର୍ମ ଭିତରେ ବ୍ୟାପୀ ରହିଛନ୍ତି ତେଣୁ ସେ ସର୍ବବ୍ୟାପକ ଈଶ୍ୱର । ଏହିଭଳି ଭାବି ମୃତ୍ୟୁପର୍ଯ୍ୟନ୍ତ କର୍ମ କରିଚାଲ । ଏହିଭଳି କର୍ମକଲେ ଚିତ୍ତ ଶୁଦ୍ଧିହେବ । ଅନ୍ତଃକରଣ ଶୁଦ୍ଧହେଲେ ଜ୍ଞାନ ତା ଭିତରୁ ଉଦୟ ହେବ । ରମଣ ମହର୍ଷିଙ୍କ ଭାଷାରେ -

ଈଶ୍ୱରାର୍ପିତଂ ନେଚ୍ଛୟା କୃତମ୍
ଚିତ୍ତ ଶୋଧକଂ ମୁକ୍ତି ସାଧକମ୍ ॥

ଅର୍ଥାତ୍ ଈଶ୍ୱରାର୍ପଣ ବୁଦ୍ଧିଦ୍ୱାରା ଆସକ୍ତି ନରଖି କରାହୋଇଥିବା କର୍ମ ଚିତ୍ତକୁ ଶୁଦ୍ଧ କରି ମୋକ୍ଷ ପ୍ରଦାନ ନିମିତ୍ତ ସହାୟକ ହୁଏ ।

ତେଣୁ ଦୁଇପ୍ରକାରର କର୍ମ ଶୈଳୀ ଈଶ ଉପନିଷଦରେ କୁହାଯାଇଛି । ଗୋଟିଏ ଜ୍ଞାନୀର ଜୀବନ ଆଉ ଗୋଟିଏ କର୍ମୀର ଜୀବନ । ଏ ଦୁଇ ପଥ ଛଡା ଆଉ କିଛି ନାହିଁ । ଯେ ଏ ଦୁଇଟି ଯାକ ମାର୍ଗ ଅନୁସରଣ କରୁନାହିଁ- ସେ କେବଳ ଭୋଗ କରୁଛି ଓ ଭୋଗର ଜୀବନ ବଞ୍ଚୁଛି । କୌଣସି ଏକ ଲକ୍ଷ୍ୟକୁ ହାସଲ କରିବା ପାଇଁ ବ୍ୟକ୍ତି ଯେଉଁ ପ୍ରଯତ୍ନ କରେ ତାହା ସାଧନା । ସାଧନା ଦୁଇ ପ୍ରକାରର ପ୍ରଥମ ହେଲା ପ୍ରାପ୍ତସ୍ୟ ପ୍ରାପ୍ତି ଓ ଦ୍ୱିତୀୟରେ ଅପ୍ରାପ୍ତସ୍ୟପ୍ରାପ୍ତି । ଏ ଦୁଇଟି ପ୍ରକାର ସାଧନାମାର୍ଗ ହେଲା ଜ୍ଞାନମାର୍ଗ ଓ କର୍ମ ମାର୍ଗ । ପ୍ରାପ୍ତସ୍ୟ ପ୍ରାପ୍ତି ହେଲା ମୋ ଭିତରେ ଅଛି ମୁଁ ତାକୁ ପାଇବି, ଅପ୍ରାପ୍ତସ୍ୟ ପ୍ରାପ୍ତି ମୋର ପଇସାନାହିଁ ପ୍ରଯତ୍ନ କରିବି ପାଇବା ପାଇଁ, ମୋର ଘର ନାହିଁ ପ୍ରଯତ୍ନ କରିବି କିପରି ଗଢିବି ଇତ୍ୟାଦି । ବେଦରେ ଏବଂ ଉପନିଷଦରେ ଏହି ଦୁଇମାର୍ଗକୁ ପ୍ରବୃତ୍ତି ମାର୍ଗ ଓ ନିବୃତ୍ତିମାର୍ଗ କୁହାଯାଇଛି । ଗୀତାରେ ଏହାକୁ ସାଂଖ୍ୟ ଓ କର୍ମ (ଯୋଗ) କୁହାଯାଇଛି । ଈଶୋପନିଷଦରେ ଏ ଦୁଇମାର୍ଗକୁ ଅନୁସରଣ କରୁନଥିବା କେତେକ ମନୁଷ୍ୟଙ୍କ କଥା ମଧ୍ୟ କୁହାଯାଇଛି -

ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାଽଽବୃତାଃ
ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋଜନାଃ ॥

(ଈଶୋପନିଷଦ ତୃତୀୟମନ୍ତ୍ର)

ସେହି ସୂର୍ଯ୍ୟରହିତ ଲୋକଗୁଡିକ ଘନ ଅନ୍ଧକାର ଦ୍ୱାରା ଆଚ୍ଛାଦିତ ବା ଆବୃତ୍ତ । ଯେଉଁମାନେ ଆତ୍ମଘାତୀ ସେମାନେ ମୃତ୍ୟୁ ପରେ ଅନ୍ଧକାର ଲୋକକୁ ପ୍ରାପ୍ତ ହୁଅନ୍ତି ।

ମନୁଷ୍ୟ ପାଇଁ ତିନି ପ୍ରକାର ଜୀବନ ସଂଭବ । (୧) ତ୍ୟାଗମୟ ଜୀବନ ଯାହା ସର୍ବଶ୍ରେଷ୍ଠ (୨) କର୍ମମୟଜୀବନ ଯାହା ମଧ୍ୟମପ୍ରକାରର ଓ (୩) ଭୋଗମୟ ଜୀବନ

ଯାହାକି କି ଆମେ ଅଧମ ଜୀବନ ବୋଲି କହିପାରିବା । ବର୍ତ୍ତମାନ ସମାଜରେ ଆମେ ଟଙ୍କା ପଇସାର ଆଧାରକୁ ନେଇ ବଡ ମଣିଷ ସାନମଣିଷ ବିଚାର କରୁଚେ । ଜୀବନର ମୂଲ୍ୟବୋଧ ଦୃଷ୍ଟିରୁ ମଣିଷକୁ ବିଚାର କରିବା ଉଚିତ୍ । ଗାନ୍ଧୀ ଗୋପବନ୍ଧୁ ରବିନ୍ଦ୍ରନାଥ ଶ୍ରୀ ଅରବିନ୍ଦ ସେହିଭଳି ମହାପୁରୁଷ । ମଧ୍ୟ ଯୁଗରେ ବ୍ରାହ୍ମଣମାନେ ବିଦ୍ୟାରେ ଯୁକ୍ତ ହୋଇଥିଲେ ଓ ମହତ ମଣିଷ ବୋଲି ବିବେଚିତ ହେଉଥିଲେ । ବର୍ତ୍ତମାନର ସମାଜ ଭୋଗମୟ ହୋଇଯାଇଛି । ଆମେ କର୍ତ୍ତା ନହୋଇ ଭୋକ୍ତା ହେବାକୁ ମନ କରିଛେ । ମନୁଷ୍ୟ ଯେଉଁ ସ୍ଥାନରେ ଅଛି କର୍ମ ବିମୁଖ ହୋଇଯାଇଛି, କାମ ନକରି ଭୋଗ କରିବାର ପ୍ରବୃତ୍ତି ବୃଦ୍ଧିପାଇଛି । ଏଠାରେ ଭୋଗର ଜୀବନକୁ  ଅନ୍ଧକାରର ଜୀବନ ବୋଲି ପ୍ରତିପାଦିତ କରାଯାଇଛି । ସେ ଜୀବନ ଅସୂର୍ଯ୍ୟା, ସେଠାରେ ସୂର୍ଯ୍ୟନଥାଏ । ସୂର୍ଯ୍ୟ ହେଉଛନ୍ତି ପ୍ରକାଶ ସ୍ୱରୂପ, ପ୍ରକାଶ ହିଁ ଜ୍ଞାନ । ଅଶୁଭ ଶବ୍ଦରୁ ମଧ୍ୟ ଅସୂୟା ଲୋକ ସୃଷ୍ଟି ହୋଇପାରିବ । ଏମାନଙ୍କ ଜୀବନ ନିରର୍ଥକ । ଏମାନେ କେବଳ ବଞ୍ଚିବା ପାଇଁ ବିଞ୍ଚନ୍ତି । ଯେଉଁମାନେ ଜୀବନସାରା ଅବିଦ୍ୟାରେ ରହି ଆତ୍ମାର ଉନ୍ନତି ପାଇଁ ପ୍ରଯତ୍ନ କରନ୍ତି ନାହିଁ- ସେମାନେ ଆତ୍ମଘାତୀ ସେମାନେ ଅବଶ୍ୟ ଅନ୍ଧକାର ଲୋକକୁ ପ୍ରବେଶ କରନ୍ତି ।

ଅସୁରଙ୍କର ଦେଶ ସେତ, ଅନ୍ଧାରେ ଥାଏ ଆଚ୍ଛାଦିତ ।

ଆତ୍ମାକୁ ହନନ ଯେ କରେ ସେ ଦେଶେ ଯାଏ ମୃତ୍ୟୁପରେ (ଗଣେଶ୍ୱର ମିଶ୍ରଙ୍କ ପଦ୍ୟାନୁବାଦ)

ବେଦାନ୍ତର ଏହି ସିଦ୍ଧାନ୍ତ ସବୁକୁ ମନୁଷ୍ୟ ଅନୁସରଣ କରି ଜୀବନ ବଞ୍ଚିଲେ ଜୀବନ ଅର୍ଥପୂର୍ଣ୍ଣ ହୋଇପାରେ । ଏ ପ୍ରବନ୍ଧର ଆରମ୍ଭରେ ଯେଉଁ କ୍ଷୁଦ୍ର କାହାଣୀର ଅବତାରଣା କରିଥିଲି ସେ ସମ୍ପର୍କରେ ଏତିକି କୁହାଯାଇପାରେ ଯେ, ଜ୍ଞାନଚକ୍ଷୁ ଉନ୍ମୁକ୍ତ ହେଲେ ମୋହ ଦୂର ହୋଇଯିବ । ସତ୍ୟ କଣ ଅସତ୍ୟ କଣ ପ୍ରତିଭାତ ହୋଇଯିବ । ଜଗତରେ ସବୁକିଛି ପରିବର୍ତ୍ତନଶୀଳ ଆଜି ଅଛି କାଲିକି ନାହିଁ । ଦେହ ଅଛି, ଧନଅଛି, ମାନ ଅଛି, ପଦପଦବୀ ଅଛି ପୁଣି ତାହା କାଲିକି ରହିବ ନାହିଁ । ଏହାକୁ ମନୁଷ୍ୟ ହୃଦୟଙ୍ଗମ କରି ସେଥିରେ ବ୍ୟଥିତ ହୋଇଯାଏନାହିଁ । ରାଗ ଦ୍ୱେଷ ରହେ ନାହିଁ । କାହାପ୍ରତି ଆରୋପ ଅଭିଯୋଗରୁ ମନ ସର୍ବଦା ନକରାତ୍ମକ ହୋଇଉଠେ । ତାହା ଈଶ୍ୱର ଦର୍ଶନରେ ଏକ ଏକ ବାଧା ।

ବ୍ରହ୍ମଙ୍କୁ ଜାଣି ପୁରୁଷ ସ୍ୱୟଂ ବ୍ରହ୍ମ ହୋଇଯାଏ- ଏହା ହେଉଛି ପ୍ରତ୍ୟେକ ଉପନିଷଦର ଉଦ୍‌ଘୋଷଣା । ଇନ୍ଦ୍ରିୟଦ୍ୱାରା ତାଙ୍କୁ ଦେଖିହୁଏ ନାହିଁ । କେବଳ ଅଧିକାରୀ ବା

ଯୋଗ୍ୟବ୍ୟକ୍ତି ତାଙ୍କୁ ସ୍ୱ-ସ୍ୱରୂପରେ ଦର୍ଶନ କରିପାରିବ । ଯେଉଁମାନଙ୍କ ଠାରୁ ଜୀବଭାବ ଅର୍ଥାତ୍ ଦେହଭାବ ନଷ୍ଟ ହୋଇଯାଇଥାଏ ସେମାନେ ଈଶ୍ୱରଙ୍କ ସାକ୍ଷାତକାର କରିପାରନ୍ତି । ଏହି ଈଶ୍ୱର ସାକ୍ଷାତକାର କରିଥିବା ପୁରୁଷମାନେ ମୃତ୍ୟୁ ସମୟରେ ମଧ୍ୟ ଅବିଚଳିତ ରହି ନିଜର ଦେହକୁ ସମାଧିସ୍ଥ ହୋଇ ତ୍ୟାଗ କରିପାରେ ସେ ଅମୃତତ୍ୱ ଲାଭ କରିପାରନ୍ତି । ପୁରୁଷ ଅନୁଭବ କରେ ତାର ପ୍ରାଣବାୟୁ ସମଷ୍ଟି ବାୟୁରେ ମିଶିଯାଉ ଶରୀର ଭସ୍ମୀଭୂତ ହେଉ । ହେ ମୋର ମନ ନିଜର କୃତିକୁ ସ୍ମରଣ କର ସ୍ୱୟଂର କୃତିକୁ ସ୍ମରଣ କର ।

ଓଁ କ୍ରତୋସ୍ମର କୃତଂ ସ୍ମର, କ୍ରତୋସ୍ମର କୃତଂ ସ୍ମର ॥

ଈଶୋପନିଷଦ ୧୭ମନ୍ତ୍ର ।

ହରି ଓର୍ ହରି କଥା ଅନନ୍ତା -ଏହି ନ୍ୟାୟରେ ବେଦାନ୍ତ ଶାସ୍ତ୍ର ଅସରନ୍ତି । ତାକୁ କହି ବସିଲେ ତାର ଉପାଦେୟତା ବର୍ଣ୍ଣନା କରିବସିଲେ କାଗଜ କଲମ ଅଣ୍ଟିବ ନାହିଁ । ପାଠକମାନଙ୍କୁ ଅନୁରୋଧ କରେ ଯଦି ସେମାନେ ଏହାର ଉପାଦେୟତା ଅନୁଭବ କରିବେ ତେବେ ଗୀତାକୁ ପଠନ କରିବା ପାଇଁ ପ୍ରୟାସ କରିବେ । ଯେଉଁମାନେ ପଠନ ଆରମ୍ଭ କରିଛନ୍ତି ସେମାନେ ଅଧିକ ପଢ଼ିବେ । ଏ ପ୍ରବନ୍ଧ ଶେଷ କରିବା ପୂର୍ବରୁ ଶ୍ରୀମଦ୍ ଭଗବଦ୍‌ଗୀତା ସଂପର୍କରେ ଦୁଇପଦ କହିବାର ଆବଶ୍ୟକତା ଅନୁଭବ କରୁଛି ।

ଶ୍ରୀମଦ୍ ଭଗବଦ୍‌ଗୀତା ଆମର ଜୀବନ ବେଦ । ଏହା କୌଣସି ଧର୍ମ ମଧ୍ୟରେ ସୀମିତ ନୁହେଁ । ଜଗତର କଲ୍ୟାଣ ପାଇଁ ଏହା ଭଗବାନଙ୍କ ମୁଖନିସୃତ ବାଣୀ, ଗୀତା ଯୋଗଶାସ୍ତ୍ର । ମନୁଷ୍ୟ କର୍ମଯୋଗ କରି ନିଜର ଅନ୍ତଃକରଣକୁ ଶୁଦ୍ଧ କରିବା ପାଇଁ ଓ ଜ୍ଞାନ ସାଧନଦ୍ୱାରା ଅନ୍ତକରଣକୁ ଶୁଦ୍ଧକରି ଆତ୍ମାନୁଭୁତି ଲାଭ କରିବା ପାଇଁ ଏଥିରେ କୁହାଯାଉଛି । ଜ୍ଞାନ ଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗୀନାମ୍ । ଅର୍ଜୁନ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ । ଏଠାରେ ଅର୍ଜୁନ ପ୍ରତୀକ ମାତ୍ର । ସଂସାରରେ ଆମେ କ୍ରିୟା କରୁନେ,କରୁଛେ ପ୍ରତିକ୍ରିୟା । ପୁଅପାଇଁ, ନାତିପାଇଁ, ଦେଶପାଇଁ ସୁନାମ ପାଇଁ କର୍ମ କରିବି । ଏହା କ୍ରିୟାର ଭାବନା ନୁହେଁ, ସ୍ୱାର୍ଥର ଭାବନା, ଯଶ ପ୍ରାପ୍ତି ପାଇଁ ଭାବନା, ତେଣୁ ତାହା ପ୍ରତିକ୍ରିୟା । ପ୍ରତିକ୍ରିୟା ମନରୁ ଦୂରହେଲେ ଏକ ସମତ୍ୱଭାବ ମନରେ ଉଦୟହେବ । ସୁଖ, ଦୁଃଖ, ମାନଅପମାନ ନିନ୍ଦା ପ୍ରଶଂସାରେ ସେ ଅବିଚଳିତ ରହିପାରିବ । ଗୀତାରେ ଜୀବନର ଏହି ସମତ୍ୱ ମୂଲ୍ୟବୋଧକୁ ଚାରି ପୁରୁଷାର୍ଥ ଭାବେ ବର୍ଣ୍ଣନା କରାଯାଇଛି - ତାହା ହେଲା ଧର୍ମ, ଅର୍ଥ,କାମ, ମୋକ୍ଷ । ମୋକ୍ଷ ହେଉଛି

ପରମ ପୁରୁଷାର୍ଥ । ଧର୍ମ ଅର୍ଥ ଓ କାମ ହେଉଛନ୍ତି ପୁରୁଷାର୍ଥ । ଜଗତରେ ବଞ୍ଚିବା ପାଇଁ ଯେଉଁ ଦୁଇଟି ମୂଲ୍ୟବୋଧ ଦରକାର ତାହା ହେଉଛି ଅର୍ଥ ଓ କାମ । ଜୀବନ ନଦୀର ଦୁଇ ତଟ ହେଉଛନ୍ତି ଅର୍ଥ ଓ କାମ । ଏହି ଦୁଇ ତଟର ସଂଯୋଗକାରୀ ସେତୁ ହେଉଛି ଧର୍ମ । ଧର୍ମ ଏଠାରେ ରିଲିଜିୟାନ୍ ଅର୍ଥରେ ବ୍ୟବହୃତ ହୋଇନାହିଁ । ଜାଗତିକ ଜୀବନ ବଞ୍ଚିବା ପାଇଁ ଯେ ମୂଲ୍ୟବୋଧ ଭିତରେ ସମ୍ପର୍କ ରଖେ ତାହା ଧର୍ମ । କେହି କେହି ଧର୍ମ ଓ ମୋକ୍ଷକୁ ଅବାସ୍ତବ ବୋଲି କହିଥାନ୍ତି ମାତ୍ର ଏ ଚାରିଟି ମୂଲ୍ୟବୋଧ ଜୀବନର ବାସ୍ତବ ଅଭିବ୍ୟକ୍ତି ।

ଅର୍ଥ ଖାଲି ସଂପଦ ନୁହେଁ କେବଳ ଟଙ୍କାରେ ଗଣନା ନକରିବା ଉଚିତ୍ । ଅର୍ଥ କହିଲେ ବଞ୍ଚିବା ପାଇଁ ଯାହା କିଛି ଆବଶ୍ୟକ । କେବଳ ଧନରତ୍ନ ସଂପତ୍ତି ନୁହେଁ । ଜୀବନପାଇଁ ଶିକ୍ଷା ଦରକାର -ଏହା ଏକ ସମ୍ବଳ । ଭଲ ବିଚାର ସମାଜ ପାଇଁ ଆବଶ୍ୟକ ତାହା ମଧ୍ୟ ଅର୍ଥ । ନିଜର ଚରିତ୍ର ଅର୍ଥ । ଯେ ଜୀବନକୁ ମୂଲ୍ୟଦିଏ ତାହା ଅର୍ଥ । 'କାମ' ମଧ୍ୟ ସେହିଭଳି ବିଚାରକୁ କରାଯାଇପାରେ । କାମନାର ଅର୍ଥ ଇଚ୍ଛା । ପୁଣି ବୁଦ୍ଧ କହିଲେ କାମନାର ବିନାଶରେ ଦୁଃଖର ବିନାଶ । ଇଚ୍ଛାର ଆବଶ୍ୟକତା ରହିଛି । ଏଠି କାମନା ଗୋଟେ ମୂଲ୍ୟବୋଧ । କାମ ଏକ ପୁରୁଷାର୍ଥ । କାମନା କେବଳ ବଞ୍ଚିବା ପାଇଁ ଦରକାର । ତାହାବାସନାରେ ପରିଣତ ନ ହେବା ଉଚିତ୍ । ଏହି କାମ ଯଦି କାମବାସନାରେ ପରିଣତ ହୁଏ ତେବେ ତାହା ହୁଏ ଦୁଃଖର କାରଣ । ମଣିଷର କାମନାର ଶେଷନାହିଁ ତେଣୁ ତାକୁ ଲଗାମ ଦେବା ହେଲା ପୁରୁଷାର୍ଥ ।

ଧର୍ମ ଏଠାରେ ଗୋଟେ ନିତୀ Principle । ଏହା Religion ନୁହେଁ । ଭଗବାନଙ୍କ ଠାରୁ ଧର୍ମର ସ୍ଥାନ ଉଚ୍ଚରେ କାରଣ ଧର୍ମ ଏକ ନୀତି । ତେଣୁ ଭଗବାନ ମଧ୍ୟ ଧର୍ମର ଅଧିନସ୍ତ ହୁଅନ୍ତି । ଗୃହରେ ଗୃହମୁଖ୍ୟ ନିୟମ କଲେ ସମସ୍ତେ ରାତି ୧୦ଟା ସୁଦ୍ଧା ଘରକୁ ଫେରିବେ ନିଜ ନିଜର କାମ ସାରି । ସମସ୍ତେ ଫେରିବେ ମାତ୍ର ଗୃହସ୍ୱାମୀ ଯଦି ତାହା ନିଜେ ପାଳନ ନକରନ୍ତି ତେବେ ତାହା କ୍ରମେ ଅନ୍ୟମାନେ ପାଳନ କରିବେ ନାହିଁ । ସେଥିପାଇଁ ଗୀତାରେ କୁହାଯାଇଛି ଧର୍ମୋ ରକ୍ଷତି ରକ୍ଷିତ । ଯେ ଧର୍ମକୁ ରକ୍ଷାକରେ ଧର୍ମ ତାକୁ ମଧ୍ୟ ରକ୍ଷାକରେ । ଧର୍ମାନୁସାରେ ଅର୍ଥ ରୋଜଗାର କଲେ ତାହା କେବେ ଅନର୍ଥର କାରଣ ହେବ ନାହିଁ । ଅନ୍ୟାୟ ଉପାୟରେ ଧନ ରୋଜଗାର କଲେ ତାହା ଅନର୍ଥ ସୃଷ୍ଟି କରିବ । ସବୁ ସ୍ତରରେ, ତାହା ଚାଷ, ବ୍ୟବସାୟ, ଚାକିରୀ ଯେଉଁ ସ୍ତରରେ ହେଲେ ମଧ୍ୟ- ଧର୍ମ ରକ୍ଷା ପୂର୍ବକ ଧନ ରୋଜଗାର ହେବା ଦରକାର । ଧର୍ମ ଜାଗତିକ ଜୀବନ ଓ ପରମାର୍ଥିକ ଜୀବନ ଭିତରେ ସେତୁ ସଦୃଶ ।

ସେ କାମ ଓ ଅର୍ଥକୁ ସଂଗତି ପ୍ରଦାନ କରେ । ଏହା ସ୍ଥାନ କାଳ ପାତ୍ର ଦ୍ୱାରା ସୀମିତ ନୁହେଁ । ଧର୍ମପାଳନ ମନୁଷ୍ୟକୁ ମୁକ୍ତି ପ୍ରଦାନ କରେ । ଏ ମୁକ୍ତି ମୃତ୍ୟୁପରେ ନୁହେଁ ; ବଂଚିଥିବା ଅବସ୍ଥାରେ । ଜୀବନ୍ମୁକ୍ତି ହେଉଛି କାମନାର ବନ୍ଧନରୁ, କର୍ମ ବାସନାର ଗଣ୍ଡିରୁ ଓ ଅବାସ୍ତବ ଚିନ୍ତାରୁ ମୁକ୍ତି । ଏ ଅବସ୍ଥାରେ କର୍ମ ହୁଏ କର୍ମଯୋଗ, ଯାହା ତଥା ଅହଂକାରରୁ ମୁକ୍ତ । ସେ କର୍ମ ସ୍ଥାନ କାଳ ପାତ୍ର ଅନୁସାରେ ଆଚରଣ କଲେ ବନ୍ଧନରେ ପକାଏ ନାହିଁ । ଏ ଚତୁର୍ବର୍ଗ ଫଳ ମଣିଷର ସମ୍ଭାବନା ସକଳ । ଧର୍ମଚେତନା ନଥିଲେ ମନୁଷ୍ୟ ପଶୁସମାନ । ଅର୍ଜୁନରଣ କ୍ଷେତ୍ରରେ ତାର ଧର୍ମ ଭୁଲିଯାଇଥିଲା ଭଗବାନ ତାଙ୍କୁ ଏହି ଜ୍ଞାନ ଦେଇ କର୍ମରେ ପ୍ରବୃତ୍ତ ହେବାକୁ ନିର୍ଦ୍ଦେଶ ଦେଲେ । ଅର୍ଥ କାମ ଦ୍ୱୟଙ୍କୁ ଧର୍ମ ମାର୍ଗଦର୍ଶନ ଦିଏ । ମୂଲ୍ୟବୋଧ ଭିତରେ ଜୀବନ ଯାପନ କଲେ ମନୁଷ୍ୟ ଉଚ୍ଚତର ସୋପାନରେ ପହଞ୍ଚେ ।

ସର୍ବଶେଷ କଥା ହେଲା ନିଷ୍କାମ ଭାବରେ କର୍ମ କରିବା । ନିଷ୍କାମ କର୍ମ କରୁ କରୁ ମନୁଷ୍ୟ ପ୍ରତିକ୍ରିୟା ମୁକ୍ତ ହୋଇଯାଏ । ପ୍ରତିକ୍ରିୟା ମୁକ୍ତ କର୍ମ ନିଷ୍କାମ କର୍ମ । ଏହି ନିଷ୍କାମ କର୍ମ ଜୀବନ୍ମୁକ୍ତିରେ ପହଞ୍ଚାଏ । ଜୀବନ୍ମୁକ୍ତିରେ ଜନ୍ମନାହିଁ । କାମନା ବାସନା ଓ କର୍ମ ସରିଗଲେ ଆଉ ଶରୀରର ଆବଶ୍ୟକତା ରହେ ନାହିଁ । ତାହା ବିଦେହମୁକ୍ତି ଯାହା ଜୀବନର ସର୍ବଶ୍ରେଷ୍ଠ ଉପଲବ୍ଧି ।



# ଭଗବଦ୍ ପାଦ ଶଙ୍କର ଓ
# ମଣ୍ଡନ ମିଶ୍ର ଶାସ୍ତ୍ରାଲୋଚନା

ଶ୍ରୁତି ସ୍ମୃତି ପୁରାଣାନାମ୍ ଆଳୟମ୍ କରୁଣାଳୟମ୍ ।
ନମାମି ଭଗବଦ୍ପାଦମ୍ ଶଙ୍କରମ୍ ଲୋକଶଙ୍କରମ୍ ॥

ଶ୍ରୀ ଶଙ୍କରଙ୍କର ମଣ୍ଡନ ମିଶ୍ରଙ୍କ ସହିତ ତର୍କ ବର୍ଣ୍ଣନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ଭାରତ ବର୍ଷରେ ଆଜିଯାଏ ଯେତେସବୁ ଶାସ୍ତ୍ରକୁ ନେଇ ତର୍କ ହୋଇଛି ତନ୍ମଧ୍ୟରେ ଶଙ୍କର ମଣ୍ଡନ ମିଶ୍ରଙ୍କ ତର୍କ ପ୍ରସିଦ୍ଧ ଶାସ୍ତ୍ରାଲୋଚନା ଭାବରେ ଅଦ୍ୟାବଧି ଜନମାନସରେ କଥିତ ହୋଇରହିଛି । ମାତ୍ର ଏ ତର୍କର ବିଷୟବସ୍ତୁ ଉପସ୍ଥାପନ କରିବା ପୂର୍ବରୁ ଭଗବାନ ଶଙ୍କର ଓ ମଣ୍ଡନ ମିଶ୍ରଙ୍କ ଜୀବନ ଓ ଦର୍ଶନ ବିଷୟରେ ପାଠକ ମାନଙ୍କୁ ସମ୍ୟକ୍ ଧାରଣା ଦେବା ଉଚିତ୍ ।

କେରଳ ପ୍ରଦେଶରେ ବୃଷାଚଳ ବା ବୃଷ ପର୍ବତ ଅତି ବିଖ୍ୟାତ । ଏହାର ଅନତି ଦୂରରେ କାଲାଡି ନାମକ ଏକ ବ୍ରାହ୍ମଣ ପ୍ରଧାନ ଗ୍ରାମ ଅବସ୍ଥିତ । ଏହି ଗ୍ରାମର ସୀମାରେ ଏକ ନଦୀ ଯାହାର ନାମ ପୂର୍ଣ୍ଣାନଦୀ, ତାହା ଅର୍ଦ୍ଧଚନ୍ଦ୍ରାକାରରେ ଗ୍ରାମକୁ ବେଷ୍ଟନ କରି ପ୍ରବାହିତ ହେଉଅଛି । ବର୍ତ୍ତମାନ ଏହି ନଦୀର ନାମ ଆଲୋୟାରୀ ନାମରେ ନାମିତ ହୋଇଅଛି । ଏହି ଗ୍ରାମରେ ଏକ ଧର୍ମପ୍ରାଣ ନମ୍ବୁଦିରି ଦମ୍ପତି ବାସ କରୁଥିଲେ ସେମାନେ ହେଲେ ଶିବଗୁରୁ ଓ ଆର୍ଯ୍ୟାମ୍ବା । କେରଳର ଏହି ନମ୍ବୁଦିରିମାନେ ବୈଦିକ ସଂସ୍କୃତିକୁ ବଂଚାଇ ରଖିଥିଲେ । ପ୍ରତ୍ୟେକ ନମ୍ବୁଦିରି ବାଳକ ବେଦ ଅଧ୍ୟୟନ ତଥା ତାର ଶୁଦ୍ଧ ଉଚ୍ଚାରଣରେ ଉତ୍ତମ ଶିକ୍ଷା ଅର୍ଜ୍ଜନ କରୁଥିଲେ । ଶଙ୍କର ଯେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ ସେହି ଯୁଗରେ କେରଳର ବ୍ରାହ୍ମଣମାନେ ବୈଦିକ ଜ୍ଞାନ ଆହରଣ ତଥା ଧର୍ମାନୁରାଗରେ ସର୍ବଶ୍ରେଷ୍ଠ ତଥା ବିଶେଷ ଅନୁରାଗୀ ଥିଲେ । ଶିବ ଗୁରୁଙ୍କର ପିତାଥିଲେ

ବିଦ୍ୟାଧିରାଜ ଓ ଆର୍ଯ୍ୟାମ୍ବାଙ୍କ ପିତା ଥିଲେ ମାଘପଣ୍ଡିତ । ଶିବଗୁରୁ ବାଲ୍ୟକାଳରେ ଗୁରୁ ଗୃହକୁ ବିଦ୍ୟାଧ୍ୟୟନ ନିମନ୍ତେ ଗମନ କରିଥିଲେ ଓ ଶିକ୍ଷା ଶେଷରେ ସ୍ୱଗୃହକୁ ଫେରିଆସି ସନ୍ୟାସ ଜୀବନ ଯାପନ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ, ମାତ୍ର ମାତାପିତାଙ୍କ ଅତ୍ୟନ୍ତ ଅନୁରୋଧକ୍ରମେ ସଂସାରରେ ପ୍ରବେଶ କରିବାକୁ ରାଜି ହୋଇଥିଲେ । ଏପରି ସମୟରେ ଆର୍ଯ୍ୟାମ୍ବାଙ୍କୁ ବୋହୁ ରୂପେ ପାଇବା ପାଇଁ ପିତାମାତା ସ୍ଥିର କରିଥିଲେ । ପରେ ବିବାହ ହୋଇଥିଲା । ସାର୍ଥକ ଜୀବନର ଉପଯୋଗୀ ସକଳ ସଦ୍‌ଗୁଣରେ ଦୁହେଁ ପରିପୂର୍ଣ୍ଣ ଥିଲେ । ବିବାହର ଅନେକବର୍ଷ ଯାଏ ସେମାନଙ୍କର କୌଣସି ସନ୍ତାନ ନ ହେବାରୁ ଦୁହେଁ ତ୍ରିଚୂର ନାମକ ସହରର ଶିବ କ୍ଷେତ୍ରକୁ ସ୍ଥାନୀୟ ଭାବରେ କଥିତ ହେଉଥିବା ଭଜନ ସାଧନ କରିବା ଉଦ୍ଦେଶ୍ୟରେ ଗମନ କଲେ । ଭଜନ ଶବ୍ଦଟିର ଅର୍ଥ ହେଲା- ସେବାକରିବା, ପୂଜାକରିବା । ନିଜର ମନୋକାମନା ପୂରଣ ନିମନ୍ତେ ଯେଉଁମାନେ ତ୍ରିଚୂର ଠାରେ ଭଜନ ଅନୁଷ୍ଠାନ କରନ୍ତି, ସେମାନଙ୍କୁ ସେଠାରେ ରହି ନଦୀରେ ସ୍ନାନପୂର୍ବକ ଶିବୋପାସନା କରିବାକୁ ହୁଏ । ମହାଦେବଙ୍କ ମନ୍ଦିରଟି ପାହାଡ ଉପରେ ଅବସ୍ଥିତ ଥିବାରୁ ସ୍ନାନପରେ ସେଠାକୁ ପ୍ରତ୍ୟହ ଯିବା ଏକ କଠୋର ତପସ୍ୟା ଭଳି ମନେହୁଏ । ଦମ୍ପତିଙ୍କ କଠୋର ସାଧନାରେ ମୁଗ୍ଧ ହୋଇ ଭଗବାନ ଶିବ ଏକ ରାତିରେ ବୃଦ୍ଧ ବ୍ରାହ୍ମଣ ରୂପରେ ଦର୍ଶନ ଦେଇ ପଚାରିଲେ ସେମାନେ ଦୀର୍ଘଜୀବୀ ମୁର୍ଖପୁତ୍ର ଅଥବା ବୁଦ୍ଧିଦୀପ୍ତ ସ୍ୱଳ୍ପାୟୁ ପୁତ୍ରଟିଏ ଚାହାନ୍ତି । ଉତ୍ତରରେ ଦୁହେଁ କହିଥିଲେ ବୁଦ୍ଧିମାନ ଜ୍ଞାନଦୀପ୍ତ ସ୍ୱଳ୍ପାୟୁ ପୁତ୍ର ମୁର୍ଖପୁତ୍ରଠାରୁ ଶ୍ରେୟସ୍କର । ତତ୍‌ପରେ ଶଙ୍କର ଜନ୍ମ ନେଇଥିଲେ । ଶଙ୍କରଙ୍କ କୃପାରୁ ଜନ୍ମନେଇଥିବାରୁ ତାଙ୍କ ନାମ ରଖାଗଲା ଶ୍ରୀ ଶଙ୍କର । କୁହାଯାଏ ସ୍ୱୟଂ ମହାଦେବ ଶିବଗୁରୁଙ୍କ ଔରସରୁ ସ୍ୱୟଂ ଜନ୍ମଲାଭ କରିଥିଲେ । ଶଙ୍କରଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡିକ ହେଲା -ଆଠବର୍ଷ ବୟସରେ ସେ ଚାରିବେଦକୁ ଆୟତ୍ତ କରିଥିଲେ ବାରବର୍ଷ ବୟସରେ ସର୍ବଶାସ୍ତ୍ରରେ ପ୍ରବୀଣ ହୋଇଥିଲେ, ଷୋଳବର୍ଷ ବୟସରେ ଶାସ୍ତ୍ରର ଭାଷ୍ୟରଚନା ସମାପ୍ତ କରି ବତିଶବର୍ଷ ବୟସରେ ଇହଲୀଳା ସାଙ୍ଗ କରିଥିଲେ । ଶଙ୍କରଙ୍କ ଉପନୟନ ପୂର୍ବରୁ ତାଙ୍କର ପିତାଙ୍କର ଦେହାନ୍ତ ହୋଇଯାଇଥିଲା ତେଣୁ ମାତାଙ୍କର ସେ ଥିଲେ ନୟନ ପିତୁଳା । ମାଆ ଚାହିଁଥିଲେ ପିତାଙ୍କ ଅନ୍ତେ ଶଙ୍କର ଜଣେ ଗୃହସ୍ଥ ହୋଇ ବଂଶରକ୍ଷା କରିବେ ମାତ୍ର ବିଧିର ବିଧାନ ଥିଲା ସ୍ୱତନ୍ତ୍ର ।

ଆଠବର୍ଷ ବୟସରେ ଶଙ୍କର ତର୍କ ବିଦ୍ୟାରେ ନିପୁଣ, ସାଂଖ୍ୟ ବିଦ୍ୟାରେ ପ୍ରବୀଣ ପାତଞ୍ଜଳ ଯୋଗରେ ଅଭୂତପୂର୍ବ ଦକ୍ଷତା ଓ ଭଟ୍ଟ ମୀମାଂସାର ସୂକ୍ଷ୍ମାତିସୂକ୍ଷ୍ମ ତତ୍ତ୍ୱକୁ ସେ

ଉପଲବ୍ଧ କରି ସାରିଥିଲେ । ପୁତ୍ରର ପାଣ୍ଡିତ୍ୟ ଓ ସଂସାର ପ୍ରତି ବୈରାଗ୍ୟ ଲକ୍ଷକରି ମାତା ବ୍ୟସ୍ତ ବିବ୍ରତ ହୋଇପଡୁଥିଲେ ମାତ୍ର ଏତେ ଅଳ୍ପବୟସରୁ ତାଙ୍କୁ ବିବାହ କରି ଦେବା ସମ୍ଭବ ନଥିଲା । ଏପଟେ ପୁତ୍ର ଚାହୁଁଥିଲେ ସନ୍ୟାସ । ଏପରି ସମୟରେ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଦିନେ ନଦୀରେ ମାତାପୁତ୍ର ସ୍ନାନ୍ କରିବା ସମୟରେ ପୁଅର ଗୋଡକୁ ଏକ କୁମ୍ଭୀର ଧରି ଟାଣି ନେଇଗଲା । ମା ବ୍ୟସ୍ତ ବିବ୍ରତ ହେବାବେଳେ ନଦୀଭିତରୁ ପୁତ୍ର ଡାକ ଦେଲେ ମା- ମୋର ଶେଷ ସମୟରେ ହେଲେ ମୋତେ ସନ୍ୟାସ ନେବାକୁ ଅନୁମତି ପ୍ରଦାନ କର । ପୁତ୍ରର ଏ ବିକଳ ଅବସ୍ଥା ଦେଖି ମା ତତ୍‌କ୍ଷଣାତ୍ ଅନୁମତି ଦେଇଦେଲେ । କୁମ୍ଭୀର ପୁତ୍ରକୁ ଛାଡିଦେଲା । ଏ ଆଶ୍ଚର୍ଯ୍ୟଜନକ ଘଟଣା ଦେଖି ମା ସ୍ତମ୍ଭୀଭୂତ ହୋଇଥିଲେ । ମାତ୍ର ପୁତ୍ରକୁ ସନ୍ୟାସୀ କରିଦେବାର ଯେଉଁ ସ୍ୱୀକୃତି ଦେଇଥିଲେ ତାକୁ ପାଶୋରି ଯାଉଥିଲେ । ମାତ୍ର ଶଙ୍କର ସୂଚାଇ ଦେଲେ ଯେ ଖୁବ୍ ଶିଘ୍ର ସେ ସନ୍ୟାସ ନେଇ ଗୁରୁଗୃହକୁ ଜ୍ଞାନଲାଭ ପାଇଁ ଚାଲିଯିବେ । ଏଣିକି ଯେଉଁ ସ୍ତ୍ରୀଲୋକମାନେ ତାଙ୍କୁ ଭିକ୍ଷାଦେବେ ସେମାନେ ହେବେ ତାଙ୍କର ମା, ଯେଉଁ ଗୁରୁମାନେ ତାଙ୍କୁ ଜ୍ଞାନ ପ୍ରଦାନ କରିବେ ସେମାନେ ହେବେ ବାପା ଓ ତାଙ୍କଠାରୁ ଯେଉଁମାନେ ଜ୍ଞାନ ଗ୍ରହଣ କରିବେ ସେମାନେ ହେବେ ପୁତ୍ର । ଏହି ଭାବନା ନେଇ ଶଙ୍କର ଗୃହତ୍ୟାଗ କଲେ ଓ ମାତା ଅନୁମତି ସହ ଭିକ୍ଷା ପ୍ରଦାନ କରିଦେଲେ । ନିୟମ ଅନୁସାରେ ଗୃହତ୍ୟାଗୀ ସନ୍ୟାସୀ ପୁତ୍ରକୁ ମା ହିଁ ପ୍ରଥମେ ଭିକ୍ଷାଦାନ କରି ଅନୁମତି ପ୍ରଦାନ କରେ ।

ଆଠବର୍ଷ ବୟସରେ ବାଳକ ଶଙ୍କର ଗୃହ ତଥା କାଳାଡି ପରିତ୍ୟାଗ କରି ଗୁରୁସନ୍ଧାନରେ ବାହାରିଲେ । ସେ ସମୟ ଆଜିର ସମୟ ପରି ନୁହେଁ । ପଦବ୍ରଜରେ ଭ୍ରମଣ କରି କରି ସେ ଉଜ୍ଜୟିନୀ ନିକଟରେ ପହଞ୍ଚି ଗୁରୁଙ୍କୁ ପାଇଲେ । ସେ ଥିଲେ ଗୌଡପାଦଙ୍କ ଶିଷ୍ୟ ଗୋବିନ୍ଦ ଭଗବଦ୍ ପାଦ । ଗୁରୁ ଶଙ୍କରଙ୍କୁ ପ୍ରଶ୍ନ କଲେ ତୁମେ କିଏ ? ଉତ୍ତରରେ ଶଙ୍କର ପ୍ରକୃତ "ମୁଁ" ପଦବାଚ୍ୟ ଯେଉଁ ପରମାତ୍ମା ତାଙ୍କର ସ୍ୱରୂପ ସଂପର୍କରେ ଦଶଟି ଶ୍ଳୋକ ଆବୃତ୍ତି କଲେ ତାହା ଦଶଶ୍ଳୋକୀ ନାମରେ ନାମିତ । ଅଦ୍ୱୈତବାଦ ସମ୍ବନ୍ଧରେ ଶଙ୍କର ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ତଥ୍ୟ ପ୍ରକାଶ କଲେ ତହିଁରେ ଗୁରୁଦେବ ପ୍ରୀତ ହୋଇ କହିଲେ ଯେ ସ୍ୱୟଂ ଶିବ ବେଦାନ୍ତ ଜ୍ଞାନକୁ ପ୍ରତିଷ୍ଠିତ କରିବା ପାଇଁ ସଂସାରରେ ଜନ୍ମ ଲାଭ କରିଛନ୍ତି। ଆଶ୍ରମର ପ୍ରଥା ଅନୁଯାୟୀ ତାଙ୍କୁ ପରମହଂସ ସନ୍ୟାସ ଦୀକ୍ଷିତ କରାଗଲା ଓ ଅଦ୍ୱୈତ ଦର୍ଶନ ସମ୍ବନ୍ଧରେ ଯଥାର୍ଥ ଜ୍ଞାନ ପ୍ରଦାନ କରୁଥିବା ମହାବାକ୍ୟର ତତ୍ତ୍ୱ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରାଗଲା ।ଏହାପରେ ଗୁରୁ ତାଙ୍କୁ ବାଣୀ ନଗରକୁ (ବନାରସ) ଯାତ୍ରାକରିବା ନିମନ୍ତେ ଆଦେଶ ଦେଲେ ।

ଗୁରୁଙ୍କ ଆଦେଶରେ ଶଙ୍କର କାଶୀଧାମ ଅଭିମୁଖେ ଯାତ୍ରା କଲେ । ସେଠାରେ ବହୁଲୋକ ଶଙ୍କରଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ମଧ କେହି ତାଙ୍କର ଅବଲମ୍ବିତ ପଥର ଅନୁସରଣ କରିବାକୁ ଆଗ୍ରହ ପ୍ରକାଶ କରିନଥିଲେ । ସେହି ସମୟରେ ଚୋଳ ଦେଶର ସନନ୍ଦନ ନାମକ ଜଣେ କୃତବିଦ୍ୟ ବ୍ରାହ୍ମଣ କୁମାର ତାଙ୍କର ପ୍ରଥମ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ତାଙ୍କ ନାମ ବିଷ୍ଣୁଶର୍ମା । ପରେ ସେ ପଦ୍ମପାଦ ନାମରେ ନାମିତ ହୋଇଥିଲେ । ଏଠାରେ କୁହାଯାଇପାରେ ଯେ ଶଙ୍କରଙ୍କ ଜନ୍ମସ୍ଥାନ କେରଳରେ ଜାତିପ୍ରଥା ଅତି ଉତ୍କଟ ଥିଲା । ବ୍ରାହ୍ମଣ ମାନେ ସମାଜର ଶ୍ରେଷ୍ଠୀ ଥିଲେ । ସେମାନେ ନୀଚ ବର୍ଣ୍ଣର ଲୋକଙ୍କଠାରୁ ଶହେ ହାତ ଦୂରରେ ରହୁଥିଲେ । ନୀଚବର୍ଣ୍ଣର ଲୋକେ ମଧ ବ୍ରାହ୍ମଣମାନଙ୍କୁ ଶହେ ହାତ ଦୂର ରାସ୍ତା ଛାଡି ବାଟ ଭାଙ୍ଗି ଚାଲିଯାଉଥିଲେ । ଶଙ୍କର ପୂର୍ଣ୍ଣଜ୍ଞାନୀ ହେଲେ ମଧ ବ୍ୟବହାର କ୍ଷେତ୍ରରେ ସମଦର୍ଶୀ ହୋଇପାରିନଥିଲେ । ନୀଚଜାତି ବିଷୟକ ଅଭ୍ୟାସ ଓ କଠୋର ଆଚାର ସେ ପର୍ଯ୍ୟନ୍ତ ପରିତ୍ୟାଗ କରିପାରିନଥିଲେ । ବ୍ୟବହାର ସଦାସର୍ବଦା ଜ୍ଞାନପୂର୍ବକ ହେବା କଥା, ମାତ୍ର ଅଭ୍ୟାସ ଯେତେବେଳେ ଦୃଢ ହୋଇଥାଏ ସେତେବେଳେ ତାହା ସଂସ୍କାରରେ ପରିଣତ ହୋଇଥାଏ ଓ ତାହା ଆଚାର ବିଚାରରେ ପ୍ରତିଫଳିତ ହୁଏ । ଏହି ବିକାରଭାବ ମନୁଷ୍ୟର ପୂର୍ଣ୍ଣତାରେ ବାଧା ସୃଷ୍ଟିକରେ । ଘୃଣାଭାବ ମୃତ୍ୟୁ ସମୟରେ ବାସନା ସହିତ ମଧ ପରବର୍ତ୍ତୀ ଜନ୍ମକୁ ପ୍ରଭାବିତ କରିଥାଏ । ତେଣୁ କୌଣସି ପ୍ରକାରର ଅସୂୟା, ଘୃଣା, ବିଭେଦ ମନୁଷ୍ୟ ପକ୍ଷେ ଶ୍ରେୟସ୍କର ନୁହେଁ । ତେଣୁ ଜ୍ଞାନଲାଭ ହୋଇଥିଲେ ମଧ ଯଦି ବ୍ୟବହାର ନଷ୍ଟ ନହୁଏ କିମ୍ବା ବ୍ୟବହାରର ସଂସ୍କାର ବା ପରିମାର୍ଜନ ନହୁଏ ତେବେ ସେହି ଜ୍ଞାନ ସେ ପର୍ଯ୍ୟନ୍ତ ଫଳପ୍ରଦ ହୋଇନଥାଏ ବୋଲି କହିବାକୁ ହେବ । ସ୍ୱୟଂ ଭଗବାନ ମହାଦେବ, ଶଙ୍କରଙ୍କୁ ଏହି ଜ୍ଞାନ ପ୍ରଦାନ ନିମନ୍ତେ ସେଠାରେ ଉପସ୍ଥିତ ହୋଇଥିଲେ ।

ଆଚାର୍ଯ୍ୟ ଶଙ୍କର ଶିଷ୍ୟମାନଙ୍କ ସହିତ ମଣିକର୍ଣ୍ଣିକା ଘାଟକୁ ସ୍ନାନ କରିବା ନିମନ୍ତେ ଗମନ କରିବା ସମୟରେ ସେହି ସଂକୀର୍ଣ୍ଣ ପଥରେ ଜଣେ ବିଶାଳବାହୁ ବିଶିଷ୍ଟ ଚଣ୍ଡାଳ ଚାରିଗୋଟି କୁକୁରକୁ ଦଉଡିରେ ବାନ୍ଧି ଘାଟରୁ ଫେରୁଥିବା ଦୃଶ୍ୟମାନ ହୁଅନ୍ତେ ଶଙ୍କର ତାଙ୍କୁ ଦୂରହୁଅ ଦୂର ହୁଅ ବୋଲି ନିର୍ଦ୍ଦେଶ ଦେଲେ । କୁକୁରମାନଙ୍କୁ ସଂଜତ ନକରି ସେହି ଚଣ୍ଡାଳବେଶୀ ଶଙ୍କରଙ୍କ ନିକଟକୁ ଆସିବାକୁ ଲାଗିଲେ ଓ କହିଲେ- ଆପଣ ମୋତେ ଯେ ଦୂରକୁ ଘୁଞ୍ଚି ଯିବାକୁ କହୁଛନ୍ତି ତାହା ଅସଂଗତ । ବେଦରେ କୁହାଯାଇଛି- ଆତ୍ମା ଏକ, ଅଦ୍ୱିତୀୟ, ପାପଶୂନ୍ୟ, ନିରଂଜନ, ଅସଙ୍ଗ, ସତ୍ୟ ଜ୍ଞାନ ଓ ଆନନ୍ଦସ୍ୱରୂପ । ତେବେ ବୈଦାନ୍ତିକ ହୋଇ ସେହି ଆତ୍ମାର ଭେଦ କଳ୍ପନା କରୁଛନ୍ତି କିପରି ?ଚଣ୍ଡାଳଙ୍କ

ମୁଖରେ ସଂସ୍କୃତ ଭାଷାରେ ଅନର୍ଗଳ ବେଦାନ୍ତ ବାଖ୍ୟା ଶ୍ରବଣ କରି ଶଙ୍କର ଭଗବତ୍‌ପାଦ ବିସ୍ମିତ ହୋଇ କହିଲେ- ମହାଶୟ ଆପଣ ଆତ୍ମତତ୍ତ୍ୱବିଦ୍‌ଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣଙ୍କ ଉପଦେଶ ପାଳନ କରି ମୁଁ ଭେଦବୁଦ୍ଧି ପରିତ୍ୟାଗ କଲି । ଏହାପରେ ବିଶ୍ୱେଶ୍ୱର ତାଙ୍କର ସ୍ୱରୂପରେ ପ୍ରକାଶିତ ହୋଇ କହିଲେ ବତ୍ସ ତୁମଦ୍ୱାରା ପୁନରାୟ ବୈଦିକଧର୍ମର ପ୍ରବର୍ତ୍ତନ ହେବ । ତୁମ ଭିତରେ କୌଣସି ପ୍ରକାରର ନ୍ୟୁନତା ରହିବା ଅନୁଚିତ୍ ମନେକରି ମୁଁ ଏହି ଲୀଳା ପ୍ରଦର୍ଶନ କଲି । ଏବେ ତୁମେ ବ୍ୟାସକୃତ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କର ।

ଏହାପରେ ଶଙ୍କର କାଶି ଛାଡି ବଦ୍ରିକାଶ୍ରମ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ହରିଦ୍ୱାର, ଋଷିକେଶ, ବଦ୍ରିନାଥ ଦର୍ଶନ କରିବାପରେ ଭଗବାନ ଶଙ୍କର ବ୍ୟାସ ତୀର୍ଥରେ ପହଞ୍ଚି ବ୍ୟାସ ଗୁମ୍ଫାରେ ଗୁହାବସ୍ଥାନ କଲେ । ଋଷିକେଶର ଶୂନ୍ୟମନ୍ଦିରରେ ଓ ବଦ୍ରିନାଥ ଧାମରେ ନାରଦ କୁଣ୍ଡରୁ ଅପହୃତ ଦେବ ବିଗ୍ରହ ପ୍ରତିଷ୍ଠା କରିବାପରେ ଶଙ୍କରଙ୍କର ବିଶେଷ ଖ୍ୟାତି ହୋଇଯାଇଥାଏ । ତେଣୁ ଜ୍ୟୋତିଧାମର ରାଜା ଆଚାର୍ଯ୍ୟଙ୍କର ରହିବାର ସମସ୍ତ ସୁବନ୍ଦୋବସ୍ତ କରିଦେଲେ । ସେହି ଗୁମ୍ଫାରେ ବ୍ୟାସଦେବ ମହାଭାରତ ରଚନା କରିଥିଲେ । ବ୍ୟାସଦେବ ଯାହା ଡାକୁଥିଲେ ତାହା ଗଣପତି ଲେଖୁଥିଲେ । ଗଣେଶ ଏହି ସର୍ତ୍ତରେ ଲେଖକ ନିଯୁକ୍ତ ହୋଇ ଥିଲେ ଯେ- ସେ ଅନର୍ଗଳ ଲେଖନୀ ଚାଳନା କରିବେ, ଲେଖନୀ ବନ୍ଦହେଲେ ସେ ଆଉ ଲେଖିବେ ନାହିଁ । ସେ ମଧ ବ୍ୟାସବାକ୍ୟ ବୁଝିନପାରିଲେ ଲେଖିବେ ନାହିଁ ବୋଲି ସର୍ତ୍ତ ରହିଲା । ସାକ୍ଷୀ ରହିଥିଲେ ଦେବୀ ସରସ୍ୱତୀ । ତେଣୁ ବ୍ୟାସ ପୀଠର ଦକ୍ଷିଣ ଭାଗରେ ସରସ୍ୱତୀଙ୍କ ମନ୍ଦିର ଓ ବାମଭାଗରେ ଗଣପତିଙ୍କ ମନ୍ଦିର ବିଦ୍ୟମାନ । ସେହି ଗୁମ୍ଫାରେ ଶଙ୍କର ଉପବେଶନ କଲେ ।

ଏହି ବ୍ୟାସଗୁମ୍ଫାରେ ଅବସ୍ଥାନ କରି ପ୍ରଥମେ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କଲେ । ତତ୍‌ପରେ ଉପନିଷଦ ଉପରେ ଦୃଷ୍ଟିଦେଇ ଈଶ, କେନ,କଠ, ପ୍ରଶ୍ନ , ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ ଐତରେୟ ଛାନ୍ଦୋଗ୍ୟ ଓ ବୃହଦାରଣ୍ୟକ-ଏହି ଦଶଖଣ୍ଡି ଉପନିଷଦର ଭଷ୍ୟ ରଚନା କଲେ । ଏହି ଉପନିଷଦ ଗୁଡିକୁ ପ୍ରଧାନ ଉପନିଷଦ ଭାବରେ ଆଜି ଯାଏ କୁହାଯାଉଛି । ଯେଉଁ ଉପନିଷଦ ଗୁଡିକ ଉପରେ ଶଙ୍କର ଭାଷ୍ୟ ଲେଖିନାହାନ୍ତି ସେଗୁଡିକୁ ପ୍ରଧାନ ଉପନିଷଦ ଭାବେ ଗଣ୍ୟ କରାଯାଏ ନାହିଁ । ସର୍ବଶେଷରେ ଶଙ୍କର ଶ୍ରୀମଦ୍ ଭଗବଦ୍‌ଗୀତା ଉପରେ ଭାଷ୍ୟ ରଚନା କଲେ । ଯାହା ଶଙ୍କରଭାଷ୍ୟ ନାମରେ ଖ୍ୟାତ । ଶ୍ରୀମଦ୍ ଭଗବଦ୍‌ଗୀତା, ବ୍ରହ୍ମସୂତ୍ର ଓ ଉପନିଷଦଗୁଡିକୁ ବେଦାନ୍ତ ଶାସ୍ତ୍ରରେ ପ୍ରସ୍ଥାନତ୍ରୟୀ ବୋଲି କୁହାଯାଏ ।

ବ୍ୟାସ ଗୁମ୍ଫାରେ ଚାରିବର୍ଷ ଅବସ୍ଥାନ କରି ଭାଷ୍ୟରଚନା କରିବାପରେ ସେ ସବୁର ଆଲୋଚନା ପର୍ଯ୍ୟାଲୋଚନା ହେବା ଦରକାର ବୋଲି ଶିଷ୍ୟବର୍ଗ ଗୁରୁଙ୍କ ନିକଟରେ ସେମାନଙ୍କର ଅଭିପ୍ରାୟ  ପ୍ରକାଶ କଲେ । ଏହିଠାରେ ଶଙ୍କର ତାଙ୍କର ପ୍ରଥମଶିଷ୍ୟ ସନନ୍ଦନଙ୍କୁ ପଦ୍ମପାଦ ନାମ ପ୍ରଦାନ କରିଥିଲେ । ଶିଷ୍ୟମାନଙ୍କର ଇଚ୍ଛା, ଗୁରୁଦେବ ବୁଝିପାରିଥିଲେ । ସାଧୁମାନେ ପରେଚ୍ଛାଜନିତ ପ୍ରାରବ୍ଧ ଭୋଗ କରିବା ନିମନ୍ତେ ଜୀବନଧାରଣ କରନ୍ତି । ଏହିଠାରେ ଗୁରୁଶଙ୍କରଙ୍କର ଷୋଡଶବର୍ଷ ବୟସ ପୂର୍ଣ୍ଣ ହେଲା । ସମସ୍ତ ଭାଷ୍ୟ ରଚନା କରି ସାରିଥିବାରୁ ଶଙ୍କରଙ୍କ ମନରେ ଆଉ ଶିଷ୍ୟମାନଙ୍କୁ ଶାସ୍ତ୍ରବୁଝାଇବା ପାଇଁ ଉତ୍ସାହ ଯାତ ହେଲା ନାହିଁ । ପଦ୍ମପାଦ ଶଙ୍କରଙ୍କ ଠାରୁ ତାଙ୍କ ବାଲ୍ୟଜୀବନ କଥା ଶୁଣିଥିବାରୁ ଅନୁମାନ କଲେ ଯେ ବର୍ତ୍ତମାନ ଷୋଡଶ ବର୍ଷ ପୂର୍ଣ୍ଣ ହେଉଥିବାରୁ ଆଚାର୍ଯ୍ୟ ଶଙ୍କରଙ୍କର ନିର୍ବାଣଲାଭ କରିବା ପାଇଁ ପ୍ରବୃତ୍ତି ଜାତ ହେଉଅଛି । ସେଠାରେ ପଦ୍ମପାଦ ସ୍ଥିର କଲେ ଯେ ତାଙ୍କୁ ଅଧ୍ୟାପନା କାର୍ଯ୍ୟରେ ବ୍ୟାପୃତ ରଖି ନିର୍ବାଣ ଚିନ୍ତାରୁ ବିରତ କରାଇବେ । ତେଣୁ ଗୁରୁ ଓ ଶିଷ୍ୟଗଣ ବଦ୍ରିକାଶ୍ରମ ତ୍ୟାଗ କରି କେଦାରନାଥଙ୍କ ଦର୍ଶନପରେ ଉତ୍ତରକାଶୀରେ ଅବସ୍ଥାନ କଲେ ।

ଉତ୍ତରକାଶୀରେ ଅବସ୍ଥାନ କାଳରେ ଆଚାର୍ଯ୍ୟ ଶିଷ୍ୟମାନଙ୍କୁ ବ୍ରହ୍ମସୂତ୍ରର ଭାଷ୍ୟ ସଂପର୍କରେ ଶିକ୍ଷା ପ୍ରଦାନ କରୁଥିଲେ । ଦିନେ ପ୍ରାତଃକାଳରେ ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ ଅଧ୍ୟାପନାରେ ପ୍ରବୃତ୍ତ ଥିବା ସମୟରେ ଜଣେ ବୃଦ୍ଧ ବ୍ରାହ୍ମଣ ସେଠାରେ ଉପସ୍ଥିତ ହୋଇ ପ୍ରଶ୍ନକଲେ-ଶୁଣୁଛି ଜଣେ କିଏ ଏଠାରେ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରିଛନ୍ତି ସେ କିଏ ବୋଲି ପଚାରନ୍ତେ- ଶିଷ୍ୟମାନେ ତାଙ୍କୁ ଶଙ୍କରଙ୍କୁ ଦେଖାଇଦେଲେ ଓ କହିଲେ ଏହି ବ୍ୟକ୍ତି ବ୍ରହ୍ମସୂତ୍ରର ଭାଷ୍ୟକାର, ଆମଗୁରୁଦେବ ଭଗବାନ୍ ଶଙ୍କରାଚାର୍ଯ୍ୟ । ବ୍ରାହ୍ମଣ ଶଙ୍କରଙ୍କୁ ବିଚଳିତ କରିବା ନିମନ୍ତେ ତାଚ୍ଛଲ୍ୟ କରି କହିଲେ ଭାଷ୍ୟକାର ଶବ୍ଦ କାହିଁକି ପ୍ରୟୋଗ କରୁଛ ? କଳିଯୁଗରେ ଭାଷ୍ୟକାର କେଉଁଠୁ ଆସିବେ ? ତତ୍‌ପରେ ସେ ପ୍ରଶ୍ନକଲେ କୁହନ୍ତୁ ତ ବ୍ରହ୍ମସୂତ୍ରରେ ତୃତୀୟ ଅଧ୍ୟାୟ ପ୍ରଥମପାଦ ପ୍ରଥମସୂତ୍ର କଣ ? ଆଚାର୍ଯ୍ୟ ଶଙ୍କର ସେତେବେଳକୁ ସ୍ଥିତପ୍ରଜ୍ଞ ପୁରୁଷ । ତାଙ୍କୁ ବା ବିଚଳିତ କରିବ କିଏ ?

ସେ ତୃତୀୟ ଅଧ୍ୟାୟ ପ୍ରଥମପାଦ ପ୍ରଥମ ସୂତ୍ର ଆବୃତ୍ତି କଲେ ।

ତଦନନ୍ତର ପ୍ରତିପତ୍ତୌ ରଂହତି ସମ୍ପରି ଷ୍ୱକ୍ତଃ ପ୍ରଶ୍ନନିରୂପଣାଭ୍ୟାମ୍ ॥

ଉକ୍ତ ଦେହପରେ ଦେହାନ୍ତର ପ୍ରାପ୍ତି ସମୟରେ ଏହି ଜୀବାତ୍ମା ଶରୀରରେ ବୀଜରୂପକ ସୂକ୍ଷ୍ମତତ୍ତ୍ୱରେ ଯୁକ୍ତ ହୋଇଥାଏ, ଏହିକଥା ପ୍ରଶ୍ନ ଏବଂ ତାହାର ଉତ୍ତର ଦ୍ୱାରା ସିଦ୍ଧ ହେଉଛି । ଏହାକୁ ବାଖ୍ୟା କରି ଆଚାର୍ଯ୍ୟ ଶଙ୍କର ଉତ୍ତର ଦେଲେ-ଜୀବ ଯେତେବେଳେ ଏହି ଦେହ ତ୍ୟାଗକରି ଦେହାନ୍ତର ଗ୍ରହଣ କରିବା ନିମିତ୍ତ ଯାଏ, ସେତେବେଳେ ତାହାର ଦେହ, ବୀଜ ଯେଉଁ ସୂକ୍ଷ୍ମଭୂତରେ ନିର୍ମିତ ସେହି ସୂକ୍ଷ୍ମଭୂତ ଦ୍ୱାରା ପରିବେଷ୍ଟିତ ହୋଇଥାଏ । ତେଣୁ ଆତ୍ମା ସୂକ୍ଷ୍ମଭୂତଦ୍ୱାରା ପରିବେଷ୍ଟିତ ହୋଇ ଦେହରୁ ବର୍ହିଗତ ହୁଏ । ଏଣୁ ମୁକ୍ତି ସାଧନ ସମୟରେ ବୈରାଗ୍ୟର ଆବଶ୍ୟକ ହୋଇଥାଏ । ଏ ବିଚାରରେ ବୃଦ୍ଧ ତୃପ୍ତ ହେଲେ ନାହିଁ । ସେ ଆହୁରି ଆଗକୁ ଯାଇ ଆଲୋଚନା କଲେ ଏମିତିରେ ଆଚାର୍ଯ୍ୟ ତାର ପ୍ରତ୍ୟୁତ୍ତର ପ୍ରଦାନ କଲେ । ଏହିପରି ଉତ୍ତର ପ୍ରତ୍ତ୍ୟୁତ୍ତର ଦେବାରେ ସମଗ୍ର ବେଦାନ୍ତ ସୂତ୍ରର ଆଲୋଚନା ହୋଇଗଲା । ଜୀବ, ଜଗତ, ଈଶ୍ୱର, ମୁକ୍ତି, ବ୍ରହ୍ମଙ୍କ ସ୍ୱରୂପ ଓ କର୍ମକାଣ୍ଡ ତଥା ଜ୍ଞାନକାଣ୍ଡ ସଂପର୍କରେ ତତ୍ତ୍ୱ ଆଲୋଚନା ହୋଇ ସମସ୍ତଙ୍କର ମଧୁର ଜ୍ଞାନଲାଭ ହେଲା । ଶିଷ୍ୟ ମଣ୍ଡଳୀ ଏଭଳି ଶାସ୍ତ୍ରାର୍ଥ ଶ୍ରବଣ କରି ଅତ୍ୟନ୍ତ ଆନନ୍ଦିତ ହେଲେ । ଏହି ଭାବରେ ଏକ ସପ୍ତାହ ଆଲୋଚନା ଚାଲିଲା । ବୃଦ୍ଧ ଆଲୋଚନା ଶେଷ କରି ଚାଲିଯାଆନ୍ତି ଓ ପରଦିନ ପୁନରାୟ ସେହି ସମୟକୁ ଆସି ଉପସ୍ଥିତ ହୋଇଯାଆନ୍ତି । ସାତଦିନପରେ ପଦ୍ମପାଦ ଏ ଘଟଣା ଦେଖି ସନ୍ଦେହ ପ୍ରକଟ କରି କହିଲେ ଏ ମହୋଦୟ ସାକ୍ଷାତ ବେଦବ୍ୟାସଙ୍କ ଭଳି ମନେ ହେଉଛନ୍ତି । ପ୍ରଭୁ ବେଦବ୍ୟାସ ଛଳନା କରି ଆସୁନାହାନ୍ତି ତ ? ତହିଁ ଆରଦିନ ବୃଦ୍ଧ ଆଗମନ କରନ୍ତେ ଆଚାର୍ଯ୍ୟ ପ୍ରଶ୍ନକଲେ ମହାତ୍ମନ ମୋର ଶିଷ୍ୟମାନେ ଗତକାଲି ଆପଣଙ୍କ ଉପରେ ସନ୍ଦେହ ପ୍ରକଟ କରି କହିଲେ କି ଆପଣ ସେହି ମହାମୁନୀ ବେଦବ୍ୟାସ । ଏ ଅନୁମାନ କଣ ସତ୍ୟ ?ଆଚାର୍ଯ୍ୟ ସେହି ଆଦିଗୁରୁଙ୍କୁ ଯଥାବିଧି ସମ୍ମାନ ପ୍ରଦର୍ଶନ କଲେ ଏବଂ ବୃଦ୍ଧ ବ୍ରାହ୍ମଣ ସ୍ୱୀୟ ରୂପ ପ୍ରଦର୍ଶନ କରି ଶିଷ୍ୟମାନଙ୍କ ସହ ଆଚାର୍ଯ୍ୟ ଶଙ୍କରଙ୍କୁ କୃତାର୍ଥ କଲେ । ଆଚାର୍ଯ୍ୟ ତତ୍‌ପରେ କହିଲେ ମହାଶୟ ଆପଣଙ୍କ ସୂତ୍ରର ଭାଷ୍ୟ ମୁଁ ପ୍ରଣୟନ କରିଛି । ଏଥିରେ ଆଉ ବିଚାରର ପ୍ରୟୋଜନ ନାହିଁ । ଆପଣ ଭାଷ୍ୟଦେଖି ଅନୁଗ୍ରହ କରି କହନ୍ତୁ ଏହା ପ୍ରକାଶିତ ହେବ ନା ବିଲୁପ୍ତ ହେବ ? ତତ୍‌ପରେ ଶଙ୍କର ଭାଷ୍ୟକୁ ଗୁରୁଙ୍କ ହସ୍ତରେ ସମର୍ପଣ କଲେ ଓ ସେ ତାହା ପାଠକଲେ ଓ କହିଲେ ମୁଁ ସମସ୍ତ କଥା ଶୁଣି ସାରିଛି । ଏହା ଜାଣିବା ନିମିତ୍ତ ଏବଂ ଭାଷ୍ୟ କିପରି ହୋଇଛି, ଦେଖିବା ନିମିତ୍ତ ଏଠାକୁ ଆଗମନ କରିଅଛି । ତୁମର ଏ ଭାଷ୍ୟ ଉପଯୁକ୍ତ ଓ ମୋର ଭାବ ଏଥିରେ ଯଥାର୍ଥରେ ବ୍ୟକ୍ତ ହୋଇଅଛି । ତୁମର

ଗୁରୁ ଗୋବିନ୍ଦପାଦ ଓ ତାଙ୍କର ଗୁରୁ ଗୌଡପାଦ ମୋର ଶିଷ୍ୟ ସଂପ୍ରଦାୟ । ଗୌଡପାଦ ମୋର ପୁତ୍ର ଶୁକଦେବଙ୍କ ଠାରୁ ସାକ୍ଷାତ ଭାବରେ ଶିକ୍ଷାଲାଭ କରିଥିଲେ । ବର୍ତ୍ତମାନ ଏ ଭାଷ୍ୟ ରଚନା ହେବାଦ୍ୱାରା ସଂସାରରେ ବୈଦିକ ଧର୍ମ ପ୍ରତିଷ୍ଠିତ ହେବ ।

ଏହା ଶ୍ରବଣ କରିବାପରେ ଆଚାର୍ଯ୍ୟଶଙ୍କର କହିଲେ ହେ ମହାତ୍ମନ୍ -ମୋର କର୍ତ୍ତବ୍ୟ ବର୍ତ୍ତମାନ ସମାପ୍ତ ହୋଇଛି । ତେଣୁ ମୁଁ ଆପଣଙ୍କ ସାକ୍ଷାତରେ ଏହି ଦେହ ପରିତ୍ୟାଗ କରିବାକୁ ଇଚ୍ଛା କରୁଅଛି । ଦୟାକରି ତାହା ମୋତେ ପ୍ରଦାନ କରନ୍ତୁ । ଏହାପରେ ବ୍ୟାସଦେବ କହିଲେ ତୁମର କର୍ମଶେଷ ହୋଇନାହିଁ । ବ୍ରହ୍ମସୂତ୍ର ତିନୋଟି ପ୍ରସ୍ଥାନରେ ବିଭକ୍ତ । ବେଦାନ୍ତ ନ୍ୟାୟ ପ୍ରସ୍ଥାନ । ଶ୍ରୁତି ଓ ସ୍ମୃତି ନାମକ ବେଦାନ୍ତର ଆଉ ଦୁଇଟି ପ୍ରସ୍ଥାନ ଅବଶିଷ୍ଟ ଅଛି । ଏହି ଦୁଇଟିର ଭାଷ୍ୟ ତୁମେ ପ୍ରଣୟନ କର । ଆଚାର୍ଯ୍ୟଶଙ୍କର ସେ ଦୁଇଟିର ଭାଷ୍ୟ ସମାପ୍ତ କରିଥିଲେ ଓ ତାହା ଗୁରୁବରଙ୍କ ହାତକୁ ବଢାଇଦେଇ ପୁନର୍ବାର ଦେହତ୍ୟାଗର ଅଭିଳାଷ ଜଣାଇ ଅନୁମତି ପ୍ରାର୍ଥନା କଲେ । କ୍ଷଣକାଳ ଧ୍ୟାନମଗ୍ନ ହୋଇ ଗୁରୁବର ପୁନର୍ବାର କହିଲେ- ନା ତୁମର କାର୍ଯ୍ୟ ସମାପ୍ତ ହୋଇନାହିଁ । ତୁମର ଷୋଡଶ ବର୍ଷ ଆୟୁଷ ସମାପ୍ତ ହୋଇଯିବା ଉପରେ । ତୁମକୁ ମୁଁ ବର୍ତ୍ତମାନ ଆୟୁ ପ୍ରଦାନ କରୁଛି । ମୋ ଆଶୀର୍ବାଦରେ ତୁମେ ଆଉ ଷୋଳବର୍ଷ ବଞ୍ଚିରହିବ । ତୁମେ ଦିଗ୍‌ବିଜୟୀ ପଣ୍ଡିତମାନଙ୍କୁ ପରାଜିତ କରି ସ୍ୱମତରେ ଦୀକ୍ଷିତ ନକରିବା ଯାଏ ଜନସାଧାରଣ ବେଦାନ୍ତର ଅର୍ଥ ଗ୍ରହଣ କରିପାରିବେ ନାହିଁ । ତେଣୁ ତୁମେ ବର୍ତ୍ତମାନ ଦେହତ୍ୟାଗର ବାସନା ପରିହାର କର । ସର୍ବପ୍ରଥମେ କର୍ମବାଦର ଅଗ୍ରଣୀ ପଣ୍ଡିତ କୁମାରିଲ୍ଲ ଭଟ୍ଟଙ୍କୁ ପରାଜିତ କର । କୁମାରିଲ୍ଲ ଭଟ୍ଟ ବୌଦ୍ଧ, ଜୈନ ପ୍ରଭୃତି ଅବୈଦିକ ଧର୍ମଗୁରୁ ମାନଙ୍କୁ ପରାଜିତ କରିଛନ୍ତି । ସେ ତୁମ ମତ ଗ୍ରହଣ କଲେ ଭାରତବାସୀ ତୁମର ମତ ଗ୍ରହଣ କରିବେ ।

**କୁମାରିଲ୍ଲଭଟ୍ଟଙ୍କ ପରିଚୟ ଓ ତାଙ୍କର ଦର୍ଶନ:-**

କୁମାରିଲ୍ଲ ଭଟ୍ଟ ଦକ୍ଷିଣଦେଶୀୟ ବ୍ରାହ୍ମଣ । ଭାରତରେ ବୌଦ୍ଧ ଓ ଜୈନଧର୍ମ ପ୍ରଭାବରେ ବୈଦିକ ଧର୍ମ ପ୍ରଭାବହୀନ ହୋଇଯାଇଥିଲା । ଏହି ବୈଦିକ ଧର୍ମକୁ ଶକ୍ତିମାନ କରିବା ଦିଗରେ କୁମାରିଲ୍ଲ ଭଟ୍ଟ ସେନାପତିର କାର୍ଯ୍ୟ କରିଥିଲେ । ବୌଦ୍ଧମାନେ ହିନ୍ଦୁଧର୍ମର ନାନାବିଧ ଦୋଷ ପ୍ରଦର୍ଶନ କରାଇ ଜନସାଧାରଣଙ୍କୁ ନିଜଧର୍ମରେ ଦୀକ୍ଷିତ କରାଇଥିଲେ । କୁମାରିଲ୍ଲ ତାଙ୍କର ବିଚାର ପୂର୍ବ ମୀମାଂସା ଦର୍ଶନ ଅନୁସାରେ ପ୍ରଦାନ କରି କହୁଥିଲେ କର୍ମ ହିଁ ଜୀବର ଶୁଭାଶୁଭ ଫଳର ନିଦାନ ତେଣୁ ଯାଗଯଜ୍ଞ କରିବା କର୍ତ୍ତବ୍ୟ ଓ ଏଥିରେ ସ୍ୱର୍ଗଲାଭ ହୁଏ । ବୌଦ୍ଧମାନେ ବେଦ ବିରୋଧୀଥିଲେ ଓ କୁମାରିଲ୍ଲ

ଭଟ୍ଟପାଦ ଥିଲେ ଅତ୍ୟନ୍ତ ବେଦାନୁରାଗୀ । ବୌଦ୍ଧ ଧର୍ମାଚାର୍ଯ୍ୟଙ୍କ ମଧ୍ୟରେ ଧର୍ମପାଳ ସେ ସମୟରେ ଶ୍ରେଷ୍ଠଥିଲେ । ଭଟ୍ଟପାଦଙ୍କର ଖୁଡୁତା ଧର୍ମକୀର୍ତ୍ତି ବୌଦ୍ଧମତ ଶିକ୍ଷାକରି ସ୍ୱଦେଶକୁ ଫେରି ଆସିଥିଲେ ଓ କୁମାରିଲ୍ଲଙ୍କୁ ବିଚାରରେ ପରାଜିତ କରିଥିଲେ । ତେଣୁ ପଣ ଅନୁସାରେ କୁମାରିଲ୍ଲ ବୌଦ୍ଧମତରେ ଦୀକ୍ଷିତ ହେବାକୁ ବାଧ୍ୟ ହେଲେ । ଏହାପରେ ସେ ବୌଦ୍ଧଶାସ୍ତ୍ର ଓ ବିଚାର ରହସ୍ୟ ଶିକ୍ଷା କରିବା ନିମନ୍ତେ ନାଳନ୍ଦା ବୌଦ୍ଧ ବିହାରକୁ ଗମନ କଲେ । ସେଠାରେ ଅଧ୍ୟକ୍ଷ ଥିବା ଧର୍ମପାଳଙ୍କ ଶିଷ୍ୟତ୍ୱ ସ୍ୱୀକାର ପୂର୍ବକ ବୌଦ୍ଧ ଦର୍ଶନ ପାଠକଲେ । ମାତ୍ର ପ୍ରସିଦ୍ଧ କୁମାରିଲ୍ଲ ଭଟ୍ଟପାଦଙ୍କ ଅନ୍ତରରେ ବୈଦିକ ଦର୍ଶନର ଶ୍ରେଷ୍ଠତା ବିଦ୍ୟମାନ ଥାଏ । ଦିନେ ବୌଦ୍ଧଗୁରୁ ଗୋଟିଏ ସଭାରେ ବକ୍ତବ୍ୟ ପ୍ରଦାନ କରୁଥିବାବେଳେ ଭୀଷଣ ଭାବରେ ବେଦର ନିନ୍ଦା କରିବାକୁ ଲାଗିଲେ । ଭଟ୍ଟପାଦ ଏହା ଶ୍ରବଣ କରି ଅତ୍ୟନ୍ତ ଦୁଃଖିତ ହେଲେ ଓ ନତମସ୍ତକ ହୋଇ ଚକ୍ଷୁରୁ ଲୋତକ ବର୍ଷଣ କରିଚାଲିଲେ । ଏ ଲୋତକ ତାଙ୍କର ଥିଲା ସ୍ୱତଃସ୍ଫୁର୍ତ୍ତ । ଏଥିରୁ ସେ କେତେ ବେଦକୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଜଣାପଡେ । ଏହାଦେଖି ଜଣେ ଭିକ୍ଷୁ କୁମାରିଲ୍ଲଙ୍କ ପ୍ରତି ଗୁରୁଙ୍କର ଦୃଷ୍ଟିଆକର୍ଷଣ କରାଇଦେଲେ । ଗୁରୁଦେବ ତାଙ୍କ କ୍ରନ୍ଦନର କାରଣ ପଚାରିବାରୁ ସେ ଉତ୍ତର ଦେଲେ ଆପଣ ବେଦ ବିରୁଦ୍ଧରେ ଅଯଥା ନିନ୍ଦାବାଦ କରିବାରେ ମୁଁ ଅତିଶୟ କ୍ଷୁବଧ ଓ ମୋର ଚକ୍ଷୁରୁ ସ୍ୱତଃ ଲୋତକଧାରା ସୃଷ୍ଟି ହୋଇଛି । ଏହାଶୁଣି ଗୁରୁ କହିଲେ ତେବେ ଚାଲ ଶାସ୍ତ୍ରାର୍ଥ କରିବା ମୁଁ କେଉଁଠି ଭୁଲ କରିଛି ତାହା ଦେଖିବା । ଏହାପରେ ଦୁହିଁଙ୍କ ଭିତରେ ଶାସ୍ତ୍ରାର୍ଥ ଚାଲିଲା । ଶେଷରେ କୁମାରିଲ୍ଲ କହିଲେ- ବୁଦ୍ଧଙ୍କ ଉପଦେଶ ଭିନ୍ନ ଜୀବ ସର୍ବଜ୍ଞ ହୋଇପାରେନା ବୁଦ୍ଧ ଏହି ଜ୍ଞାନ ବେଦରୁ ଲାଭ କରିବାପରେ ବେଦକୁ ଅସ୍ୱୀକାର କଲେ ତେଣୁ ଏହା ତାଙ୍କର ଚୌର୍ଯ୍ୟ ବୃତ୍ତି ଭିନ୍ନ ଅନ୍ୟକିଛି ନୁହେଁ । ଏ ବକ୍ତବ୍ୟରେ ବୌଦ୍ଧଗୁରୁ ଅତିଶୟ କ୍ରୁଦ୍ଧ ହୋଇ କୁମାରିଲ୍ଲଙ୍କୁ ଉଚ୍ଚସ୍ଥାନରୁ ତଳକୁ ପକାଇ କଚାଡି ମାରିଦେବା ଉଚିତ୍ ବୋଲି ମନ୍ତବ୍ୟ ଦେଲେ । ତହୁଁ ବୌଦ୍ଧଭିକ୍ଷୁମାନେ କୁମାରିଲ୍ଲଙ୍କୁ ବଳ ପୂର୍ବକ ଟାଣିଟାଣି ନେଇ ଉଚ୍ଚ ଛାତ ଉପରୁ ତଳକୁ ନିକ୍ଷେପ କଲେ । ନିକ୍ଷେପ କାଳରେ କୁମାରିଲ୍ଲ ଉଚ୍ଚସ୍ୱରରେ ଆକାଶକୁ ଚାହିଁ ପ୍ରାର୍ଥନାପୂର୍ବକ ଉଚ୍ଚାରଣ କଲେ "ବେଦ ଯଦି ସତ୍ୟ ହୋଇଥିବ" ତେବେ ମୋର ଶରୀର ଅକ୍ଷତ ରହିବ । ତାହାହିଁ ହେଲା, ମାତ୍ର ତାଙ୍କର ଚକ୍ଷୁରେ ସାମାନ୍ୟ ଆଘାତ ଲାଗିଲା । ତଳୁ ଅକ୍ଷତ ଅବସ୍ଥାରେ ଉଠି କୁମାରିଲ୍ଲ ବୌଦ୍ଧମାନଙ୍କୁ ସମ୍ବୋଧନ କରି କହିଲେ- ହେ ଅହିଂସାପରାୟଣ ବୌଦ୍ଧଗଣ ଏହିକି ତୁମର ଅହିଂସା ଆଚରଣ ? ମୁଁ ବେଦକୁ ପ୍ରମାଣ ସ୍ଥଳରେ 'ଯଦି' ଶବ୍ଦ ଲଗାଇ ସନ୍ଦେହ ସୂଚନା ଦେଇଥିବାରୁ ମୋ

ଚକ୍ଷୁରେ ଆଘାତ ଲାଗିଲା । ଏତଦ୍ ବ୍ୟତୀତ ମୋର ଅନିଚ୍ଛାସତ୍ତ୍ୱେ କପଟତା ଅବଲମ୍ବନ ପୂର୍ବକ ବୌଦ୍ଧଗୁରୁଙ୍କ ନିକଟରୁ ଶାସ୍ତ୍ରଶ୍ରବଣ କରିଥିବାରୁ ଏହି ଚକ୍ଷୁରେ ଆଘାତ ଲାଗିଯାଇଛି । କୁମାରିଲ୍ଲଙ୍କ ନିକଟରେ ଦୈବୀକୃପା ଥିବାର ହୃଦବୋଧ କରି ବୌଦ୍ଧମାନେ ତାଙ୍କୁ ଛାଡି ଦେଲେ ଓ ବ୍ରାହ୍ମଣମାନେ ତାଙ୍କୁ ସତ୍କାର ସ୍ୱାଗତ କଲେ । ଏଥିରେ ବୌଦ୍ଧମାନେ ଭୟ ପାଇଲେ ଓ ପୁନର୍ବାର ଶାସ୍ତ୍ର ବାଖ୍ୟା ପାଇଁ ଆହ୍ୱାନ କଲେ । ଏହାପରେ ଜୈନଗୁରୁ ମଧ୍ୟ କୁମାରିଲ୍ଲଙ୍କ ସହିତ ତର୍କରେ ଭାଗନେଇ ବାରମ୍ବାର ପରାସ୍ତ ହେଲେ । ତତ୍ପରେ ରାଜଗୃହରୁ ବୌଦ୍ଧ ପ୍ରାଧାନ୍ୟ ଲୋପପାଇ ବୈଦିକମତର ପ୍ରସାର ଲାଭ କଲା । ବୌଦ୍ଧ ଗୁରୁ ପରାଜୟର ଆତ୍ମଗ୍ଲାନୀରେ ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ କାରଣ କୁମାରିଲ୍ଲ ଥିଲେ । ତେଣୁ ଗୁରୁ ହତ୍ୟା ପାପ ତାଙ୍କ ଉପରେ ଲାଗିଛି ଯାହାକୁ ସେ ପ୍ରାୟଶ୍ଚିତ କରିବାକୁ ଋହିଁଲେ । କୁମାରିଲ୍ଲ ଭଟ୍ଟଙ୍କର ଗୁଣ ଓ ପାଣ୍ଡିତ୍ୟ ଶ୍ରବଣ କରି ବହୁ ବୌଦ୍ଧଗୁରୁ ଓ ଜୈନଗୁରୁ ତାଙ୍କୁ ଶାସ୍ତ୍ରାର୍ଥ ପାଇଁ ଆହ୍ୱାନ ଦେଲେ । ଫଳରେ ସେମାନେ ପରାସ୍ତ ହୋଇ ବୌଦ୍ଧ ଓ ଜୈନ ଧର୍ମ ତ୍ୟାଗ କରି ବୈଦିକ ମାର୍ଗ ଅନୁସରଣ କଲେ କେହି କେହି ଦେହତ୍ୟାଗ କରିଦେଲେ ଓ କେହିକେହି ନିର୍ବାସନ ନେଇ ଦେଶତ୍ୟାଗ କଲେ । ହେଲେ କୁମାରିଲ୍ଲ ଗୁରୁବଧ ଓ ଗୁରୁଦ୍ରୋହ ଅପରାଧର ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ଅଗ୍ନିରେ ପ୍ରବେଶ କରି ଶରୀର ତ୍ୟାଗ କରିବାର ନିଷ୍ପତ୍ତି ନେଲେ । କାରଣ ବୌଦ୍ଧଗୁରୁଙ୍କ ଠାରୁ କପଟରେ ଜ୍ଞାନ ଶିକ୍ଷା କରିଥିଲେ ମଧ୍ୟ ସେମାନେ ଗୁରୁସ୍ଥାନୀୟ । ତେଣୁ ସେ ପ୍ରକାରନ୍ତରେ ଗୁରୁଦ୍ରୋହରେ ଦୋଷୀ ଓ ଗୁରୁଙ୍କର ମୃତ୍ୟୁ ପାଇଁ ସେ ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ଦୋଷୀ ।

ଏହି ଘଡିସନ୍ଧି ମୁହୂର୍ତ୍ତରେ ଆଚାର୍ଯ୍ୟଶଙ୍କର କୁମାରିଲ୍ଲ ଭଟ୍ଟଙ୍କ ସହିତ ଶାସ୍ତ୍ର ତର୍କ କରିବା ନିମନ୍ତେ ବାହାରିଲେ । ସେ ଅନୁସନ୍ଧାନରୁ ଜାଣିଲେ ଯେ କୁମାରିଲ୍ଲ ସମଗ୍ର ଭାରତବର୍ଷ ଜୟ କରି ପ୍ରୟାଗରେ ଅବସ୍ଥାନ କରୁଛନ୍ତି । ତେଣୁ ସେ ଶିଷ୍ୟମାନଙ୍କ ସହ ସେଠାକୁ ଯାତ୍ରା କଲେ । ପ୍ରୟାଗରେ ଉପସ୍ଥିତ ହୋଇ ଶଙ୍କର ଶୁଣିବାକୁ ପାଇଲେ ଯେ ମହାତ୍ମା ଭଟ୍ଟପାଦ ଗୁରୁବଧ ପାପର ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ଆସ୍ତିକ୍ୟ ବୁଦ୍ଧିରେ ପ୍ରଣୋଦିତ ହୋଇ ତୁଷାନଳରେ ପ୍ରବେଶ କରୁଛନ୍ତି । ଅନନ୍ତର ଶଙ୍କର ସେଠାକୁ ଯାତ୍ରା କଲେ ଓ ଯାହା ଦେଖିଲେ ସେଥିରେ ତାଙ୍କର ଅନ୍ତର ବିଗଳିତ ହୋଇଉଠିଲା । କୁମାରିଲ୍ଲ ଭଟ୍ଟପାଦ ଏକ ବିଶାଳତୁଷସ୍ତୁପ ଉପରେ ବସିଥିବାବେଳେ ତଳେ ଅଗ୍ନି ପ୍ରଜ୍ୱଳିତ । ତାଙ୍କର ଶିଷ୍ୟବର୍ଗ ଅଶ୍ରୁପୂର୍ଣ୍ଣ ନୟନରେ ଦଣ୍ଡାୟମାନ । ଶଙ୍କର ଶିଷ୍ୟମାନଙ୍କ ସହ କୁମାରିଲ୍ଲଙ୍କ ନିକଟକୁ ଗଲେ ଓ ଶେଷ ସମୟରେ କୁମାରିଲ୍ଲଙ୍କୁ ଦର୍ଶନ ଦେଲେ ।

ତୁଷାନଳରେ ବସି ମଧ୍ୟ କୁମାରିଲ୍ଲ ଶଙ୍କରଙ୍କର ଯଥାମାନ୍ୟ କଲେ । ତହୁଁ ଶଙ୍କର କହିଲେ ମହାତ୍ମନ ମୋ ଦ୍ୱାରା ପ୍ରସ୍ଥାନତ୍ରୟର ଯେଉଁ ଭାଷ୍ୟ ରଚନା ହୋଇଛି ତାହାକୁ ଆପଣଙ୍କୁ ପରୀକ୍ଷା କରାଇବା ଓ ତାହାକୁ ଗ୍ରହଣ କରାଇବା ନିମନ୍ତେ ଆପଣଙ୍କ ନିକଟକୁ ଆସିଥିଲି । ସମୟ ଅତି ଅଳ୍ପଥିବାରୁ କୁମାରିଲ୍ଲ ସେହି ଭାଷ୍ୟଗୁଡିକ ଦେଖିଲେ ଓ ସେଥିରେ ସନ୍ତୋଷ ପ୍ରକାଶ କଲେ । ଆଚାର୍ଯ୍ୟ ଶଙ୍କର କହିଲେ ଆପଣ ବିଚାର କରନ୍ତୁ ଅଦ୍ୱୈତ ମତ ସତ୍ୟ କି ନୁହେଁ । ପରୀକ୍ଷା କରି ସତ୍ୟ ବୋଲି ଜାଣିଲେ ତାକୁ ଗ୍ରହଣ କରନ୍ତୁ । ଏହାଶୁଣି ଭଟ୍ଟପାଦ କହିଲେ ହେ ମହାତ୍ମନ- ମୁଁ ବୌଦ୍ଧମତ ଜାଣିନଥିବାରୁ ବୌଦ୍ଧମାନଙ୍କୁ ପରାସ୍ତ କରିପାରିଲିନାହିଁ, ତେଣୁ ବୌଦ୍ଧ ଶରଣାପନ୍ନ ହୋଇ ସେମାନଙ୍କ ଶିଷ୍ୟତ୍ୱ ଗ୍ରହଣ କରି ସେମାନଙ୍କଠାରୁ ବିଦ୍ୟାଶିକ୍ଷା କଲି । ବୌଦ୍ଧଗୁରୁଙ୍କ ଠାରୁ ଶାସ୍ତ୍ର ଶିକ୍ଷାକରି ସେହି ବୌଦ୍ଧ କୁଳର ଧ୍ୱଂସ ସାଧନ କରିଥିବା ହେତୁ ମୋର ଗୁରୁତର ପାପ ହୋଇଛି ତା ଛଡା ମହର୍ଷି ଜୈମିନୀଙ୍କର ମୀମାଂଶା ଦର୍ଶନରେ ନିବିଷ୍ଟ ହୋଇ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣ କରିବା ଦ୍ୱାରା ମୋର ଘୋର ପାପ ହୋଇଛି । ତେଣୁ ମୁଁ ବ୍ରତର ଅନୁଷ୍ଠାନକରି ଦେହତ୍ୟାଗ କରୁଛି । ସେଥିରୁ ନିବୃତ୍ତ ହେବା ମୋର ଆଉ ଅଭିପ୍ରାୟ ନାହିଁ । ଆପଣ ମୋ ଦ୍ୱାରା ଯେଉଁ କାର୍ଯ୍ୟ କରିବାକୁ ଚାହୁଁଛନ୍ତି ତାହା ମୋ ଶିଷ୍ୟ ମଣ୍ଡନ ମିଶ୍ରଙ୍କ ଦ୍ୱାରା କରାଇପାରିବେ । ଆପଣଙ୍କ ବିଚାରରେ ଯଦି ତାଙ୍କୁ ପରାସ୍ତ କରିପାରିବେ ତେବେ ମୋତେ ଜୟ କରୁଛନ୍ତି ବୋଲି ଜାଣିବେ । ସେ ବ୍ରାହ୍ମଣମାନଙ୍କ ରାଜା ଓ ଯାବତୀୟ ବୈଦିକ ଯାଗ ଯଜ୍ଞରେ ନିପୁଣ । ବର୍ତ୍ତମାନ ସେ ନର୍ମଦା ତୀରସ୍ଥ ମାହେଷ୍ମତୀ ନଗରରେ ବାସ କରୁଛନ୍ତି । ଆପଣ ତାଙ୍କ ପତ୍ନୀ ବିଦ୍ୟାଭାରତୀଙ୍କୁ ମଧ୍ୟସ୍ଥ ଭାବରେ ଗ୍ରହଣ କରିବେ । ବିଦ୍ୟାରେ ସେ ସାକ୍ଷାତ୍ ସରସ୍ୱତୀ । ମୋର ଶରୀରକୁ ଅଗ୍ନି ତାପ ସ୍ପର୍ଶ କଲାଣି ତେଣୁ ବର୍ତ୍ତମାନ ଅନ୍ୟ ଚିନ୍ତା ନିଷେଧ । ତେଣୁ ଆପଣ ମୋତେ ବ୍ରହ୍ମନାମ ସ୍ମରଣ କରାନ୍ତୁ ଯେପରି ଦେହତ୍ୟାଗ ସୁଖମୟ ହୋଇପାରିବ । ଏହାପରେ ଶଙ୍କର ତାଙ୍କୁ ବ୍ରହ୍ମନାମ ପ୍ରଦାନ କଲେ ଓ ଶଙ୍କରଙ୍କ ଦିବ୍ୟମୂର୍ତ୍ତି ଦର୍ଶନ କରୁକରୁ କୁମାରିଲ୍ଲ ଭଟ୍ଟ ତୁଷାନଳରେ ଦେହରକ୍ଷା କଲେ । ଏହାପରେ ଶଙ୍କର ଶିଷ୍ୟମଣ୍ଡଳୀ ସହିତ ମଣ୍ଡନ ମିଶ୍ରଙ୍କୁ ସାକ୍ଷାତ କରିବା ନିମନ୍ତେ ମାହେଷ୍ମତୀ ପୁର ଦିଗରେ ଗମନକଲେ ।

## ମଣ୍ଡନମିଶ୍ରଙ୍କ ପରିଚୟ:-

ମଣ୍ଡନମିଶ୍ର ବିହାର ପ୍ରଦେଶର ରାଜଗୃହ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ହିମମିଶ୍ର । ମଣ୍ଡନ ମେଧାବୀ ଓ ବହୁଶାସ୍ତ୍ରଦର୍ଶୀ ଥିଲେ । ସେହି ସମୟରେ ପୂର୍ବ ମୀମାଂସା ଦର୍ଶନ ସମାଜରେ ପ୍ରତିଷ୍ଠା ଲାଭ କରିଥିଲା ଓ ବହୁପଣ୍ଡିତ

ଏହାର ଅନୁଗାମୀ ଥିଲେ । ପୂର୍ବମୀମାଂଶା ମତ ଅନୁସାରେ ସମସ୍ତ ବେଦର ଲକ୍ଷ୍ୟ ହେଲା ଧର୍ମୀୟ କ୍ରିୟାନୁଷ୍ଠାନ ବା ଧର୍ମ ସମ୍ବନ୍ଧୀୟ କର୍ତ୍ତବ୍ୟ । ଆତ୍ମା କେତେବେଳେ ଅଦ୍ୱୈତ ସତ୍ତା ନୁହେଁ । ଆତ୍ମା= ବ୍ରହ୍ମ । ମଣ୍ଡନ ମିଶ୍ର ଏହି ପୃଷ୍ଠଭୂମିରେ ମୀମାଂସକ ଥିଲେ ଓ ବେଦାନ୍ତଶାସ୍ତ୍ରରେ ତାଙ୍କର ଅସାମାନ୍ୟ ପ୍ରବେଶ ଥିଲା । ମୋକ୍ଷର ଅଧିକାରୀ ହେବା ନିମନ୍ତେ ମୀମାଂସାରେ କର୍ମ ଉପରେ ଓ ବେଦାନ୍ତରେ ଜ୍ଞାନ ଉପରେ ଗୁରୁତ୍ୱ ଦିଆଯାଏ । ମଣ୍ଡନଙ୍କ ମତରେ ବେଦର ଅନୁଶୀଳନ କରି ନିବୃତ୍ତି ମାର୍ଗର ପଥିକ ହୋଇ ଯେ କୌଣସି ଗୃହସ୍ଥ ଶାସ୍ତ୍ର ବିହୀତ କର୍ମାନୁଷ୍ଠାନ କରି ମୋକ୍ଷର ଅଧିକାରୀ ହୋଇପାରିବ । ଭଗବାନ ହେଉଛନ୍ତି ସର୍ବଶକ୍ତିମାନ ଓ ସର୍ବଦର୍ଶୀ ବୋଲି ଭାବି ତାଙ୍କ ଅସ୍ତିତ୍ୱକୁ ବିନା ପ୍ରମାଣରେ ଗ୍ରହଣ କରିବାର କୌଣସି ଆବଶ୍ୟକତା ନାହିଁ ।

ଭଗବତ୍‌ପାଦ ଶଙ୍କର କୌଣସି ମତବାଦର ଧ୍ୱଂସ ସାଧନ ନିମନ୍ତେ ଜନ୍ମ ନେଇନଥିଲେ । ସେ ଅପୂର୍ଣ୍ଣତାକୁ ପୂର୍ଣ୍ଣ କରିବା ନିମନ୍ତେ ପୃଥିବୀ ପୃଷ୍ଠରେ ଦେହଧାରଣ କରିଥିଲେ । ସେ ଯେଉଁ ଶିକ୍ଷାଦେଲେ ତାହାକୁ ବିଭିନ୍ନ ମତବାଦର ପ୍ରତିଦ୍ୱନ୍ଦ୍ୱୀ ଭାବିବା ଉଚିତ୍ ନୁହେଁ । ଗୁରୁ ଗୌଡପାଦ ଥିଲେ ଗୋବିନ୍ଦପାଦଙ୍କ ଗୁରୁ । ଗୋବିନ୍ଦପାଦ ଥିଲେ ଶଙ୍କରଙ୍କ ଗୁରୁ । ଗୌଡପାଦ ପ୍ରଚାର କରି ସାରିଥିଲେ ଯେ ଅଦୈତ ଦର୍ଶନ ଓ ଦୈତବାଦ ମଧ୍ୟରେ କୌଣସି ବିରୋଧ ନାହିଁ । ଜଣେ ବ୍ୟକ୍ତିର ତାର ଅଙ୍ଗପ୍ରତଙ୍ଗ ସହିତ ଯେପରି ମୋଟେ କଳହ ହୁଏନା ସେପରି ଅନ୍ୟାନ୍ୟ ଦର୍ଶନ ସହିତ ଅଦୈତବାଦର କୌଣସି କଳହ ନାହିଁ । ଶଙ୍କର ସେହି ଐକ୍ୟଭାବ ଓ ପରିପୂର୍ଣ୍ଣତାକୁ ଉପଲବ୍ଧି କରିଥିଲେ । ଶଙ୍କର ବେଦର ମୌଳିକ ଅର୍ଥକୁ ହିଁ ଗ୍ରହଣ କରିଥିଲେ ଓ ବେଦର ସତ୍ୟ ବ୍ରହ୍ମ ଏକ ଏହି ସିଦ୍ଧାନ୍ତକୁ ଜନମାନସରେ ପ୍ରତିଷ୍ଠା କରିବା ପାଇଁ ତତ୍ପର ଥିଲେ । ତତ୍‌କାଳୀନ ବୌଦ୍ଧଧର୍ମ ପୀଡିତ ଦେଶ ଈଶ୍ୱରଙ୍କୁ ଅସ୍ୱୀକାର କରିବା ସଂଗେ ସଂଗେ ଯାଗ ଯଜ୍ଞ ଓ ପ୍ରତିମା ପୂଜାକୁ ଦୂରେଇଦେଇ ଏକ ଅନ୍ଧକାରମୟ ପରିବେଶ ସୃଷ୍ଟି କରିଥିଲେ ଯାହାକୁ ଭଗବଦ୍ ପାଦ ଶଙ୍କର ଦୂରକରିବା ପାଇଁ ଚେଷ୍ଟିତ ଥିଲେ ।

ମଣ୍ଡନ ମିଶ୍ର ସର୍ବଶାସ୍ତ୍ର ବିଷାରଦ ଥିଲେ । ବ୍ରାହ୍ମଣ ମାନଙ୍କର ସେ ଥିଲେ ରାଜାସଦୃଶ । ଆଦର୍ଶ ଗୃହସ୍ଥ ଜୀବନ ଯାପନ କରୁଥିଲେ ସୁଦ୍ଧା କର୍ମକାଣ୍ଡରେ ଥିଲେ ଅତ୍ୟନ୍ତ ପ୍ରବୀଣ । କୁମାରିଲ୍ଲ ଭଟ୍ଟଙ୍କ ପ୍ରଧାନଶିଷ୍ୟ ଓ ମୀମାଂସା ଦର୍ଶନର ଜଣେ ପ୍ରବକ୍ତା । ମଣ୍ଡନଙ୍କର ଜନ୍ମସ୍ଥାନ ଯଦିଓ ରାଜଗୃହ ସେ ବିବାହ ପରେ ଚେଦି ଦେଶର ରାଜଧାନୀ ମାହେଷ୍ମତୀ ନଗରରେ ବସତି ସ୍ଥାପନ କରି ସେଠାରେ ବସବାସ କରୁଥିଲେ ।

ବିଦୁଷୀ ଉଭୟଭାରତୀ ମଣ୍ଡନମିଶ୍ରଙ୍କର ଧର୍ମପତ୍ନୀ । ବିହାର ରାଜ୍ୟର ଶୋଣନଦୀ ତୀରରେ ଉଭୟ ଭାରତୀଙ୍କ ପିତା ବିଷ୍ଣୁମିଶ୍ର ବାସ କରୁଥିଲେ । ଉଭୟ ଭାରତୀ ପିଲାଦିନରୁ ଷଡଦର୍ଶନ, ବ୍ୟାକରଣ, କାବ୍ୟ,ଅଳଙ୍କାର, ଜ୍ୟୋତିଷ ତଥା ଅନ୍ୟାନ୍ୟ ଶାସ୍ତ୍ର ଅଧ୍ୟୟନ କରି ପ୍ରବୀଣା ହୋଇ ଉଠିଥିଲେ । ମଣ୍ଡନ ବିଦୁଷୀ ଉଭୟ ଭାରତୀଙ୍କ ବିଦ୍‌ବତ୍ତା ଶ୍ରବଣ କରି ତାଙ୍କୁ ବିବାହ କରିବାକୁ ଇଛା ପ୍ରକାଶ କରନ୍ତେ ପିତା ହିମମିଶ୍ର ଏହାକୁ ସ୍ୱୀକାର କରି ବିଷ୍ଣୁ ମିଶ୍ରଙ୍କ ନିକଟକୁ ମଧ୍ୟସ୍ଥ ପଠାଇ ଏ ଶୁଭକାର୍ଯ୍ୟ ସମାପନ କରିଥିଲେ । ପିତୃଗୃହରେ ତାଙ୍କ ନାମ ଥିଲା ଭାରତୀ । ସାଧାରଣତଃ ଝିଅର ପିତୃପ୍ରଦତ୍ତ ନାମ ଶ୍ୱଶୁରାଳୟରେ ବଦଳିଯାଏ କିନ୍ତୁ ଭାରତୀଙ୍କ ପାଣ୍ଡିତ୍ୟ ଓ ବିଦ୍‌ବତ୍ତାକୁ ଦେଖି ଶାଶୁଘର ଲୋକେ ମଧ ତାଙ୍କୁ ସରସ୍ୱତୀଙ୍କର ସାକ୍ଷତ ରୂପ ବୋଲି ଅନୁଭବ କରି ସେହି ଭାରତୀୟ ନାମରେ ସମ୍ବୋଧନ କଲେ । ଯେହେତୁ ଉଭୟ ପିତ୍ରାଳୟ ଓ ଶ୍ୱଶୁରାଳୟରେ ଏକ ନାମ ରହିଥିଲା ତେଣୁ ତାଙ୍କର ନାମ ହୋଇଥିଲା ଉଭୟ ଭାରତୀ । କେହି କେହି ଆଲୋଚକ ତାଙ୍କୁ ସରସ୍ୱତୀ ବୋଲି କହନ୍ତି । ଯଦ୍ୟପି ମାଧବାଚାର୍ଯ୍ୟ ତାଙ୍କ ନାମ ଉଭୟ ଭାରତୀ କହିଛନ୍ତି ଆନନ୍ଦଗିରୀ ତାଙ୍କ ନାମ ସରସବାଣୀ ବୋଲି ଲେଖିଛନ୍ତି । କିନ୍ତୁ ଏହା ତାଙ୍କର ବିଶେଷଣ ଥିଲା । ତାଙ୍କର ନାମ ଉଭୟ ଭାରତୀ ଭାବରେ ପ୍ରସିଦ୍ଧି ଥିଲା ।

ଭଗବଦ୍‌ପାଦ ଶଙ୍କର କୁମାରିଲ୍ଲ ଭଟ୍ଟଙ୍କ ଆଦେଶ ଅନୁସାରେ ଏହି ଉଭୟଭାରତୀଙ୍କୁ ମଣ୍ଡନ ଶଙ୍କର ଶାସ୍ତ୍ରାର୍ଥରେ ବିଚାରପତି ବା ନିର୍ଣ୍ଣାୟକ ପଦରେ ବସାଇଥିଲେ ।

ମଣ୍ଡନ ମିଶ୍ରଙ୍କ ସହିତ ଶାସ୍ତ୍ରାର୍ଥ କରିବା ନିମନ୍ତେ ଭଗବଦପାଦ ଶଙ୍କର ଶିଷ୍ୟମାନଙ୍କ ସହ ମାହେଷ୍ମତୀ ନଗର ଅଭିମୁଖେ ଚାଲିଲେ । ମାହେଷ୍ମତୀ ନଗର ମଧ୍ୟଭାରତ ଅନ୍ତର୍ଗତ ବିନ୍ଧ୍ୟପର୍ବତ ଓ ନର୍ମଦାର ମଧ୍ୟବର୍ତ୍ତୀ ସ୍ଥାନ । ଏ ସହର ବର୍ତ୍ତମାନର ଜବଲପୁର ନାମରେ ବିଦିତ । ନଗର ମଧ୍ୟରେ ପ୍ରବେଶ କରୁ କରୁ କେତେଜଣ ମହିଳାଙ୍କୁ ଜଳ ଆଣିବା ନିମନ୍ତେ କାଖରେ କଳସୀ ଧରି ନର୍ମଦା ନଦୀ ଆଡକୁ ଯିବାର ଦେଖିଲେ । ଶଙ୍କର କେତେଜଣ ମହିଳାଙ୍କୁ ପ୍ରଶ୍ନକଲେ ମା ମଣ୍ଡନମିଶ୍ରଙ୍କ ଘର କେଉଁଠି ଆପଣମାନେ ଜାଣନ୍ତି କି ?ସେମାନଙ୍କ ମଧ୍ୟରୁ ଜଣେ ଉତ୍ତର ଦେଲେ ଏ ନଗରରେ କଣ ମଣ୍ଡନ ମିଶ୍ରଙ୍କ ଗୃହ ଖୋଜିବାକୁ ପଡିବ ?

ସମସ୍ତ ବିଦ୍ୱତ୍‌ ମଣ୍ଡଳୀର ମୁକୁଟ ଦ୍ୱୈତ ଅଦ୍ୱୈତ ସମସ୍ତ ମତାବଲମ୍ବୀଙ୍କ ନେତା, ପଣ୍ଡିତ ସମାଜର ମଣ୍ଡନଭୂତ ଆଚାର୍ଯ୍ୟ ମଣ୍ଡନ ମିଶ୍ରଙ୍କ ଗୃହ କିଏ ବା ଜାଣିପାରିବ ନାହିଁ ? ଆପଣମାନେ ବୋଧେ ଦୂରବିଦେଶୀ ତେଣୁ କରି ପଚାରୁଛନ୍ତି-

ସ୍ୱତଃ ପ୍ରମାଣଂ ପରତଃ ପ୍ରମାଣଂ କୀରାଙ୍ଗନା ଯତ୍ର ଗିରଂ ଗିରନ୍ତି

ଦ୍ୱାରସ୍ଥ ନୀଡାନ୍ତର ସନ୍ନିରୁଦ୍ଧା ଜାନୀହି ତନ୍ମଣ୍ଡନ ପଣ୍ଡିତୌକଃ ॥

ଅର୍ଥାତ୍ ଯେଉଁ ଘରର ଦ୍ୱାର ଦେଶରେ ପଞ୍ଜୁରୀରେ ଆବଦ୍ଧ ଶୁକ-ସାରୀ ବେଦର ସ୍ୱତଃ ପ୍ରାମାଣ୍ୟ ଏବଂ ପରତଃ ପ୍ରାମାଣ୍ୟ ବିଷୟରେ ବିଚାର କରୁଥିବେ, କର୍ମ ଫଳଦାତା ଅଟେ କିମ୍ବା ଈଶ୍ୱର ଫଳଦାତା ଅଟନ୍ତି, ଜଗତ ନିତ୍ୟ ନା ଅନିତ୍ୟ- ଏ ସମସ୍ତ ବିଷୟରେ ପରସ୍ପର ମଧ୍ୟରେ ବାର୍ତ୍ତାଳାପ କରୁଥିବେ, ତାକୁ ହିଁ ଆଚାର୍ଯ୍ୟ ମଣ୍ଡନ ମିଶ୍ରଙ୍କ ନିବାସ ବୋଲି ଜାଣିବେ । ଏତଦ୍ ବ୍ୟତୀତ ଯେଉଁ ଗୃହ ପାର୍ଶ୍ୱରେ ଯଜ୍ଞଭସ୍ମ ପର୍ବତାକାରରେ ସ୍ତୁପୀକୃତ ହୋଇ ଜମା ହୋଇଥିବ ତାହା ମଣ୍ଡନ ଭବନ ବୋଲି ଅବଶ୍ୟ ଜାଣିବେ ।

ଶଙ୍କରଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସ୍ତବଧ ହୋଇ କ୍ଷଣେ ଠିଆ ହୋଇଗଲେ । ପଦ୍ମପାଦ ମୁହଁ ଖୋଲି କହିଲେ ଗୁରୁଦେବ ଆଗକୁ ଯିବା ହେଉନ୍ତୁ । ତହୁଁ ଭଗବତ୍ପାଦ ଆଗକୁ ବଢିଲେ । କିଛି ବାଟ ଯିବାପରେ ମଣ୍ଡନଙ୍କର ଗୃହ ନିକଟରେ ପହଞ୍ଚିଲେ ଓ ଗୃହବନ୍ଦଥିବାର ଦେଖିଲେ । ଗୃହସାମ୍ନାରେ ଦୁଇ ଦ୍ୱାରପାଳ । ପଦ୍ମପାଦ ଏହି ଦ୍ୱାରପାଳଙ୍କୁ କହିଲେ ଆମେ ମଣ୍ଡନମିଶ୍ରଙ୍କ ସହିତ ସାକ୍ଷାତ କରିବାର ଅଭିପ୍ରାୟ ନେଇ ଏଠାକୁ ଆସିଛୁ । ତାଙ୍କୁ ଖବର ଦିଅ । ଦ୍ୱାରପାଳ ମାନେ କହିଲେ ପଣ୍ଡିତ ମହାଶୟ ପିତୃଶ୍ରାଦ୍ଧ କାର୍ଯ୍ୟରେ ନିୟୋଜିତ ଅଛନ୍ତି, ବର୍ତ୍ତମାନ ସାକ୍ଷାତ ହୋଇପାରିବ ନାହିଁ । କିଛି ସମୟପରେ ଦ୍ୱିତୀୟ ଥର ସମ୍ବାଦ ପଣ୍ଡିତଙ୍କ ନିକଟକୁ ପଠାଗଲା । ପଣ୍ଡିତେ ନିର୍ଦ୍ଦେଶଦେଲେ ବର୍ତ୍ତମାନ ସେମାନଙ୍କ ସହିତ ସାକ୍ଷାତ ହୋଇପାରିବ ନାହିଁ । ସେମାନଙ୍କର ବାହାରେ ବସିବା ନିମନ୍ତେ ଆସନ ବ୍ୟବସ୍ଥା କର । ଏହିପରି ତିନିଥର ଭିତରକୁ ଆଚାର୍ଯ୍ୟ ସମ୍ବାଦ ପ୍ରେରଣ କଲେ ମାତ୍ର ପଣ୍ଡିତ ବର୍ତ୍ତମାନ ଦେଖା ହୋଇପାରିବ ନାହିଁ ବୋଲି ମନା କରିଦେଲେ । ଏଠାରେ କୁହାଯାଇପାରେ ଯେ ପିତୃଶ୍ରାଦ୍ଧ ସମୟରେ କୌଣସି ଗୃହତ୍ୟାଗୀ ସନ୍ନ୍ୟାସୀଙ୍କୁ ସେଠାରେ ପହଞ୍ଚିବା ଶାସ୍ତ୍ର ବିରୁଦ୍ଧ ବୋଲି ବିବେଚନା କରାଯାଏ । ଶଙ୍କର ଚାହୁଁଥିଲେ ମଣ୍ଡନମିଶ୍ର ତାଙ୍କୁ ଅନ୍ତତଃ ସାକ୍ଷାତ କରି ଭିତରକୁ ଡାକି ନିଅନ୍ତୁ । ମାତ୍ର ତାହା ହେଲା ନାହିଁ । ତିନିଥର ପରେ ଭଗବାନ ଶଙ୍କର ଶିଷ୍ୟମାନଙ୍କୁ ବାହାରେ ଠିଆହେବାକୁ ନିର୍ଦ୍ଦେଶ ଦେଇ ଶୂନ୍ୟମାର୍ଗରେ ପ୍ରାଚୀର ଅତିକ୍ରମ କରି ଗୃହ ଉପରେ ଯାଇ ଅଗଣାରେ ଉପସ୍ଥିତ ହୋଇଗଲେ । ଏ ଅଦଭୁତ ବ୍ୟାପାର ଦେଖି ଦ୍ୱାରପାଳମାନେ ସ୍ତବଧ ହୋଇ କୌଣସି ପ୍ରକାରେ ବାଧା ଦେଲେ ନାହିଁ । ଶଙ୍କର ଅଗଣାରେ ପ୍ରବେଶ କରି ଦେଖିଲେ ସେଠାରେ ମହାମୁନୀ ବ୍ୟାସଦେବ ଓ ଗୁରୁ

ଜୈମିନୀ ଉପସ୍ଥିତ ଅଛନ୍ତି । ଶଙ୍କରଙ୍କ ପ୍ରବେଶ ଦେଖି ମଣ୍ଡନମିଶ୍ର ଅତ୍ୟନ୍ତ କ୍ରୁଦ୍ଧ ହେଲେ ମାତ୍ର ଶଙ୍କର ମୁନୀଦ୍ୱୟ (ବ୍ୟାସ ଓ ଜୈମିନୀ)ଙ୍କୁ ପ୍ରଣାମ କରନ୍ତେ ଯେବେ ମୁନୀଦ୍ୱୟ ତାଙ୍କର ଯଥୋଚିତ ସମ୍ମାନ କଲେ ତତ୍‌ପରେ ପଣ୍ଡିତେ ଟିକେ ଶାନ୍ତ ପଡିଗଲେ । ତେବେ ମଣ୍ଡନ ତାଚ୍ଛଲ୍ୟ କରି ପଚାରିଲେ-

ମଣ୍ଡନ- ଆହେ ମୁଣ୍ଡି କେଉଁଠାରୁ ? ଅର୍ଥାତ୍ ହେ ମୁଣ୍ଡିନ ମସ୍ତକ କେଉଁଠାରୁ ଆସିଲ ?

ଶଙ୍କର- ଗଳଦେଶରୁ ଅର୍ଥାତ୍ ମୁଁ ଗଳଦେଶରୁ ମସ୍ତକ ମୁଣ୍ଡନ କରିଅଛି ।

ମଣ୍ଡନ- ଦ୍ୱାରବନ୍ଦ ଥିବାବେଳେ କେଉଁ ମାର୍ଗରେ ଆସିଲେ ବୋଲି ପ୍ରଶ୍ନ କରୁଛି ।

ଶଙ୍କର- କଣ ଆପଣଙ୍କୁ ମୋର ରାସ୍ତା କିଛି ପଚାରିଲା କି ? ଶଙ୍କର ବକ୍ରୋକ୍ତି କରି କହିଲେ

ମଣ୍ଡନ- ତୁମର ଶିର ଓ ମୁଣ୍ଡ ରାଗି ଯାଇ କହିଲେ

ଶଙ୍କର- ସେହିପରି ତ ଅଛି ଯେପରି ହେବା ଉଚିତ୍ ଯେପରି ପୂର୍ବେ ଥିଲା ପରିହାସ ଛଳରେ କହିଲେ ।

ମଣ୍ଡନ- କିଶୁ ସୁରା ପିତା ? ଆପଣ କଣ ମଦ ପିଇଛନ୍ତି ?

ଶଙ୍କର- ସୁରା କିମୁ ପୀତା ? କଣ ସୁରା ପୀତବର୍ଣ୍ଣର ହୋଇଥାଏ ? ଏହା ତ ଶୁଭ୍ର ବର୍ଣ୍ଣ

ଏହିପରି ଦୁଇ ବିଦ୍ୱାନ ମହାପୁରୁଷଙ୍କ ମଧ୍ୟରେ ପ୍ରଶ୍ନ ଓ ପ୍ରତିପ୍ରଶ୍ନ ଚାଲିଥିଲା । ଯାହାର ଉତ୍ତର ଦୁଇଜଣ ଯାକ ସାକ୍ଷାତ ନଦେଇ ବକ୍ରୋକ୍ତି ମାଧ୍ୟମରେ ଦେଉଥିଲେ । ବ୍ୟାସଦେବ ଓ ଜୈମିନୀମୁନୀ ଦୁହେଁ ଗୁରୁଶିଷ୍ୟ ଏ ପ୍ରଶ୍ନୋତ୍ତରକୁ ଉପଭୋଗ କରୁଥିଲେ ।

ମଣ୍ଡନ- ତୁମେ ତେବେ ପ୍ରାୟ ସୁରାପାନ କର । ନଚେତ ତାର ରଂଗ ଯାଣିଥାନ୍ତ କିପରି ?

ଶଙ୍କର- ମୁଁ ସୁରାର ବର୍ଣ୍ଣ ଜାଣେ ମାତ୍ର ଯେ ସୁରାର ବର୍ଣ୍ଣଜାଣେ ସେ ପିଏ ବୋଲିତ ଆପଣଙ୍କ ଠାରୁ ଶୁଣୁଛି ତେଣୁ ଆପଣ ବୋଧେ ପିଅନ୍ତି ।

ମଣ୍ଡନ- ହେ ଆଗନ୍ତୁକ, ଗର୍ଦ୍ଦଭ ମାନେ ଯାହାକୁ ବହନ କରିବାକୁ କାତର ତୁମେ ସେହି ପନ୍ଥା ଓଶିଷ୍ୟ ବହନ କରିଚାଲିଛ । ଏହା ଗଧର କନ୍ଥା ବୋହିବା ସଦୃଶ । ମାତ୍ର ଶିଖା ଓ ଯଜ୍ଞୋପବୀତ କଣ ଏତେ କଷଣ ଦେଲା ଯେ ତାହାକୁ ତ୍ୟାଗ କରିଦେଇଛ ?

ଶଙ୍କର- ରମଣୀ ଯାହାକୁ ତିରସ୍କାର କରେ, ସେ ବ୍ୟକ୍ତି ଯଦି ପୁନର୍ବାର ସେହି ରମଣୀ ପ୍ରତି ଅନୁରାଗ ପ୍ରକାଶ କରେ ତେବେ ତାକୁ ଗର୍ଦ୍ଦଭ କୁହାଯାଏ । ସେପରି ଗର୍ଦ୍ଦଭମାନେ ଯାହା ବହନ କରିବାକୁ କ୍ଳେଶକର ମନେକରନ୍ତି ମୁଁ ସେହି କନ୍ଥାର ଭାର ବହନ କରି ଗର୍ଦ୍ଦଭ ମାନଙ୍କର କ୍ଳେଶ ଦୂର କରୁଛି । ଏଥିରେ ଦୋଷ ରହିଲା କେଉଁଠି ? ଯେଉଁ ଦିନ ସଂସାର ବୈରାଗ୍ୟ ଉତ୍ପନ୍ନ ହେବ  ସେହିଦିନ ସନ୍ୟାସ ଅବଲମ୍ବନ କରିବେ । ତ୍ୟାଗ ଦ୍ୱାରା ମୁକ୍ତି ମିଳେ ତେଣୁ ସନ୍ୟାସୀ ପରିବ୍ରାଜକ, ବର୍ଣ୍ଣଭେଦ ଶୂନ୍ୟ, ବସ୍ତ୍ରବିହୀନ ଓ ମୁଣ୍ଡିତ ମସ୍ତକ ହେବେ । ଦାରପରିଗ୍ରହ କରିବେନାହିଁ ।  ତେଣୁ ଶିଖା ଓ  ଯଜ୍ଞୋପବୀତ ରହିବ କିପରି ?

ମଣ୍ଡନ- ତୁମେ ପତ୍ନୀପାଳନରେ ଅସମର୍ଥ ହୋଇଅଛ । ତେଣୁ ପତ୍ନୀତ୍ୟାଗ ପୂର୍ବକ ଶିଷ୍ୟ ଓ ପୋଥି ବହନ କରି ଆନନ୍ଦ ଲାଭ କରୁଅଛ ।

ଶଙ୍କର- ତୁମେ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଗୁରୁ ସେବାରେ ଅକ୍ଷମତା ପ୍ରକାଶକରି ଗୁରୁଗୃହରୁ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଏଠାରେ ଆଡମ୍ବର ପ୍ରଦର୍ଶନ କରୁଅଛ । ବର୍ତ୍ତମାନ ବୋଧେ ପତ୍ନୀ ସେବାରେ କେବଳ ଅନୁରକ୍ତ ରହିଅଛ ।

ମଣ୍ଡନ- ଆହେ ଅଗନ୍ତୁକ, ତୁମେ ନାରୀ ଗର୍ଭରେ  ଗର୍ଭସ୍ଥ ହୋଇ ସେହି ନାରୀ ଦ୍ୱାରା ଲାଳିତ ପାଳିତ ହୋଇ ସେମାନଙ୍କର ଉପକାର ନକରି ସେମାନଙ୍କୁ ନିନ୍ଦା କରୁଛ କିପରି ?

ଶଙ୍କର- ମୁଁ ମୂର୍ଖ ହୋଇପାରେ ମାତ୍ର ତୁମେ ମାତୃଜାତି ଗର୍ଭରୁ ଉତ୍ପନ୍ନ ହୋଇ ଯେଉଁ ମାନଙ୍କର ଦୁଗଧ ପାନକରି ବଳିଷ୍ଠ ହେଲ ସେହି ମାତୃଜାତି ପ୍ରତି ପଶୁତୁଲ୍ୟ ବ୍ୟବହାର କରିବା କଣ ଉଚିତ୍ ଅଟେ ?

ମଣ୍ଡନ- ଗୃହସ୍ଥ ମାନେ ପଶୁସତ୍ୟ ମାତ୍ର ଯେ ତ୍ରିବିଧ ଅଗ୍ନି ପରିତ୍ୟାଗ କରି ସନ୍ୟାସଗ୍ରହଣ କରେ ସେ ଇନ୍ଦ୍ରହତ୍ୟାକାରୀ । ତେଣୁ ତୁମେ ହତ୍ୟାଦୋଷରେ ଦୋଷୀ ।

ଶଙ୍କର- ଯେତେପାପ ଅଛି ତନ୍ମଧ୍ୟରେ ଆତ୍ମହତ୍ୟା ସବୁଠାରୁ ବଡ ପାପ ଯେଉଁମାନେ ବ୍ରହ୍ମବିଦ୍ ନହୋଇ ସେ ଦିଗରେ ଗମନ କରିବାରେ ମନୋନିବେଶ ନକରନ୍ତି ସେମାନେ ଆତ୍ମଘାତୀ - ମରଣ ପରେ ନରକ ଗାମୀ ହୁଅନ୍ତି ।

ମଣ୍ଡନ- ତୁମେ ଦ୍ୱାରପାଳମାନଙ୍କୁ ପ୍ରବଞ୍ଚିତ କରି ଚୋର ପରି ଏଠାକୁ ଆସିଛ ଏହା କଣ ଅପରାଧ ନୁହେଁ ?

ଶଙ୍କର- ମୁଁ ଢେର ପରି ଆସିଛି ସତ ତୁମେ ଭିକ୍ଷୁମାନଙ୍କୁ ଆହାର ନଦେଇ ଢେର ପରି ବିଷୟ ଭୋଗ କରୁଛ । ଏହା କଣ ତୁମର ପୂର୍ଣ୍ୟଫଳ ?

ମଣ୍ଡନ- ତୁମେ ସୁସ୍ୱାଦୁ ଭୋଜନ ଲୋଭରେ ସନ୍ୟାସୀର ବେଶ ଧାରଣ କରିଛ ତେଣୁ ତୁମ ଭଳି ମେଧାହୀନ ବ୍ୟକ୍ତି ପାଖରେ ବ୍ରହ୍ମଜ୍ଞାନ ରହିବା ଅସମ୍ଭବ । ଅତଏବ ତୁମେ ସନ୍ୟାସୀ ପଦବାଚ୍ୟ ନୁହେଁ ।

ଶଙ୍କର- କଳିକାଳରେ ଅଗ୍ନିହୋତ୍ର ନାହିଁ । ତୁମ ଭଳି ସଂସାରସକ୍ତ ପୁରୁଷର ସ୍ୱର୍ଗଲାଭ ସୁଦୂର ପରାହତ । ତୁମେ କେବଳ ଇନ୍ଦ୍ରିୟ ସୁଖଭୋଗ ନିମିତ୍ତ ଛଳନା କରି ଧାର୍ମିକ ଗୃହସ୍ଥ ସାଜିଅଛ ।

ତତ୍‌ପରେ ମଣ୍ଡନ ଅତ୍ୟନ୍ତ କୃଦ୍ଧ ହୋଇ ଦୂର ହୁଅ ମୂର୍ଖ । କର୍ମ ସମୟରେ ବାକ୍ୟାଳାପ କରିବାକୁ ମୁଁ ଇଚ୍ଛା କରୁନାହିଁ । ଏହିପରି ମଣ୍ଡନ ମିଶ୍ର ଶଙ୍କରଙ୍କ ପ୍ରତି ନାନାରୂଢ଼ ବାକ୍ୟ ପ୍ରୟୋଗ କଲେ । ଏସବୁ ଶ୍ରବଣ କରିବାପରେ ସେଠାରେ ଉପସ୍ଥିତ ଥିବା ବ୍ୟାସଦେବ ଆଉ ସମ୍ଭାଳି ପାରିଲେ ନାହିଁ । ସେ ମଣ୍ଡନଙ୍କୁ ଲକ୍ଷ୍ୟ କରି କହିଲେ ହେ ପଣ୍ଡିତ, ଏ ମହାଶୟ ଯତି ଅଟନ୍ତି ତେଣୁ ସାକ୍ଷାତ ବିଷ୍ଣୁ ସ୍ୱରୂପ । ଯେଉଁମାନଙ୍କର ବିଷୟ ବାସନା ନଷ୍ଟ ହୋଇଛି, ଯେଉଁମାନେ ଆତ୍ମତତ୍ତ୍ୱରେ ତଲ୍ଲୀନ ସେମାନଙ୍କୁ କଟୁବାକ୍ୟ ପ୍ରୟୋଗ କରିବା ସାଧୁ ଜନୋଚିତ କାର୍ଯ୍ୟ ନୁହେଁ । ବର୍ତ୍ତମାନ ସେ ତୁମର ଅତିଥି । ଏହାଙ୍କର ଯଥୋଚିତ ସମ୍ମାନ କରିବା ତୁମର କର୍ତ୍ତବ୍ୟ । ଏପରି ଗୁରୁବାକ୍ୟ ଶ୍ରବଣ କରିବା ପରେ ମଣ୍ଡନମିଶ୍ର ଶାନ୍ତ ହେଲେ କିଛି ସମୟ ନୀରବ ହୋଇଯାଇ ଶଙ୍କରଙ୍କୁ ସମ୍ବୋଧନ କରି କହିଲେ- ଆପଣ ମୋ ଗୁରୁମାନଙ୍କର ସମ୍ମାନର ପାତ୍ର ହୋଇଥିବା ହେତୁ ମୋର ମଧ ସମ୍ମାନୀୟ । ବର୍ତ୍ତମାନ ବେଦ ବିରୋଧି ମାନଙ୍କର ପ୍ରାଦୁର୍ଭାବ ହେତୁ ଆପଣଙ୍କୁ ଜଣେ ବୌଦ୍ଧ ସନ୍ୟାସୀ ବୋଲି ମନେକରି ଏପରି ବ୍ୟବହାର ପ୍ରଦର୍ଶନ କରିଅଛି । ଅନୁଗ୍ରହ କରି କ୍ଷମା ପ୍ରଦାନ କରନ୍ତୁ । ଏହିପରି କହି ମଣ୍ଡନ ଶ୍ରୀ ଶଙ୍କରଙ୍କୁ ପଦବନ୍ଦନା କଲେ ଓ ତାଙ୍କ ଗୃହରେ ଭିକ୍ଷାଗ୍ରହଣ କରିବା ନିମନ୍ତେ ନିମନ୍ତ୍ରଣ କଲେ । ମାତ୍ର ଶଙ୍କର କହିଲେ ହେ ବ୍ରାହ୍ମଣ ମୁଁ ଅନ୍ନର ପ୍ରାର୍ଥୀ ହୋଇ ଏଠାକୁ ଆସିନାହିଁ । ମୁଁ କୁମାରିଲ୍ଲ ଭଟ୍ଟଙ୍କ ଜ୍ଞାନରେ ପ୍ରଭାବିତ ହୋଇ ତାଙ୍କ ଦ୍ୱାରା ମୋ ରଚିତ ବ୍ରହ୍ମସୂତ୍ରର ଭାଷ୍ୟ ଉପରେ ଏକ ବାର୍ତ୍ତିକ ଲେଖାଇବାର ପ୍ରାର୍ଥନା ନେଇ ପ୍ରୟାଗ ଯାଇଥିଲି ମାତ୍ର କୁମାରିଲ୍ଲ ଭଟ୍ଟ ନିଜର, ବୌଦ୍ଧଗୁରୁଙ୍କର ମୃତ୍ୟୁ ଓ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରଚାର ପାପର ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ତୁଷାନଳରେ ପ୍ରବେଶ କରି ମହାପ୍ରସ୍ଥାନ କଲେ ଏବଂ ସେହିଁ ଆପଣଙ୍କର ଅନେକ ପ୍ରଶଂସା କରି ଆପଣଙ୍କ ନିକଟକୁ ପ୍ରେରଣ

କରିଛନ୍ତି । ତେଣୁ ମୁଁ ତର୍କଭିକ୍ଷା କାମନା କରି ଆପଣଙ୍କ ନିକଟରେ ଉପସ୍ଥିତ ହୋଇଛି । ଆପଣ ଅନବରତ ଯଜ୍ଞ କାର୍ଯ୍ୟରେ ନିମଗ୍ନ ରହି ବେଦାନ୍ତ ଉଦ୍ଦିଷ୍ଟ ମୁକ୍ତିମାର୍ଗ ପ୍ରତି ଅବଜ୍ଞା ପ୍ରଦର୍ଶନ କରିଅଛନ୍ତି । ମୁଁ ସମସ୍ତ ବିପକ୍ଷଙ୍କୁ ପରାଜିତ କରି ବେଦାନ୍ତ ପଥର ସିଦ୍ଧାନ୍ତ କରି ତାକୁ ବିସ୍ତାର କରିବା ନିମନ୍ତେ ବ୍ରତୀ ହୋଇଅଛି । ଏତର୍କ ଭିକ୍ଷାକୁ ଗ୍ରହଣ କର ନଚେତ ମୋ ନିକଟରେ ପରାଜୟ ସ୍ୱୀକାର କର । ମଣ୍ଡନ ତାଙ୍କ ଗୁରୁ କୁମାରିଲ୍ଲ ଭଟ୍ଟଙ୍କ ଦେହରକ୍ଷା ଖବର ଶୁଣି ଅତ୍ୟନ୍ତ ମର୍ମାହତ ହେଲେ ଓ କିଛି ସମୟ ସ୍ତବଧ ହୋଇଗଲେ, ତତ୍ପରେ କହିଲେ- ମୀମାଂସା ଦର୍ଶନ କହେ ଈଶ୍ୱର ନାହାନ୍ତି । କର୍ମ ହିଁ ଜୀବଂକୁ ଶୁଭାଶୁଭ ଫଳ ପ୍ରଦାନ କରେ । ମୁଁ ତର୍କଦ୍ୱାରା ଏହା ପ୍ରମାଣିତ କରିସାରିଛି । ମୋ ତର୍କ ପ୍ରଭାବରେ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣିତ ହୋଇସାରିଛି ଓ ସମାଜରେ ତାହା ଗୃହୀତ ହୋଇସାରିଛି । ତେବେ ଆପଣଙ୍କ ଭଳି ଜଣେ ବିଦ୍ୱାନ ସହିତ ଶାସ୍ତ୍ରାର୍ଥ ବେଶ୍ ଜ୍ଞାନୋଦ୍ଦୀପକ ହେବ । ତେଣୁ ମୁଁ ଏହି ତର୍କ ଆହ୍ୱାନକୁ ସ୍ୱୀକାର କରୁଛି । ଆପଣ କୃପାକରି ମୋ ଗୃହରେ ପଦାର୍ପଣ କରିଥିବାରୁ ମୁଁ କୃତାର୍ଥ ମନେକରୁଛି । ତେବେ ଆସନ୍ତାକାଲି ଠାରୁ ଏ ତର୍କ ଆରମ୍ଭ ହେବ ।ବର୍ତ୍ତମାନ ମଧ୍ୟାହ୍ନ କ୍ରିୟା ସମ୍ପନ୍ନ କରନ୍ତୁ । ମଣ୍ଡନ ଅତିଥିମାନଙ୍କୁ ଯଥାବିଧି ଅର୍ଚ୍ଚନା କଲେ । ଶଙ୍କର ଶିଷ୍ୟମାନଙ୍କ ସହ ଆହାର କରି ଉପବେଶନ କରିବା ସମୟରେ ମଣ୍ଡନଙ୍କ ଶିଷ୍ୟମାନେ ସେମାନଙ୍କ ନିମନ୍ତେ ଚାମର ସେବାପ୍ରଦାନ କଲେ । ତତ୍‌ପରେ ଶଙ୍କର ଶିଷ୍ୟମାନଙ୍କ ସହିତ ରେବା ନଦୀ ତଟରେ ଥିବା ଦେବାଳୟକୁ ଯାଇ ରାତ୍ରୀଯାପନ କଲେ ।

ପରଦିନ ସକାଳେ ତର୍କସଭାର ବ୍ୟବସ୍ଥା କଲେ ମଣ୍ଡନମିଶ୍ର । ତତ୍‌ପରେ ଶଙ୍କରଙ୍କ ନିକଟକୁ ଖବର ପ୍ରେରଣ କଲେ ଯେ ସଭାସ୍ଥଳ ବ୍ୟବସ୍ଥିତ ହୋଇସାରିଛି । ଶଙ୍କର ତାଙ୍କର ଶିଷ୍ୟମାନଙ୍କ ସହିତ ସଭାମଣ୍ଡପ ନିକଟରେ ଉପସ୍ଥିତ ହୋଇ ଆସନଗ୍ରହଣ କଲେ ଓ ତାଙ୍କର ଶିଷ୍ୟମାନେ ତାଙ୍କ ପାର୍ଶ୍ୱରେ ଉପବେଶନ କଲେ । ମଣ୍ଡନମିଶ୍ର ମଧ ଶଙ୍କରଙ୍କ ବିପରୀତ ଦିଗରେ ଉପବେଶନ କଲେ ଓ ତାଙ୍କ ଶିଷ୍ୟବର୍ଗ ମଧ ତାଙ୍କ ପାର୍ଶ୍ୱ ମଣ୍ଡନ କଲେ । ମାତ୍ର ମଧ୍ୟସ୍ଥଙ୍କ ଆସନ ଶୂନ୍ୟରହିଲା । ଭଗବାନ ବେଦବ୍ୟାସ ଓ ଜୈମିନୀସେଠାରେ ଉପସ୍ଥିତ ହେଲେ । ମଣ୍ଡନ ଚାହିଁଥିଲେ ଜୈମିନୀ ମଧ୍ୟସ୍ଥ ହୁଅନ୍ତୁ ବୋଲି ମାତ୍ର ବେଦବ୍ୟାସ ଓ ଜୈମିନୀଙ୍କ ପରାମର୍ଶ କ୍ରମେ ଓ ଦୁଇ ପ୍ରତିଦ୍ୱନ୍ଦୀଙ୍କ ଅନୁମତି କ୍ରମେ ମଣ୍ଡନପତ୍ନୀ ଉଭୟ ଭାରତୀ ମଧ୍ୟସ୍ଥ ହେଲେ । ଭାରତୀ କହିଲେ ସେ ଉଭୟଙ୍କ ବେକରେ ଏକ ଏକ ସଜ ଫୁଲରମାଳ ଲମ୍ୱାଇଦେବେ । ଫୁଲମାଳ ଯାହାଙ୍କର ମଳିନ ପଡିଯିବ ସେ ହାରିଗଲେ ବୋଲି ଧରି ନିଆଯିବ ।

ଶାସ୍ତ୍ରାର୍ଥର ବିଷୟ ଥିଲା । ମୋକ୍ଷର କାରଣ ଜ୍ଞାନ ଅଥବା କର୍ମ ଅଟେ । ଶଙ୍କର ଜ୍ଞାନର ପକ୍ଷରେ ଥିବାବେଳେ ମଣ୍ଡନ କର୍ମର ପକ୍ଷରେ ଥିଲେ । ଭାରତୀଙ୍କ ଦ୍ୱାରା ଏହା ଘୋଷଣା କରାଯିବା ପରେ ଶାସ୍ତ୍ରାର୍ଥ ପୂର୍ବପକ୍ଷ କିଏ ଉପସ୍ଥାପନ କରିବେ ପ୍ରଶ୍ନ କରନ୍ତେ -ମଣ୍ଡନ କହିଲେ ଯେହେତୁ ଆଚାର୍ଯ୍ୟ ବିଚାର ପ୍ରାର୍ଥୀ ହୋଇ ଆସିଛନ୍ତି ତେଣୁ ସେ ହିଁ ପୂର୍ବପକ୍ଷ ହୋଇ ତାଙ୍କର ପ୍ରଶ୍ନ ଓ ନିଷ୍ପତ୍ତି ପ୍ରଥମେ ଶୁଣାଇବେ । ମଣ୍ଡନ ମିଶ୍ର ଉତ୍ତର ପକ୍ଷ ହୋଇ ତାର ସମାଧାନ ଓ ଉତ୍ତର ଦେବେ ।

ତେଣୁ ଶଙ୍କର ତାଙ୍କର ସିଦ୍ଧାନ୍ତ ଉପସ୍ଥାପନ କରି କହିଲେ-

ଅଦ୍ୱୈତ ବ୍ରହ୍ମଜ୍ଞାନ ହିଁ ବେଦର ତାତ୍ପର୍ଯ୍ୟ । ଏ ଜଗତରେ ଏକ ମାତ୍ର ବ୍ରହ୍ମ ହିଁ ବିଦ୍ୟମାନ । ବ୍ରହ୍ମ ସତ ଚିତ୍ ଆନନ୍ଦ ତଥା ଯଥାର୍ଥ ବସ୍ତୁ ଅଟେ । ସେ ସ୍ୱୟଂ ଏହି ଜଗତ ରୂପରେ ପ୍ରତିଭାଷିତ ହୁଅନ୍ତି । ଶିଶୁକୁ କ୍ଷୀର ପେଇବା ପାଇଁ ଯେପରି ଖଣ୍ଡେ ଶାମୁକା ରୂପାର ପ୍ରତିଭାଷ ସୃଷ୍ଟି କରେ ବା ଶାମୁକା ଯେପରି ରୂପାର ମିଥ୍ୟା ଜ୍ଞାନ ସୃଷ୍ଟିଏ ସେହିପରି ସଂସାର ମଧ୍ୟ ମିଥ୍ୟା ଅଟେ । ବ୍ରହ୍ମସତ୍ୟ ଜଗତ୍ ମିଥ୍ୟା । ସେହି ବ୍ରହ୍ମର ଜ୍ଞାନ ଦ୍ୱାରା ଏହି ପ୍ରପଞ୍ଚର ନାଶ ଘଟେ ଏବଂ ଜୀବ ବାହ୍ୟ ପଦାର୍ଥରୁ ହଟି ନିଜର ବିଶୁଦ୍ଧ ରୂପରେ ପ୍ରତିଷ୍ଠିତ ହୁଏ । ମୁଁ ହେଉଛି ବ୍ରହ୍ମ ଓ ବ୍ରହ୍ମ ହେଉଛନ୍ତି ମୁଁ, ଏହି ଅଦ୍ୱୈତ ଜ୍ଞାନରେ ମୁକ୍ତି ସଂଭବ ହୁଏ । ଏହି ମୁକ୍ତିରେ ଜୀବ ବ୍ରହ୍ମ ମଧ୍ୟରେ ପାର୍ଥକ୍ୟ ରହେ ନାହିଁ । ଶୁଦ୍ଧଜଳ ଶୁଦ୍ଧ ଜଳ ସହିତ ମିଶିଯିବା ଭଳି ଅଭେଦ ହୋଇଯାଏ ଏବଂ ତାକୁ ପୁନରାୟ ବନ୍ଧନରେ ପଡିବାକୁ ହୁଏନା । ବେଦାନ୍ତଶାସ୍ତ୍ର ଓ ଉପନିଷଦ ସମୂହ ମୋର ମତକୁ ସ୍ୱୀକାର କରୁଛନ୍ତି ଯଥା-

(୧) ବ୍ରହ୍ମ ଏକ ଅଦ୍ୱିତୀୟ । ସତ୍ୟ ଓ ଜ୍ଞାନ ରୂପକ । ତାଙ୍କର ଅନ୍ତ ନାହିଁ ସେ ବିଜ୍ଞାନମୟ ଓ ଆନନ୍ଦମୟ ।

(୨) ଏହି ଦୃଶ୍ୟମାନ ବ୍ରହ୍ମାଣ୍ଡ କେବଳ ବ୍ରହ୍ମମୟ -ସର୍ବଂ ଖଲ୍ୱିଦଂ ବ୍ରହ୍ମ

(୩) ଆତ୍ମଜ୍ଞାନୀ ପୁରୁଷ ଶୋକରହିତ- ତରତି ଶୋକାଦାତ୍ମବିତ୍

(୪) ଯେ ବ୍ରହ୍ମ ଦର୍ଶନ କରନ୍ତି ତାଙ୍କର ଶୋକ ବା ମୋହ କଣ ? ତତ୍ରକୋ ମୋହଃ କଃ ଶୋକ ଏକତ୍ୱ ମନୁ ପଶ୍ୟତଃ

(୫) ଯେ ବ୍ରହ୍ମଙ୍କୁ ଜାଣନ୍ତି, ସେ ନିଜେ ବ୍ରହ୍ମ ହୋଇଯାଆନ୍ତି ବ୍ରହ୍ମବିଦ ବ୍ରହ୍ମୈବ ଭବତି

(୬) ସେ ଆଉ ସଂସାରକୁ ପୁନରାଗମନ କରନ୍ତି ନାହିଁ- ନ ସଃ ପୁନରାବର୍ତ୍ତତେ ।

ଏହାହିଁ ମୋର ସିଦ୍ଧାନ୍ତ ଅଟେ ଏବଂ ସ୍ୱୟଂଉପନିଷଦ ହିଁ ପ୍ରମାଣ ଅଟେ । ଏ ଶାସ୍ତ୍ରାର୍ଥରେ ଯଦି ମୁଁ ପରାଜିତ ହୁଏ, ତେବେ ଦଣ୍ଡ କମଣ୍ଡଳୁ ପରିତ୍ୟାଗ କରି କଷାୟ ବସ୍ତ୍ର ତ୍ୟାଗ କରି ଶ୍ୱେତବସ୍ତ୍ର ପରିଧାନ ପୂର୍ବକ ଗୃହସ୍ଥ ଧର୍ମକୁ ଗ୍ରହଣ କରିବି ।

ଆଚାର୍ଯ୍ୟ ଶଙ୍କରଙ୍କର ଅଦ୍ୱୈତ ସିଦ୍ଧାନ୍ତ ପ୍ରତିପାଦନ ସହିତ ପ୍ରତିଜ୍ଞା ଶ୍ରବଣ କରି ମଣ୍ଡନ ମିଶ୍ର ମଧ୍ୟ ନିଜର ପକ୍ଷ କହିଲେ- କର୍ମ ହିଁ ବେଦର ତାତ୍ପର୍ଯ୍ୟ । କର୍ମ ଫଳରେ ମୁକ୍ତି ଲାଭ ହୁଏ । ବ୍ରହ୍ମଙ୍କ ସହିତ ଅଭେଦ ଜ୍ଞାନରେ ବ୍ରହ୍ମଙ୍କ ସହିତ ଅଭିନ୍ନ ଭାବ ରୂପକ ମୁକ୍ତି ଅସମ୍ଭବ । ବ୍ରହ୍ମଙ୍କ ସହିତ ଆତ୍ମାର ଯେଉଁ ଅଭେଦ ଭାବନା ବେଦରେ କରାଯାଇଛି ତାହା କେବଳ କର୍ମର ପୂର୍ଣ୍ଣତା ନିମନ୍ତେ ଉଦ୍ଦିଷ୍ଟ । ବ୍ରହ୍ମଜ୍ଞାନ ବେଦର ଶେଷକଥା ନୁହେଁ । ବ୍ରହ୍ମ ଥିଲେ ମଧ୍ୟ ତାଙ୍କ ସହିତ ଜୀବର ଭେଦ ରହିଛି । କର୍ମମୟ ହେଲେ ପୁନର୍ଜନ୍ମ ହୋଇଥାଏ । ଅନନ୍ତକାଳ କର୍ମ କଲେ ଅନନ୍ତ ସ୍ୱର୍ଗ ଭୋଗ ହୁଏ ।

ବେଦାନ୍ତା ନ ପ୍ରମାଣଂ ଚିତି ବପୁଷି ପଦେ ତତ୍ର ସଙ୍ଗତ୍ୟଯୋଗାତ୍

ପୂର୍ବୋ ଭାଗଃ ପ୍ରମାଣଂ ପଦଚୟ ଗମିତେ କାର୍ଯ୍ୟବସ୍ତୁନ୍ୟଶେଷେ ॥

ଅର୍ଥାତ୍ ଚୈତନ୍ୟ ସ୍ୱରୂପ ପ୍ରତିପାଦନ କରିବାରେ ଉପନିଷଦ ପ୍ରମାଣ ନୁହେଁ । ସିଦ୍ଧ ବସ୍ତୁର ପ୍ରତିପାଦନରେ ବେଦାନ୍ତର ତାତ୍ପର୍ଯ୍ୟ ନାହିଁ । ବେଦର ତାତ୍ପର୍ଯ୍ୟ ହେଲା ବିଧିର ପ୍ରତିପାଦନ କିନ୍ତୁ ଉପନିଷଦ ବିଧିର ବର୍ଣ୍ଣନା ନକରି ବ୍ରହ୍ମର ପ୍ରତିପାଦନ କରିଥାଏ । ତେଣୁ ତାହାହିଁ ପ୍ରମାଣ ଅଟେ । ଦୁଃଖରୁ ମୁକ୍ତି କର୍ମଦ୍ୱାରା ହିଁ ହୋଇପାରେ ତେଣୁ ମନୁଷ୍ୟକୁ ଜୀବନସାରା କର୍ମ କରିବା ଉଚିତ୍ । ମୀମାଂସକ ହୋଇ ଥିବାରୁ ଏହା ମୋର ପକ୍ଷ ଅଟେ । ବେଦାନ୍ତର ପୂର୍ବଭାଗ ମୀମାଂସା କାବ୍ୟ ଅବଶ୍ୟ ପ୍ରମାଣ ବୋଲି ଗୃହୀତ । ତେଣୁ ଯାବଜ୍ଜୀବନ ଅଗ୍ନିହୋତ୍ର କରିବା ବିଧେୟ । ଶ୍ରୁତିବାକ୍ୟ ହିଁ ଏହାର ପ୍ରମାଣ । ଏ ବିଷୟରେ ବାଦ କରି ମୁଁ ପରାଜୟ ସ୍ୱୀକାର କଲେ ଗୃହସ୍ଥ ଜୀବନ ତ୍ୟାଗ କରି କଷାୟ ବସ୍ତ୍ର ପରିଧାନ ପୂର୍ବକ ସନ୍ୟାସାଶ୍ରମ ଗ୍ରହଣ କରିବି । ଏ ତର୍କରେ ମୋର ପତ୍ନୀଙ୍କୁ ଯେପରି ମଧ୍ୟସ୍ଥ ଭାବେ ଗ୍ରହଣ କରିଛନ୍ତି ମୁଁ ତାହାକୁ ସମର୍ଥନ କରୁଛି । ଗ୍ରାମସାରା ଏ ସମାଚାର କ୍ଷଣକରେ ବ୍ୟାପିଗଲା ଯେ ଆଚାର୍ଯ୍ୟ ମଣ୍ଡନମିଶ୍ର ବାଳସନ୍ୟାସୀ ସହିତ ଶାସ୍ତ୍ରାର୍ଥ କରୁଛନ୍ତି ଯହିଁରେ ନିର୍ଣ୍ଣାୟକ ଆସନରେ ବସିଛନ୍ତି ମଣ୍ଡନଙ୍କ ସ୍ତ୍ରୀ ଉଭୟ ଭାରତୀ । ସଂପୂର୍ଣ୍ଣ ଗ୍ରାମର ମୀମାଂସକ ନୈୟାୟିକ, ବୈୟାକରଣୀକ ଆଦି ଯେତେଥିଲେ ଓ ଆଖପାଖ ଗ୍ରାମର ବ୍ରାହ୍ମଣ ତଥା ପଣ୍ଡିତମାନେ ସେଠାରେ ସମବେତ ହୋଇ ଶାସ୍ତ୍ରାର୍ଥ ଶ୍ରବଣର ଆନନ୍ଦ ଉପଭୋଗ କଲେ ।

ଶାସ୍ତ୍ରାର୍ଥ ଆରମ୍ଭ ହେଲା-

ଶଙ୍କର- ଅଦ୍ୱୈତ ବ୍ରହ୍ମର ଜ୍ଞାନ ହିଁ ବେଦର ତାତ୍ପର୍ଯ୍ୟ ଅଟେ । କର୍ମ ବା ଉପାସନା କେବଳ ଚିତ୍ତଶୁଦ୍ଧି ନିମିତ୍ତ । ଜ୍ଞାନ ଏବଂ କର୍ମ ଅଥବା ଜ୍ଞାନ ଏବଂ ଉପାସନାରେ ସମନ୍ୱୟ ସମ୍ଭବ ନୁହେଁ । କର୍ମ ଏବଂ ଉପାସନା ଦ୍ୱାରା ଚିତ୍ତ ଶୁଦ୍ଧି ହେଲେ ହିଁ ଅହଂ ବ୍ରହ୍ମାସ୍ମି ଅଥବା ସତ୍ୟଂ ଜ୍ଞାନ ମନନ୍ତଂ ବ୍ରହ୍ମ ଏହିପରି ଅଦ୍ୱୈତ ଜ୍ଞାନଦ୍ୱାରା ଜୀବନର ମୁକ୍ତିହୁଏ ।

ମଣ୍ଡନ- ପ୍ରତ୍ୟୁତ୍ତରରେ ମଣ୍ଡନ କହିଲେ ନା, କର୍ମ ହିଁ ବେଦର ତାତ୍ପର୍ଯ୍ୟ ଅଟେ । କର୍ମର ଫଳ ସ୍ୱରୂପ ମୋକ୍ଷ ମିଳେ, ମୁକ୍ତି ପ୍ରାପ୍ତ ହୁଏ । ବ୍ରହ୍ମ ସହିତ ଆତ୍ମାର ଯେଉଁ ଅଭେଦ ଭାବନା ବେଦରେ ବର୍ଣ୍ଣନା ଅଛି ତାହା କର୍ମ ସମ୍ପାଦନ ଅର୍ଥରେ କୁହାଯାଇଛି । ଘଟମ୍ ଆନୟ ଆଦି ବାକ୍ୟରେ ମଧ୍ୟ କର୍ମର ଶକ୍ତି ପ୍ରତୀତ ହୁଏ । ତେଣୁ ଅନନ୍ତକାଳ ପର୍ଯ୍ୟନ୍ତ କେବଳ କର୍ମ କରିଚାଲିଲେ ସ୍ୱର୍ଗ ପ୍ରାପ୍ତି ହୁଏ ଓ ମନୁଷ୍ୟଙ୍କୁ ମୋକ୍ଷ ପ୍ରାପ୍ତ ହୁଏ ।

ମଣ୍ଡନଙ୍କ ଉତ୍ତରରେ ଶଙ୍କର ପ୍ରତ୍ୟୁତ୍ତର ରଖିଲେ । ଜଣେ ଅନ୍ୟର ଦୋଷ ପ୍ରଦର୍ଶନ କରି ନିଜର ପ୍ରତିଷ୍ଠା ପ୍ରତିପାଦନ କରିବାକୁ ଚେଷ୍ଟା କରିଚାଲିଲେ । ଦୁହେଁ ବିଦ୍ୱାନ, ନିଜ ନିଜ ମାର୍ଗରେ ସବଳ ଓ ପ୍ରତିଷ୍ଠାବାନ । କୌଣସି ପକ୍ଷ ହଟିଯିବାର ଦେଖାଯାଉନଥିଲା । ଯେପରି ଆଚାର୍ଯ୍ୟ ଶଙ୍କର ଅଦ୍ୱୈତବାଦର ପ୍ରତିଷ୍ଠା କରୁଥିଲେ ସେହିପରି ଆଚାର୍ଯ୍ୟ ମଣ୍ଡନ ମଧ୍ୟ ଅସଂଖ୍ୟ ପ୍ରମାଣର ଉଦାହରଣ ଦେଇ ତାର ଖଣ୍ଡନ ଓ ଦ୍ୱୈତ ବାଦର ପ୍ରତିଷ୍ଠା ପ୍ରତିପାଦନ କରିଚାଲିଥିଲେ । କାହାରି ପାଖରେ ପ୍ରତିଭାର ନ୍ୟୁନତା ନଥିଲା । ପ୍ରଥମ ଦିନ ମଧ୍ୟାହ୍ନ ସମାପ୍ତ ହେବାରୁ ଭାରତୀ ଶାସ୍ତ୍ରାର୍ଥର ଅବସାନ ଘୋଷଣା କରି ଭୋଜନ ପାଇଁ ସମସ୍ତଙ୍କୁ ନିମନ୍ତ୍ରଣ କଲେ ।

ଦ୍ୱିତୀୟ ଦିବସରେ ନିର୍ଦ୍ଧାରିତ ସମୟରେ ଶାସ୍ତ୍ରାର୍ଥ ଆରମ୍ଭ ହେଲା । ମଧ୍ୟସ୍ଥ ଭାରତୀଙ୍କ ପକ୍ଷରୁ ଦୁହିଁଙ୍କ ଗଳାରେ ସଜଫୁଲର ମାଳ ପକେଇ ଦିଆଗଲା । ପ୍ରଥମେ ଭଗବତପାଦ ଶଙ୍କର ତାଙ୍କର ମତବାଦ ଉପସ୍ଥାପନ କଲେ । ଜଣେ ଜ୍ଞାନକାଣ୍ଡକୁ ଓ ଜଣେ କର୍ମକାଣ୍ଡକୁ ପ୍ରାଧାନ୍ୟ ଦେଇଥିଲେ । ଜଣେ ଦ୍ୱୈତବାଦର ପ୍ରତିଷ୍ଠାରେ ପ୍ରୟାସୀ ଥିବାବେଳେ ଅନ୍ୟଜଣେ ଅଦ୍ୱୈତବାଦର ପ୍ରତିଷ୍ଠାରେ ପ୍ରୟାସୀ ଥିଲେ । ଦୁହିଁଙ୍କ ପକ୍ଷରେ ସାମାନ୍ୟ ଦୁର୍ବଳତା ନଥିଲା । ଉତ୍ତର ପ୍ରତ୍ୟୁତ୍ତରରେ ସାମାନ୍ୟ ବିଳମ୍ୱ ହେଉନଥିଲା । ଦୁହିଁଙ୍କ ଭିତରେ ପରସ୍ପର ପ୍ରତି ଅସୂୟା ନଥିଲା, କେହି କାହାକୁ କଟୁଭାଷା ପ୍ରୟୋଗ କରୁନଥିଲେ । ଦୁଇଜଣ ସମଭାବରେ ନିଜନିଜର ଆସନରେ ପ୍ରତିଷ୍ଠିତ ଥିଲେ ।

ମୁଖମଣ୍ଡଳ ପ୍ରଫୁଲ୍ଲିତ ଥିଲା ମନ୍ଦ ସ୍ମିତର ରେଖା ଝଟକୁଥିଲା । ଶରୀରରେ ସ୍ୱେଦ କିମ୍ବା କମ୍ପନ ନଥିଲା । ନିରୁତ୍ତର ହେଲେ ମଧ୍ୟ କ୍ରୋଧହେତୁ ବାକ୍‌ଛଳର ପ୍ରୟୋଗ କେହି କରୁନଥିଲେ । ଦେହରେ ଉଷ୍ଣତା କିମ୍ବା ବିଚଳିତ ଭାବ ନଥିବାରୁ ଗଳାରେ ଥିବା ପୁଷ୍ପମାଲ୍ୟ ସାମାନ୍ୟ ମଧ୍ୟ ମଉଳି ଯିବାର ଦେଖାଯାଉନଥିଲା । ସନ୍ଧ୍ୟା ହେବାମାତ୍ରେ ବିଚାରିକା ଉଭୟ ଭାରତୀ ତର୍କ ସମାପ୍ତ ଘୋଷଣା କରି ଆସନ୍ତା କାଲି ତୃତୀୟ ଦିବସରେ ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହେବା ନିମନ୍ତେ ନିମନ୍ତ୍ରଣ ଜଣାଇଲେ ।

ତୃତୀୟ ଦିବସରେ ସେହି ପ୍ରକ୍ରିୟା ଚାଲୁରହିଲା । ବିଭିନ୍ନ ଶାସ୍ତ୍ର ପ୍ରମାଣ ଉପସ୍ଥାପନ କରି ଦୁଇ ମହାପୁରୁଷ ନିଜନିଜର ପକ୍ଷ ଉପସ୍ଥାପନ କରିଚାଲିଲେ । ଏହିପରି ଭାବରେ ସାତଦିନ ଧରି ଶାସ୍ତ୍ରାର୍ଥ ଚାଲୁରହିଲା । ଧୀରେ ଧୀରେ ଦୂର ଦୂରାନ୍ତରୁ ସାଧାରଣ ଲୋକେ ମଧ୍ୟ ତର୍କସଭା ଦେଖିବାକୁ ଆସିଲେ । ଦିନକୁଦିନ ବିଚାରଭୂମି ଅଧିକ ଗମ୍ଭୀର ହେବାକୁ ଲାଗିଲା । ଏହିପରି ଆଲୋଚନା ମଧ୍ୟରେ ଦିନେ ତତ୍ତ୍ୱମସି ମହାବାକ୍ୟକୁ ନେଇ ନିର୍ଣ୍ଣାୟକ ଶାସ୍ତ୍ରାର୍ଥ ଆରମ୍ଭ ହେଲା ।ଏହି ଶାସ୍ତ୍ରାର୍ଥର ବର୍ଣ୍ଣନା ଯଦିଓ ଶଙ୍କର ଦିଗ୍‌ବିଜୟ ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି ଏଠାରେ ତାର ସାରାଂଶ ଶ୍ରୀ ଶଙ୍କରାଚାର୍ଯ୍ୟ ଗ୍ରନ୍ଥରୁ ପାଠକମାନଙ୍କ ଚିଦ୍‌ବିସ୍ତାର ପାଇଁ ସଂକ୍ଷେପରେ ବର୍ଣ୍ଣନା କରୁଅଛି । ମଣ୍ଡନ ମିଶ୍ର ମୀମାଂସକ ଥିବାରୁ ଦ୍ୱୈତବାଦୀ ଥିଲେ । ଅପରପକ୍ଷରେ ଶଙ୍କର ବେଦାନ୍ତୀ ହେବା କାରଣରୁ ଅଦ୍ୱୈତର ପ୍ରତିପାଦକ ଥିଲେ । ସମସ୍ତ ଉପନିଷଦ ମଣ୍ଡନଙ୍କ ଦୃଷ୍ଟିରେ ଦ୍ୱୈତପରକ ଥିଲେ, ମାତ୍ର ଶଙ୍କର ଉପନିଷଦକୁ ଅଦ୍ୱୈତ ବୋଲି ଅନୁଭବ କରି ସେହି ଅନୁସାରେ ତର୍କ କରୁଥିଲେ । ଉଭୟ ନିଜ ନିଜ ସିଦ୍ଧାନ୍ତ ସପକ୍ଷରେ ଅକାଟ୍ୟ ଯୁକ୍ତି ଉପସ୍ଥାପନ କରୁଥିଲେ । ଶଙ୍କରଙ୍କ ମତରେ ଜୀବ ଓ ବ୍ରହ୍ମର ଅଭିନ୍ନତା କଦାପି ସିଦ୍ଧ ହୋଇ ନପାରେ କାରଣ ଉକ୍ତ ଅଭିନ୍ନତା ତିନୋଟି ପ୍ରମାଣ ଦ୍ୱାରା ବାଧିତ ହୁଏ । (୧) ପ୍ରତ୍ୟକ୍ଷ ପ୍ରମାଣ (୨) ଅନୁମାନ ପ୍ରମାଣ (୩) ଶ୍ରୁତି ପ୍ରମାଣ

ମଣ୍ଡନ- ତତ୍ତ୍ୱମସି ବାକ୍ୟରେ ଆତ୍ମା ଓ ପରମାତ୍ମାଙ୍କର ଏକତ୍ୱ ସ୍ୱୀକାର କରାଯାଇନପାରେ କାରଣ ଏହି ଏକତ୍ୱର ପ୍ରତ୍ୟକ୍ଷ ଜ୍ଞାନ ନାହିଁ । ଅନୁମାନ ପ୍ରମାଣ ମଧ୍ୟ ନାହିଁ । ପ୍ରତ୍ୟକ୍ଷ ଅଭେଦବାଦର ବିରୋଧୀ ଅଟେ କାରଣ ପ୍ରତ୍ୟେକ ବ୍ୟକ୍ତିର ପ୍ରତିଦିନରେ ଅନୁଭବ ହେଲା ଯେ ମୁଁ ଈଶ୍ୱର ନୁହେଁ । ତେଣୁ ପ୍ରତ୍ୟକ୍ଷ ବିରୋଧୀ ହେବା ଯୋଗୁ ଏହି ବାକ୍ୟର ପ୍ରୟୋଜନ ଜୀବ ବ୍ରହ୍ମର ଏକତା ସିଦ୍ଧ କରିବାରେ ନୁହେଁ ।

ଶଙ୍କର- ଏହି ମତ ଠିକ୍ ନୁହେଁ । କାରଣ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜୀବ ଓ ପରମାତ୍ମା ମଧ୍ୟରେ ଭେଦର ଜ୍ଞାନ କେବେ ହୁଏ ନାହିଁ । ପ୍ରତ୍ୟକ୍ଷର ଜ୍ଞାନ ବିଷୟ ଏବଂ ଇନ୍ଦ୍ରିୟ ଅନୁଭବର ଉର୍ଦ୍ଧ୍ୱରେ ଅବଲମ୍ବିତ ରହେ । ଇନ୍ଦ୍ରିୟ ମାନଙ୍କର ଅନୁଭବ ଈଶ୍ୱରୀୟ ଅନୁଭବର ନିକଟବର୍ତ୍ତୀ ହୋଇପାରିବ ନାହିଁ ।

ମଣ୍ଡନ-ଜୀବ ଅଳ୍ପଜ୍ଞ, ବ୍ରହ୍ମ ସର୍ବଜ୍ଞ ଅଟନ୍ତି । ତେବେ ଅଳ୍ପଜ୍ଞ ଏବଂ ସର୍ବଜ୍ଞର ଏକତା ମାନିବା ପ୍ରତ୍ୟକ୍ଷ ରୂପରେ ଅନୁଚିତ ନୁହେଁ ।

ଶଙ୍କର- ଆପଣଙ୍କ ସିଦ୍ଧାନ୍ତରେ ତ୍ରୁଟି ରହିଛି । ପ୍ରତ୍ୟକ୍ଷ ତଥା ଶ୍ରୁତିରେ କୌଣସି ବିରୋଧ ହୋଇ ନପାରେ କାରଣ ଦୁହିଁଙ୍କର ଆଶ୍ରୟ ଭିନ୍ନ ଭିନ୍ନ ଅଟେ । ପ୍ରତ୍ୟକ୍ଷ ପ୍ରମାଣ ଅବିଦ୍ୟାରେ ଯୁକ୍ତ ହୋଇଥିବା ଜୀବରେ ଏବଂ ମାୟାଦ୍ୱାରା ଯୁକ୍ତ ହୋଇଥିବା ଈଶ୍ୱରଙ୍କ ମଧ୍ୟରେ ଭେଦ ପ୍ରଦର୍ଶନ କରେ । ଅନ୍ୟପକ୍ଷରେ ଶ୍ରୁତି ଅବିଦ୍ୟା ଏବଂ ମାୟା ରହିତ ଶୁଦ୍ଧ ଚୈତନ୍ୟରୂପ ଆତ୍ମା ଏବଂ ବ୍ରହ୍ମରେ ଅଭେଦ ଦର୍ଶାଏ । ଏହିପରି ପ୍ରତ୍ୟକ୍ଷର ଆଶ୍ରୟ କଳୁଷିତ ଜୀବ ଏବଂ ଈଶ୍ୱର ଅଟନ୍ତି । ଗୋଟିଏ ଆଶ୍ରୟରେ ବିରୋଧ ହୁଏ । ଭିନ୍ନ ଆଶ୍ରୟ ହେବା ଦ୍ୱାରା ତାର ତିରସ୍କାର କଦାପି କରାଯାଇ ନପାରେ ।

ମଣ୍ଡନ- ହେ ଯତିରାଜ, ପ୍ରତ୍ୟକ୍ଷର ଆପଣ ଖଣ୍ଡନ କଲେ କିନ୍ତୁ ଅନୁମାନ ଅଭେଦ ଶ୍ରୁତିକୁ ବାଧିତ କରୁଅଛି । ଜୀବ ସର୍ବଜ୍ଞ ନୁହେଁ ତେଣୁ ସେ ବ୍ରହ୍ମଠାରୁ ସେହିପରି ଭିନ୍ନ ଅଟେ, ଯେପରି ସର୍ବଜ୍ଞ ନ ହେବା ଯୋଗୁ ସାଧାରଣ ଘଟ ବ୍ରହ୍ମଠାରୁ ଭିନ୍ନ ହୋଇଥାଏ । ଏହି ଅନୁମାନ ଜୀବ ଓ ବ୍ରହ୍ମର ଏକତାକୁ ଅସିଦ୍ଧ କରିବାପାଇଁ ପର୍ଯ୍ୟାପ୍ତ ମନେହୁଏ ।

ଶଙ୍କର-ପ୍ରଥମେ ଏକଥା କହନ୍ତୁ ଯେ ଜୀବ ଓ ବ୍ରହ୍ମର ଯେଉଁ ଭେଦକୁ ଆପଣ ସିଦ୍ଧ କରୁଛନ୍ତି ତାହା ପରମାର୍ଥିକ ଅଥବା କାଳ୍ପନିକ ଅଟେ । ଯଦି ଏହି ଭେଦ ସଂପୂର୍ଣ୍ଣ ରୂପେ ସତ୍ୟ ତେବେ ଆପଣଙ୍କ ପ୍ରଦତ୍ତ ଦୃଷ୍ଟାନ୍ତ ଠିକ୍ ଲାଗୁନି ଏବଂ ଯଦି କାଳ୍ପନିକ ଅଟେ ତେବେ ତାକୁ ଆମ୍ଭେ ସ୍ୱୀକାର କରିଥାଉ । ତାକୁ ସିଦ୍ଧ କରିବାପାଇଁ ପ୍ରମାଣର କଣ ଆବଶ୍ୟକତା ଅଛି ?

ମଣ୍ଡନ- ଉତ୍ତମ । ମୋର ଅନୁମାନ ଠିକ୍ ନ ହେଉ ପଛେ କିନ୍ତୁ ଭେଦ ପ୍ରତିପାଦନ କରୁଥିବା ଶ୍ରୁତି ସହିତ ତତ୍ତ୍ୱମସି ଶ୍ରୁତିର ବିରୋଧ ଏତେ ସ୍ପଷ୍ଟ ଯେ ଅଦ୍ୱୈତବାଦ ଶ୍ରୁତିର ତାତ୍ପର୍ଯ୍ୟ କେବେହେଲେ ଗ୍ରହଣ କରାଯାଇନପାରେ ।

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା, ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତି ଅନଶ୍ନନନ୍ୟୋ ଅଭିଚାକଶୀତି ॥

(ମୁଣ୍ଡକ ଉପନିଷଦ)

ଏହି ମନ୍ତ୍ର ଜୀବ ଓ ଈଶ୍ୱର ମଧ୍ୟରେ ଭେଦ ପ୍ରକଟ କରେ, କାରଣ ଜୀବ କର୍ମଫଳକୁ ଭୋଗକରେ ଏବଂ ଈଶ୍ୱର କର୍ମଫଳ ସହ ଟିକିଏ ବି ମଧ୍ୟ ସମ୍ବନ୍ଧ ରଖେନାହିଁ ।

ଶଙ୍କର- ଜୀବ ଓ ବ୍ରହ୍ମର ଏହି ଭେଦ ପ୍ରତିପାଦନ ପୁରାପୁରି ନିଷ୍ଫଳ ଅଟେ, କାରଣ ଏହି ଜ୍ଞାନରେ ସ୍ୱର୍ଗର ଏବଂ ଅପବର୍ଗର ପ୍ରାପ୍ତି ହୋଇନପାରେ । ଏହି ଭେଦ ନିଷ୍ଫଳ ହେଲେ ମଧ୍ୟ ଆମେ ମାନିବାକୁ ପ୍ରସ୍ତୁତ ଅଟୁ ପରନ୍ତୁ ପୂର୍ବ ନିର୍ଦ୍ଦିଷ୍ଟ ଶ୍ରୁତି ବାକ୍ୟରେ ବୁଦ୍ଧି ଏବଂ ପୁରୁଷର ଭେଦ ପ୍ରଦର୍ଶିତ ଅଟେ କିନ୍ତୁ ଜୀବ ଏବଂ ଈଶ୍ୱର ମଧ୍ୟରେ ନୁହେଁ । ଶ୍ରୁତି କହନ୍ତି ଯେ କର୍ମଫଳକୁ ବୁଦ୍ଧି ଭୋଗ କରେ । ପୁରୁଷ ତାଠାରୁ ପୁରାପୁରି ଭିନ୍ନ ଅଟେ ସୁତରାଂ ତାକୁ ଦୁଃଖ ଭୋଗ କରିବାର ଫଳାଫଳ କଦାପି ପ୍ରାପ୍ତ ହୁଏ ନାହିଁ ।

ମଣ୍ଡନ- ଏହି ଅର୍ଥର ମୁଁ ବିରୋଧ କରୁଛି କାରଣ ବୁଦ୍ଧି ଜଡ ଅଟେ । ଭୋକ୍ତା ଚେତନ ଅଟେ । ଏପରି ଅବସ୍ଥାରେ ପୂର୍ବମନ୍ତ୍ର ବୁଦ୍ଧିପରି ଜଡ ପଦାର୍ଥକୁ ଭୋକ୍ତା ରୂପେ ଅଭିହିତ କରୁଛି, ଏ କଥାକୁ କୌଣସି ବିଦ୍ୱାନ ମାନିବାକୁ ପ୍ରସ୍ତୁତ ହେବେ ନାହିଁ । ତେଣୁ ଉକ୍ତ ଶ୍ରୁତିର ଉଦ୍ଦେଶ୍ୟ ଜୀବ ଏବଂ ଈଶ୍ୱରର ଭେଦକୁ ପ୍ରଦର୍ଶନ କରିବା ।

ଶଙ୍କର- ଆପଣଙ୍କ ସିଦ୍ଧାନ୍ତ ଯଥାର୍ଥ ନୁହେଁ । କାରଣ ବୁଦ୍ଧି କର୍ମ ଫଳକୁ ଭୋଗ କରେ ଏବଂ ଜୀବ କେବଳ ସାକ୍ଷୀମାତ୍ର ରହିଥାଏ । ଏଥିରେ ବୁଦ୍ଧି ଏବଂ ଜୀବର ଭିନ୍ନତା ପ୍ରମାଣ କରୁଛି ।

ମଣ୍ଡନ- ଯାହାଦ୍ୱାରା ସ୍ୱପ୍ନ ଦେଖାଯାଏ ସେ ସତ୍ତ୍ୱ ଅଟେ ଏବଂ ଯେ ଶରୀରରେ ଥାଇ ସାକ୍ଷୀହୁଏ ସେ କ୍ଷେତ୍ରଜ୍ଞ ଅଟେ । କିନ୍ତୁ ଏହି ଅର୍ଥ ଉପରେ ଧ୍ୟାନ ନଦେଇ ମୀମାଂସାର ବକ୍ତବ୍ୟ ହେଲା ସତ୍ତ୍ୱ ଶବ୍ଦର ଅର୍ଥ ସ୍ୱପ୍ନ ଏବଂ ଦର୍ଶନକ୍ରିୟା ଜୀବଙ୍କର ତଥା କ୍ଷେତ୍ରଜ୍ଞର ଅର୍ଥ ସ୍ୱପ୍ନକୁ ଦେଖୁଥିବା ସର୍ବଜ୍ଞ ଈଶ୍ୱର ଅଟନ୍ତି ।

ଶଙ୍କର- ଏପରି ଅର୍ଥ କଦାପି ହୋଇପାରିବ ନାହିଁ । ସତ୍ତ୍ୱ ଦର୍ଶନର କର୍ତ୍ତା ନୁହେଁ ଅଧିକନ୍ତୁ କାରଣ ଅଟେ । ଅର୍ଥାତ୍ ଏହି ପଦର ଅର୍ଥ ଜୀବ ନୁହେଁ ବୁଦ୍ଧି ଅଟେ । କ୍ଷେତ୍ରଜ୍ଞ ସହିତ ଶରୀର ବିଶେଷଣ ହେବା ଦୃଷ୍ଟିରୁ ଏହି ପଦର ଅର୍ଥ ଜୀବ ଅଟେ ଯେ ଶରୀରରେ ନିବାସ କରେ, କିନ୍ତୁ ଈଶ୍ୱର ନୁହେଁ ।

ମଣ୍ଡନ- ଭଲ କଥା । ଏହି ଶ୍ରୁତିକୁ ଛାଡନ୍ତୁ । କଠୋପନିଷଦର ଏହି ପ୍ରସିଦ୍ଧ ମନ୍ତ୍ର ଉପରେ ବିଚାର କରନ୍ତୁ ଯେ ଜୀବ ଏବଂ ଈଶ୍ୱର ମଧ୍ୟରେ ସେହିପରି ସ୍ପଷ୍ଟ ଭେଦ ସ୍ୱୀକାର କରେ ଯେପରି ଭେଦ ଛାୟା ତଥା ଆତପ ମଧ୍ୟରେ ରହିଛି ।

ଋତଂ ପିବନ୍ତୌ ସୁକୃତସ୍ୟ ଲୋକେ, ଗୁହାଂ ପ୍ରବିଷ୍ଟୌ ପରମେ ପରାର୍ଦ୍ଧେ

ଛାୟାତପୌ ବ୍ରହ୍ମବିଦୋ ବଦନ୍ତି, ପଞ୍ଚାଗ୍ନୟୋ ଯେ ଚ ତ୍ରିଣାଚିକେତାଃ ॥

ଶଙ୍କର- ଠିକ୍ ଅଛି । କିନ୍ତୁ ଏହି ଶ୍ରୁତି ମଧ୍ୟ ମୋର ଅଦ୍ୱୈତ ସିଦ୍ଧାନ୍ତରେ ବାଧା ଦେଉନାହିଁ । ଏହା ତ ଲୋକ ସିଦ୍ଧ ଭେଦର ପ୍ରତିପାଦନ ମାତ୍ର କରିଥାଏ । ସତ୍ୟ ହେଲା ଯେ ଅଭେଦ ପ୍ରତିପାଦକ ଶ୍ରୁତି ନବୀନ ଅର୍ଥ ପ୍ରକଟ କରେ, ଯାହା ଲୋକରେ ସିଦ୍ଧ ଲକ୍ଷ୍ୟ କରାଯାଏନାହିଁ ତେଣୁ ତାହା ଅଧିକ ବଳବାନ ଅଟେ । ଭେଦ ତ ଜଗତରେ ସର୍ବତ୍ର ଦୃଷ୍ଟିଗୋଚର ହୁଏ ତେଣୁ ତାକୁସିଦ୍ଧ କରିବା ପାଇଁ ଶ୍ରୁତି କଦାପି ପ୍ରୟାସ କରିନପାରେ । ଶ୍ରୁତି ସଦା ଅପୂର୍ବ ବସ୍ତୁର ବର୍ଣ୍ଣନାରେ ନିରତ ରହେ । ଏହି ଅପୂର୍ବ ବସ୍ତୁ ଅଭେଦର ପ୍ରତିପାଦକ ଅଟେ, ଭେଦର ବର୍ଣ୍ଣନା ନୁହେଁ ।

ମଣ୍ଡନ- ମୋର ବୁଦ୍ଧିରେ ଭେଦର ପ୍ରତିପାଦନ କରୁଥିବା ଶ୍ରୁତି ଦୁଇଟିରେ ବଳବତୀ ଅଟେ । ତାକୁ ଅନ୍ୟ ପ୍ରମାଣ ଦ୍ୱାରା ପୁଷ୍ଟ କରାଯାଇପାରେ ।

ଶଙ୍କର- ଶ୍ରୁତି ଗୁଡିକର ବଳାବଳ ବିଷୟରେ ଆପଣ ଭଲଭାବରେ ବିଚାର କରିନାହାନ୍ତି । ସେମାନଙ୍କର ପ୍ରବଳତା ବିଷୟରେ ସିଦ୍ଧାନ୍ତ ହେଲା ଯେ ଅନ୍ୟପ୍ରମାଣ ସବୁଦ୍ୱାରା କୌଣସି ଶ୍ରୁତିକୁ ପୁଷ୍ଟ କରାଗଲେ ତାହା ପ୍ରବଳ ହୋଇନପାରେ, କାରଣ ସେସବୁ ପ୍ରମାଣ ଦ୍ୱାରା ଅର୍ଥ ଅଭିବ୍ୟକ୍ତ ହେବା ଯୋଗୁଁ ସେହି ଶ୍ରୁତିକୁ ଅତି ଦୁର୍ବଳ ମନେକରାଯାଏ । ପ୍ରବଳ ଶ୍ରୁତି ତାହା ଅଟେ ଯାହା ପ୍ରତ୍ୟକ୍ଷ ଅନୁମାନ ଆଦି ଦ୍ୱାରା ପ୍ରକାଶ କରାଯାଉନଥିବା ଅର୍ଥକୁ ପ୍ରକାଶ କରେ । ପଦାର୍ଥ ଗୁଡିକର ପରସ୍ପର ଭିନ୍ନତା ଯାହାକୁ ଆପଣ ଏତେ ଅଭିନିବେଶ ସହିତ ସିଦ୍ଧ କରୁଛନ୍ତି- ଜଗତରେ ସର୍ବତ୍ର ପରିଲକ୍ଷିତ ହୁଏ । ତେଣୁ ତାକୁ ପ୍ରତିପାଦନ କରୁଥିବା ଶ୍ରୁତି ଦୁର୍ବଳ ଅଟେ । ଅଭେଦ ଓ ଜଗତରେ କେଉଁଠାରେ ହେଲେ ଦେଖାଯାଏ ନାହିଁ । ଏହି ପରୀକ୍ଷାରେ ପରୀକ୍ଷିତ ତତ୍ତ୍ୱମସିର ଅଭେଦ ପ୍ରତିପାଦନ ହିଁ ଶ୍ରୁତିର ପ୍ରତିପାଦ୍ୟ ବିଷୟ ପ୍ରତୀତ ହୁଏ । ଏହି ବାକ୍ୟର ଅର୍ଥ ଜୀବ ଏବଂ ବ୍ରହ୍ମର ଏକତାରେ ନିହିତ ଯାହାର ବିରୋଧ ପ୍ରତ୍ୟକ୍ଷ ଅନୁମାନ ଏବଂ ଶ୍ରୁତି ସହ ନାହିଁ ।

କିନ୍ତୁ ଏହି ଅନ୍ତିମ ନିର୍ଣ୍ଣାୟକ ଶାସ୍ତ୍ରାର୍ଥରେ ସ୍ଥାନେ ସ୍ଥାନେ କିଛି ଭେଦ ମଧ୍ୟ ପରିଲକ୍ଷିତ ହୁଏ । ତଦନୁସାରେ ତର୍କର ଅଷ୍ଟାଦଶ ଦିବସରେ ଶଙ୍କର

ମୁଣ୍ଡୋକୋପନିଷଦରୁ ଉଲ୍ଲେଖ କରିଥିଲେ ପରୀକ୍ଷ ଲୋକାନ୍ କର୍ମ ଚିତାନ୍ ବ୍ରାହ୍ମଣୋ ନିର୍ବେଦମାୟାତ୍ ନାସ୍ତ୍ୟକୃତଃ କୃତେନ ଅର୍ଥାତ୍ ବେଦବିଦ୍ ବ୍ରାହ୍ମଣ କର୍ମରେ ପ୍ରାପ୍ତ ଲୋକମାନଙ୍କର ପରୀକ୍ଷା କରି ତାର ନଶ୍ୱର ଫଳଦେଖି ତା ଉପରେ ବୈରାଗ୍ୟ ଉତ୍ପନ୍ନ କରେ । ମୋକ୍ଷ ହେଉଛି ଆତ୍ମାର ସ୍ୱରୂପ ଯାହା ତ୍ରିକାଳରେ ବିଦ୍ୟମାନ ଅଟେ । କୌଣସି କର୍ମଦ୍ୱାରା ତାର ପ୍ରାପ୍ତି ସମ୍ଭବ ନୁହେଁ । କର୍ମଦ୍ୱାରା ଯେଉଁ ସ୍ୱର୍ଗାଦି ଫଳର ସଂଯୋଗ ହୁଏ ତାର ବିୟୋଗ ମଧ ନିଶ୍ଚିତ ଅଟେ । ଯାହାର ଜନ୍ମଅଛି ତାର ମୃତ୍ୟୁ ମଧ ଅଛି । ପ୍ରାପ୍ତ ପଦାର୍ଥର ବିନାଶ ନିଶ୍ଚିତ ରହିଛି । ତେଣୁ ଯଦି ମୋକ୍ଷ ପ୍ରାପ୍ୟ ଅଟେ ତେବେ ତାର ବିନାଶ ମଧ ଅବଶ୍ୟ ହେବ । ମନୁଷ୍ୟ ଅଜ୍ଞାନତା ବଶତଃ ନିଜକୁ ବଦ୍ଧ ବୋଲି ଭାବେ । ଆତ୍ମାର ସ୍ୱରୂପ ଜ୍ଞାନ ହେଲେ ତଦ୍ୱାରା ତ୍ରିକାଳ ମୁକ୍ତ ଆତ୍ମାର ସ୍ୱରୂପ ହିଁ ବୁଝିହୁଏ । ଅତଏବ ତା ପାଇଁ ମୋକ୍ଷ ଉତ୍ପନ୍ନ ହୁଏ ନାହିଁ । ଚିତ୍ତକୁ ତାର ଜ୍ଞାନ ନଥିଲା । ଅଜ୍ଞାନ ହଟିଗଲେ ନିତ୍ୟମୁକ୍ତ ଆତ୍ମା ମେଘ ଅପସରି ଯାଇଥିବା ଆକାଶର ସୂର୍ଯ୍ୟପରି ପ୍ରତିଭାତ ହୁଏ । କର୍ମର ଅସାରତା ପ୍ରକାଶ କରୁଥିବାର ପ୍ରମାଣ କଠୋପନିଷଦରେ ମିଳେ । ତସୌଷ ଆତ୍ମା ବିବୃଣୁତେ ତନୁଂସ୍ୱାମ୍ । କିନ୍ତୁ ବେଦର କର୍ମ ଭାଗରେ ଜ୍ଞାନର ହୀନତା ସୂଚକ ଗୋଟିଏ ହେଲେ ପ୍ରମାଣ ଆପଣ ପ୍ରଦର୍ଶିତ କରିପାରିବେ ନାହିଁ ।

ଏ ଯୁକ୍ତିକୁ ଶୁଣି ମଣ୍ଡନ ନିରୁତ୍ତର ଓ ବିଚଳିତ ହୋଇଗଲେ । ତାଙ୍କ ଗଳାର ମାଳା ମଉଳିଗଲା । ଦେହରେ ଉତ୍ତାପ ଦେଖାଦେବା ସହିତ ମୁଖମଣ୍ଡଳ ମଳିନ ଦିଶିଲା । ମଣ୍ଡନଙ୍କ ବ୍ରହ୍ମତେଜରେ ଚମକୁଥିବା ଚେହେରା ଉଦାସୀନ ହୋଇଗଲା । ମୀମାଂଶା ଶାସ୍ତ୍ରର ବିଜୟ ପାଇଁ ସେ ଯେଉଁ ଆଶା ରଖିଥିଲେ ତାହା ଧୂଳିସାତ ହୋଇଗଲା । ପଣ୍ଡିତ ମଣ୍ଡଳୀରେ ବ୍ୟାକୁଳତା ପରିଲକ୍ଷିତ ହେଲା । ମାହେଷ୍ମତୀର ଜନତା ମଣ୍ଡନଙ୍କର ଉନ୍ନତ ମସ୍ତକ ଅବନତ ହୋଇଯିବାର ପ୍ରତ୍ୟକ୍ଷ କଲେ । ଅଲୌକିକ ପ୍ରତିଭା ସମ୍ପନ୍ନ ଶଙ୍କରଙ୍କ ସମ୍ମୁଖରେ ତାଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡିଲା ।ଉରିଆଡୁ ସମସ୍ତଙ୍କ ମୌନ ଦୃଷ୍ଟି ନିର୍ଣ୍ଣାୟିକାଙ୍କ ଉପରେ ନିବଦ୍ଧ ଥିଲା । କଣ ନିର୍ଣ୍ଣୟ କରିବେ ? ସେ କଣ ପତିଙ୍କ ପରାଜୟ ସ୍ୱୀକାର କରିବେ ? ସ୍ୱୀକାର କରିବାର ଅର୍ଥ ହେଲା ପତିଙ୍କୁ ହରାଇବା । ପତିହାରିଲେ ଗୃହତ୍ୟାଗ ପୂର୍ବକ ସନ୍ୟାସୀ ହେବେ ।

ସାଧ୍ୱୀ ଉଭୟଭାରତୀ ତାଙ୍କ ନାମର ସାର୍ଥକତା ପ୍ରତିପାଦନ କଲେ । ସରସ୍ୱତୀଙ୍କ ସଦୃଶ ନିଜର ସତ୍ତ୍ୱଗୁଣର ପରିଚୟ ଦେଇ ସତ୍ୟକୁ ସ୍ୱୀକାର ପୂର୍ବକ ନିର୍ଣ୍ଣାୟକ ଶୁଣାଇଲେ-

ଶାସ୍ତ୍ରାର୍ଥର ଉପସଂହାର ହେଲା ଓ ମୋର ପତି ପରାଜିତ ହୋଇଛନ୍ତି । ଭାରତୀଙ୍କ ନିର୍ଣ୍ଣୟରେ ଉପସ୍ଥିତ ପଣ୍ଡିତ ଓ ଦର୍ଶକଗଣ ସ୍ତମ୍ଭୀଭୂତ ହୋଇଗଲେ ଓ ତାଙ୍କର ନୈତିକ ବଳର ପ୍ରଶଂସା କଲେ ।

ତେବେ ମଣ୍ଡନ କହିଲେ- ଯଦ୍ୟପି ମୁଁ ଶାସ୍ତ୍ରାର୍ଥରେ ପରାଜିତ ହୋଇଛି ତଥାପି ମୋର ଏକ ଜିଜ୍ଞାସା ରହିଛି ଯେ ମୀମାଂସା ଦର୍ଶନରେ ମହାମୁନୀ ଜୈମିନୀ ଲେଖିଛନ୍ତି- ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାତ୍ ଆନର୍ଥକ୍ୟମ୍ ଅତଦର୍ଥାନାମ୍- ଏହି ସୂତ୍ରର ତାତ୍ପର୍ଯ୍ୟ କଣ ? କାରଣ ଏହାର ଅର୍ଥ ଅନୁସାରେ ହୋମ-ଯାଗ-କ୍ରିୟା ହିଁ ବେଦର ପ୍ରତିପାଦ୍ୟ ବିଷୟ ଅଟେ । ଯେଉଁ ବାକ୍ୟ ସମୁହର ତାତ୍ପର୍ଯ୍ୟ କର୍ମରେ ନାହିଁ, ସେସବୁ ନିରର୍ଥକ ଅଟନ୍ତି ଅଥବା ଅର୍ଥବାଦ ମାତ୍ର ଅଟନ୍ତି । ଏହା ଦ୍ୱାରା ପ୍ରତୀତ ହୁଏ ଯେ ବେଦ କର୍ମ ପ୍ରତିପାଦକ ଅଟନ୍ତି ।

ଏହାର ଉତ୍ତରରେ ଶଙ୍କର କହିଲେ- ଏହି ସୂତ୍ର କର୍ମକାଣ୍ଡର ପୋଷଣକାରୀ ଅଟେ । ମନୁଷ୍ୟର ଇଷ୍ଟସାଧନ ନିମିତ୍ତ କର୍ମ ହିଁ ଅପେକ୍ଷିତ ହୁଏ ନାହିଁ, ଅଧିକନ୍ତୁ ଜ୍ଞାନଦ୍ୱାରା ହିଁ ଇଷ୍ଟ ସିଦ୍ଧି ହୁଏ । ଉଦାହରଣ ସ୍ୱରୂପ କେହିଜଣେ ଅନ୍ଧାରରେ ରଜ୍ଜୁକୁ ଦେଖି ସର୍ପଜ୍ଞାନରେ ଭୟଭୀତ ହୋଇଉଠେ ମାତ୍ର ଆଲୋକ ଯେବେ ସେଠାରେ ଉପସ୍ଥିତ ହୁଏ ତେବେ ସେହି ଶଙ୍କା ଦୂରହୋଇ ରଜ୍ଜୁ ରଜ୍ଜୁ ଭୁଜଙ୍ଗ ଭୁଜଙ୍ଗ ଜ୍ଞାନ ପ୍ରକାଶ ପାଏ । ତେଣୁ ସେଠାରେ କର୍ମ କିମ୍ବା ପ୍ରବୃତ୍ତିର ଆବଶ୍ୟକତା ପଡେ ନାହିଁ । ବରଂ ଯଥାସ୍ଥିତ ବସ୍ତୁର ଜ୍ଞାନରେ ହିଁ ଦୁଃଖର ନିବୃତ୍ତି ଏବଂ ସୁଖର ପ୍ରାପ୍ତି ହୁଏ । ଏହିପରି ଉପନିଷଦର ସତ୍ୟଂ ଜ୍ଞାନମ୍ ଅନନ୍ତଂ ବ୍ରହ୍ମ, ଅହଂ ବ୍ରହ୍ମାସ୍ମି ଆଦି ବାକ୍ୟର ଜ୍ଞାନରେ ସାଂସାରିକ ସମସ୍ତ ଦୁଃଖର ନିବୃତ୍ତି ପରମାନନ୍ଦପ୍ରାପ୍ତି ତଥା ପରମାର୍ଥର ସିଦ୍ଧି ମଧ୍ୟ ହୋଇଥାଏ । ଏଠାରେ ମଧ୍ୟ ପ୍ରବୃତ୍ତି ଅଥବା କର୍ମର ଅପେକ୍ଷା ନଥାଏ ।

ଭଗବଦ୍‌ପାଦ ଶଙ୍କରଙ୍କ ଉତ୍ତରରେ ମଣ୍ଡନମିଶ୍ର ତଥାପି ସନ୍ଦେହ ପ୍ରକଟ କଲେ ଓ ନିଜର ମନ୍ତ୍ର ସିଦ୍ଧି ବଳରେ ବ୍ୟାସଦେବ ଓ ମହର୍ଷି ଜୈମିନୀଙ୍କୁ ଆହ୍ୱାନ କଲେ । ମହର୍ଷିଙ୍କ ଆଗମନରେ ତାଙ୍କୁ ଯଥାବିଧି ପୂଜାର୍ଚ୍ଚନା କରି ମଣ୍ଡନ ନିଜର ଜିଜ୍ଞାସା ଉପସ୍ଥାପନ କଲେ । ମହର୍ଷି କହିଲେ- ମଣ୍ଡନ ତୁମେ ଆଚାର୍ଯ୍ୟଙ୍କ ଉକ୍ତିରେ ସନ୍ଦେହ ପ୍ରକଟ କରନାହିଁ । ଶଙ୍କର ସାମାନ୍ୟ ବ୍ୟକ୍ତି ନୁହଁନ୍ତି । ସେ ଯାହା କହୁଛନ୍ତି ସେ ସମସ୍ତ ସତ୍ୟ । ଏହାହିଁ ଆମର ଅଭିମତ । ମହର୍ଷି ବ୍ୟାସ ମଧ୍ୟ ଜୈମିନୀଙ୍କ କଥାର ଅନୁମୋଦନ କଲେ । ମହର୍ଷି ଜୈମିନି କହିଲେ -ତୁମେ ଶ୍ରଦ୍ଧାପୂର୍ବକ ତାଙ୍କର ମତ ଗ୍ରହଣ କଲେ ତୁମର ସର୍ବାରୀଷ୍ଟ ସିଦ୍ଧି ହେବ । ଏହାପରେ ଋଷିଦ୍ୱୟ ଅନ୍ତର୍ଦ୍ଧାନ ହୋଇଗଲେ ।

ମୁନୀମାନେ ବିଦାୟ ନେବାପରେ ମଣ୍ଡନ କହିଲେ ଯତୀବର ମୋର ଆଉ ସନ୍ଦେହର ଅବକାଶ ନାହିଁ । ଆଜିଠାରୁ ମୁଁ ଆପଣଙ୍କ ଶିଷ୍ୟତ୍ୱ ସ୍ୱୀକାର କଲି । ଯଦି ଉପଯୁକ୍ତ ମନେକରନ୍ତି ତେବେ ମୋତେ ସନ୍ୟାସ ମନ୍ତ୍ରରେ ଦୀକ୍ଷିତ କରନ୍ତୁ । ଶଙ୍କର ଉତ୍ତର ଦେଲେ- ଆପଣ ସନ୍ୟାସର ଉତ୍ତମ ଅଧିକାରୀ ।ଆପଣ ସନ୍ୟାସ ଗ୍ରହଣ କଲେ ଲୋକମାନେ ସନ୍ୟାସର ମର୍ଯ୍ୟାଦା ବୁଝିବେ । ଜ୍ଞାନର ମଧ୍ୟ ଆପଣ ଅଦ୍ୱିତୀୟ । ଜ୍ଞାନହେଲେ ସନ୍ୟାସ ଆପଣାଛାଏଁ ଉପସ୍ଥିତ ହୁଏ । ଆପଣ ସନ୍ୟାସୀ ହେଲେ ବେଦାନ୍ତବାଦର ପ୍ରଚାର ପ୍ରସାର ସହଜରେ ହୋଇପାରିବ । ଏହାଦେଖି ମଣ୍ଡନଙ୍କ ପକ୍ଷର ଲୋକେ ଅତ୍ୟନ୍ତ ବିମର୍ଷ ହେଲେ ଓ କହିଲେ ଆଜିଠାରୁ ବେଦର କର୍ମକାଣ୍ଡ ଲୋପ ପାଇଲା ।

ଏ ପର୍ଯ୍ୟନ୍ତ ଦେବୀ ଉଭୟଭାରତୀ ଗମ୍ଭୀର ଭାବରେ ବସି ରହିଥିଲେ । ସେ ମଣ୍ଡନଙ୍କୁ କ୍ଷାନ୍ତ ହେବାର ନିର୍ଦ୍ଦେଶ ଦେଇ ଶଙ୍କରଙ୍କୁ ଲକ୍ଷ କରି କହିଲେ ଯତିରାଜ ଆପଣ ମୋ ସ୍ୱାମୀଙ୍କୁ ବର୍ତ୍ତମାନ ସନ୍ୟାସୀ କରିପାରିବେ ନାହିଁ । କାରଣ ତାଙ୍କର ସଂପୂର୍ଣ୍ଣ ପରାଜୟ ହୋଇନାହିଁ । ଆତ୍ମାର ଅର୍ଦ୍ଧେକ ପତ୍ନୀ । ମୁଁ ମୋ ସ୍ୱାମୀଙ୍କ ଆତ୍ମାର ଅର୍ଦ୍ଧଭାଗ । ଯେ ପର୍ଯ୍ୟନ୍ତ ମୁଁ ପରାଜିତ ନ ହୋଇଛି ସେ ପର୍ଯ୍ୟନ୍ତ ମୋ ସ୍ୱାମୀ ପରାଜିତ ନୁହଁନ୍ତି । ସୁତରାଂ ମୋ ସହ ଶାସ୍ତ୍ରାର୍ଥ କରି ମୋତେ ପରାସ୍ତ କରନ୍ତୁ ତତ୍‌ପରେ ସନ୍ୟାସ ଦୀକ୍ଷା ବିଷୟ ବିଚାର କରାହେବ । ଶଙ୍କର ସ୍ମିତହାସ୍ୟ କରି କହିଲେ- ମା,ପଣ୍ଡିତମାନେ କେବେହେଲେ ଅବଳାମାନଙ୍କ ସହିତ ବାଦ କରିବାକୁ ଇଛା କରନ୍ତି ନାହିଁ । ତେଣୁ ମୁଁ ଆପଣଙ୍କ ସହିତ ଶାସ୍ତ୍ରାର୍ଥ ପାଇଁ ଇଛା ପ୍ରକାଶ କରୁନାହିଁ । ତହୁଁ ଦେବୀ ଭାରତୀ କହିଲେ- ଯେ ଜଗତରେ ନିଜର ମତ ସ୍ଥାପନ କରିବାକୁ ଚାହେଁ ସେପରି ଜ୍ଞାନୀ ବ୍ୟକ୍ତିଙ୍କ ପକ୍ଷରେ ସମସ୍ତେ ସମତୁଲ୍ୟ । ପୁରାକାଳରେ ମହର୍ଷି ଯାଜ୍ଞବଲ୍ୟକ୍ୟ ଗାର୍ଗୀ ନାମ୍ନି ପ୍ରସିଦ୍ଧ ମହିଳାଙ୍କ ସହିତ ଶାସ୍ତ୍ରାର୍ଥ କରିଥିଲେ । ଏହା ବୃହଦାରଣ୍ୟକ ଉପନିଷଦରେ ରହିଛି । ରାଜର୍ଷି ଜନକ ସୁଲଭା ନାମ୍ନୀ କାମିନୀଙ୍କ ସହିତ ବାଦରେ ପ୍ରବୃତ୍ତ ହୋଇଥିଲେ । ତେଣୁ ଆପଣ କାମିନୀ ମାନଙ୍କ ସହିତ ଶାସ୍ତ୍ରୀୟ ବିଚାର ଅଶାସ୍ତ୍ରୀୟ ବୋଲି କହିପାରିବେ ନାହିଁ । ଭାରତୀଙ୍କର ଏ ଯୁକ୍ତି ଶୁଣି ଶଙ୍କର ତାଙ୍କ ସହିତ ବାଦ କରିବାକୁ ସମ୍ମତି ପ୍ରଦାନ କଲେ । ଶଙ୍କରଙ୍କ ସହିତ ବିଚାର ଆରମ୍ଭ ହେଲା । ଉଭୟଙ୍କର ବୁଦ୍ଧି ଚାତୁରୀ ଓ ବାକ୍ୟ ବିନ୍ୟାସର ନୈପୁଣ୍ୟ ଦର୍ଶନକରି ସଭାରେ ଉପସ୍ଥିତ ଥିବା ପଣ୍ଡିତମଣ୍ଡଳୀ ବିସ୍ମିତ ହୋଇଗଲେ । କିନ୍ତୁ ଶାସ୍ତ୍ରୀୟ ବିଚାରରେ ଶଙ୍କରଙ୍କୁ ପରାସ୍ତ କରିବା ଅସମ୍ଭବ ଜାଣି ଦେବୀଭାରତୀ କୂଟବୁଦ୍ଧି ପ୍ରୟୋଗ କଲେ । ମନେ ମନେ ଭାବିଲେ ଏତ ଆଜନ୍ମ

ବ୍ରହ୍ମଚାରୀ ଏ କାମ ଶାସ୍ତ୍ରରେ ଅନିପୁଣ ତେଣୁ ଶଙ୍କରଙ୍କୁ ସେହି ସମ୍ବନ୍ଧୀୟ ପ୍ରଶ୍ନ ପଚାରିଲେ ।

କହନ୍ତୁ- କାମର ଲକ୍ଷଣ କଣ ? ଏହାର କେତେକଳା ରହିଛି ?ଶରୀରର କେଉଁ ଅଙ୍ଗରେ କାମର ନିବାସ ରହିଛି ? କେଉଁ କେଉଁ କ୍ରିୟା ଦ୍ୱାରା ତାର ଆବିର୍ଭାବ ଓ ତିରୋଧାନ ହୁଏ ? ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷରେ ପୁରୁଷ ଏବଂ ନାରୀର ଶରୀରରେ କାମର ହ୍ରାସ ବୃଦ୍ଧି କିପରି ହୁଏ ? ନାରୀ କିପରି ପୁରୁଷ ଉପରେ କାମ କଳାର ବିସ୍ତାର କରେ ?

ଏ ସବୁ ପ୍ରଶ୍ନ ଶୁଣି ଶଙ୍କର ସ୍ତବଧ ହୋଇ ପଚାରିଲେ ମାତା । ଆପଣ ଶାସ୍ତ୍ରୀୟ କଥା ପଚାରନ୍ତୁ ମୁଁ ସନ୍ନ୍ୟାସୀ ମତେ ଏପରି ପ୍ରଶ୍ନ କରିବା କଣ ଆପଣଙ୍କର ସମିଚୀନ ହେଉଛି ?

ତହୁଁ ଦେବୀ ଭାରତୀ କହିଲେ- କାମଶାସ୍ତ୍ର କଣ ଶାସ୍ତ୍ର ନୁହେଁ ? ଆପଣ ସନ୍ୟାସୀ ହୋଇ ବାଦ କରିବା ପାଇଁ ଯେବେ ଇଚ୍ଛା କରୁଛନ୍ତି ତେବେ ମୋ ପ୍ରଶ୍ନର ଉତ୍ତର ନଦେବେ କାହିଁକି ? ଯେ ବେଦର ତାତ୍ପର୍ଯ୍ୟ ନିର୍ଣ୍ଣୟ କରୁଛନ୍ତି ସେ କଣ ସର୍ବଜ୍ଞ ନୁହଁନ୍ତି ? ସନ୍ୟାସୀ ହୋଇ ଆପଣ ଯଦି ସିଦ୍ଧିଲାଭ କରିଥାନ୍ତି ତେବେ ତ ଆପଣ ଜିତେନ୍ଦ୍ରିୟ । କାମ ବିଷୟକ କଥାରେ ଆପଣଙ୍କ ଚିତ୍ତ ବିକାର ହେବ କାହିଁକି ? ତେଣୁ ଆପଣଙ୍କୁ ଏ ପ୍ରଶ୍ନ ପଚାରିବାରେ ଭୁଲ କେଉଁଠି ?

ଏପରି ତର୍କପୂର୍ଣ୍ଣ ବାକ୍ୟଶୁଣି ଶଙ୍କର ନୀରବ ହୋଇଗଲେ । ଭାରତୀଙ୍କୁ କହିଲେ ଦେବୀ ମୁଁ ତର୍କରେ ପରାଜିତ ହୋଇନାହିଁ । ତୁମେ ସନ୍ୟାସୀଙ୍କୁ ଅପଦସ୍ତ କରନାହିଁ । ଏପରି ଭାବରେ ତୁମେ ବିଜୟୀ ବୋଲି ଭାବନାହିଁ ।

ତହୁଁ ଭାରତୀ କହିଲେ-ମୋର ପତି ଯାହାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବେ ସେ ସର୍ବଜ୍ଞ କି ନା ତାହା କଣ ମୁଁ ଥରେ ପରୀକ୍ଷା କରିବି ନାହିଁ ? ଜ୍ଞାନଲାଭ ହେଲେ ଇନ୍ଦ୍ରିୟଜୟୀ ଓ ସଂଯମୀ ହେବା କଥା । କାମଚର୍ଚ୍ଚାରେ ଯଦି ତାଙ୍କର ଚିତ୍ତବିକାର ଉପସ୍ଥିତ ହେବ ତେବେ ସେ ଗୁରୁହେବାର ଯୋଗ୍ୟ ବ୍ୟକ୍ତି ନୁହଁନ୍ତି । ଏ ପର୍ଯ୍ୟନ୍ତ ମଣ୍ଡନମିଶ୍ର ଚୁପ୍ ହୋଇ ବସିଥିଲେ । ସେ ଶଙ୍କରଙ୍କ ଅବସ୍ଥା ଦେଖି ତାଙ୍କ ପତ୍ନୀଙ୍କୁ କହିଲେ ଦେବୀ ଆପଣଙ୍କ ଠାରୁ ଏ ପ୍ରକାର ପ୍ରଶ୍ନର ଆଶା ନଥିଲା । ଜଣେ ସନ୍ୟାସୀଙ୍କୁ ଏପରି ପ୍ରଶ୍ନ କରିବା ଆପଣଙ୍କୁ ଶୋଭା ଦିଏ ନାହିଁ । ତହୁଁ ଭାରତୀ ମଣ୍ଡନଙ୍କ ମନୋଭାବଦେଖି ଉତ୍ତର ଦେଲେ ଆତ୍ମଜ୍ଞାନ ଦ୍ୱାରା କାମ କ୍ରୋଧ ଆଦିଙ୍କ ଉପରେ

ବିଜୟ ମିଳେ । ତେଣୁ ଯଦି କାମଶାସ୍ତ୍ରର ସମାଲୋଚନାରେ ଭଗବତ୍‌ପାଦଙ୍କର ଚିତ୍ତରେ ବିକାର ଉତ୍ପନ୍ନ ହୁଏ ତେବେ ବୁଝିବାକୁ ହେବ ଯେ ସେ ବର୍ତ୍ତମାନ ତତ୍ତ୍ୱ ଜ୍ଞାନରେ ପୂର୍ଣ୍ଣ ପ୍ରତିଷ୍ଠିତ ନୁହଁନ୍ତି । ତେଣୁ ଏ ସ୍ଥିତିରେ ସେ ଆପଣଙ୍କ ଗୁରୁ ହୋଇ ପାରିବେ ନାହିଁ । ମୁଁ ଚାହେଁ ଆପଣଙ୍କ ଗୁରୁ ଜଣେ ସର୍ବଜ୍ଞ ପୁରୁଷ ହୁଅନ୍ତୁ ।

ମଣ୍ଡନ ଚୁପ୍ ରହିଲେ । ଅନନ୍ତର ଶଙ୍କର କହିଲେ ମା, ବିଚାରର ନିୟମ ଅନୁସାରେ ମୁଁ ଆପଣଙ୍କ ନିକଟରୁ ମାସାଧିକ କାଳ ସମୟ ପ୍ରାର୍ଥନା କରୁଛି । (କେଉଁଠି କେଉଁଠି ଛଅମାସ ରହିଛି) ମୁଁ ସନ୍ୟାସୀ, ନଚେତ୍ ଆପଣଙ୍କ ପ୍ରଶ୍ନର ଉତ୍ତର ବୁଦ୍ଧି ପ୍ରଭାବରେ ପ୍ରଦାନ କରିଥାନ୍ତି । ଯତି ଧର୍ମନାଶ ହେବା ଭୟରେ ଏହି ମୁଖଦେଇ ଏଇ ଶାସ୍ତ୍ରର ତର୍ଜମା କରିପାରିବିନାହିଁ । କାମଚିନ୍ତା କଲେ ସନ୍ୟାସୀ ଧର୍ମରୁ ବିଚ୍ୟୁତ ହେବାକୁ ହୁଏ ।ଏହା ଶାସ୍ତ୍ରର ନିର୍ଦ୍ଦେଶ । ତେଣୁ ମୁଁ ପରକାୟ ପ୍ରବେଶ କରି ଗ୍ରନ୍ଥ ରଚନା ପୂର୍ବକ ଆପଣଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ କରିବି । ଦେବୀ ଭାରତୀ କହିଲେ ପରକାୟାରେ ପ୍ରବେଶ କରି ଏ କାର୍ଯ୍ୟ କଲେ ମଧ କାମଚିନ୍ତା ବଶତଃ ଆପଣଙ୍କୁ କଣ ଭ୍ରଷ୍ଟହେବାକୁ ପଡିବନାହିଁ ? ତହୁଁ ଶଙ୍କର ଉତ୍ତର ଦେଲେ ଜନନୀ-ପୂର୍ବଜନ୍ମର ଚଣ୍ଡାଳ ପରଜନ୍ମରେ ବ୍ରାହ୍ମଣକୁଳରେ ଜନ୍ମିଲେ ତା ବ୍ରାହ୍ମଣତ୍ୱର କଣ କୌଣସି ହାନି ହୁଏ ? ତେବେ ଦେବୀ ଭାରତୀ କହିଲେ ଆପଣ ଯଦି ମୋ ପ୍ରଶ୍ନର ଉତ୍ତର ଦେଇନପାରିବେ ତେବେ ତାଙ୍କୁ ଆପଣ ଗୃହତ୍ୟାଗୀ କରାଇ ପାରିବେ ନାହିଁ । ସେ ଆପଣଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଗୃହରେ ଅବସ୍ଥାନ କରିବେ । ଏଥିରେ ଶଙ୍କର ତଥାସ୍ତୁ କହି ସଭାସ୍ଥଳ ଛାଡି ଚାଲିଗଲେ । ସଭା ଭଙ୍ଗ ହେଲା ।

ତତ୍‌ପରେ ଶଙ୍କର ଶିଷ୍ୟମାନଙ୍କ ସହ ମାହେଷ୍ମତୀ ନଗର ପରିତ୍ୟାଗ ପୂର୍ବକ ପୂର୍ବଦିଗକୁ ଯାତ୍ରା କରି ଘୋର ଅରଣ୍ୟରେ ପ୍ରବେଶ କଲେ । ଅରଣ୍ୟରେ କିଛି ବାଟ ଯିବାପରେ ଦେଖିଲେ ଜଣେ ମୃତ ରାଜାଙ୍କୁ ତାଙ୍କର ଆତ୍ମୀୟ ସ୍ୱଜନମାନେ ସତ୍କାର କରିବା ନିମନ୍ତେ ଶ୍ମଶାନକୁ ଆଣିଛନ୍ତି । ତହୁଁ ଶଙ୍କର ପ୍ରଧାନଶିଷ୍ୟ ପଦ୍ମପାଦଙ୍କୁ ଆଦେଶ ଦେଲେ ଏହା ହିଁ ସୁବର୍ଣ୍ଣ ସୁଯୋଗ ତୁମେ ଏକ ଗୁହାର ଅନ୍ୱେଷଣ କର । ସେଠାରେ ମୁଁ ଏହି ଦେହ ତ୍ୟାଗ କରି ମୃତରାଜାଙ୍କ ଶରୀରରେ ପ୍ରବେଶ କରିବି । ତହୁଁ ପଦ୍ମପାଦ କହିଲେ ଗୁରୁଦେବ- ବିଷୟାନୁରାଗ ଅତି ଭୀଷଣ । ଅନେକ ସ୍ଥଳରେ ତାପସ ମାନଙ୍କର ବ୍ରତ ଭଂଗ ହୋଇଥାଏ । ଆପଣ ସମସ୍ତ ବିଷୟ ଚିନ୍ତା କରି ଯାହା ନିଷ୍ପତ୍ତି ନେବାକଥା ନିଅନ୍ତୁ ମାତ୍ର ଏତିକି ନିବେଦନ କେବେହେଲେ କର୍ତ୍ତବ୍ୟ ବିସ୍ମୃତ ହେବେନାହିଁ । ତହୁଁ ଗୁରୁଦେବ ଶଙ୍କର ଉତ୍ତର ଦେଲେ ତୁମେ ସତ୍ୟ କହିଛ,ମାତ୍ର ମନେରଖ ମୋର

ଶରୀରକୁ ଯତ୍ନରେ ରକ୍ଷା କରିବ । ଯେଉଁ ଯୋଗୀ ବିଷୟ ପଦାର୍ଥରେ ବୀରୋଗ ହୋଇ ଯାଇଛନ୍ତି, ବିଷୟ ତାଙ୍କର ମନକୁ ହରଣ କରିପାରିବ ନାହିଁ ମନର ସଂକଳ୍ପ ହିଁ ସମସ୍ତ କାମନାର ମୂଳକାରଣ । ଶ୍ରୀକୃଷ୍ଣଙ୍କର କିନ୍ତୁ ସଂକଳ୍ପ ନଥିବାରୁ ତାଙ୍କ ମନରେ କାମନାର ଉଦୟ ହୋଇପାରିନଥିଲା । ତେଣୁ ଗୋପୀମାନେ ତାଙ୍କର ଲୀଳାସଙ୍ଗୀ ହୋଇ ମଧ୍ୟ କୃଷ୍ଣଙ୍କ ଚିତ୍ତ ହରଣ କରିପାରିଲେ ନାହିଁ । ପରମାର୍ଥବିତ ବ୍ୟକ୍ତି କୌଣସି ପାପ ପୂର୍ଣ୍ୟରେ ଲିପ୍ତ ହୁଏ ନାହିଁ । ଏହି ଦେହରେ ଥାଇ କାମଶାସ୍ତ୍ରର ଅନୁଶୀଳନ କଲେ ମଧ୍ୟ ମୋର ଦୋଷ ହେବାର ସମ୍ଭାବନା ନଥିଲା । ମାତ୍ର ସାଧୁର ଶିଷ୍ଟାଚାର ରକ୍ଷା କରିବା ନିମିତ୍ତ ମୁଁ ଅନ୍ୟ ଶରୀରରେ ପ୍ରବେଶ କରିବାର ନିଷ୍ପତ୍ତି ନେଇଛି । ତେବେ ଶିଷ୍ୟମାନେ ଗୁମ୍ଫା ଠାବ କରି ଖବର ଦେବାରେ ଶଙ୍କର ସେଠାରେ ଧ୍ୟାନ ମୁଦ୍ରାରେ ଉପବେଶନ କରି ଦେହତ୍ୟାଗ କରିଦେଲେ ।

ମୃତରାଜା ଥିଲେ କାଶ୍ମୀର ରାଜ୍ୟର ରାଜା ଅମରୁକ । ଶଙ୍କର ସେହି ରାଜାଙ୍କ ମସ୍ତକ ରନ୍ଧ୍ରଦେଇ ପ୍ରବେଶ କରନ୍ତେ ମୃତ ଦେହରେ ଜୀବନ ସଂଚ୍ଚାର ହେଲା । ରାଜା ଜୀବନ ପାଇ ରାଜ୍ୟକୁ ଫେରିଲେ । ଏଥର ରାଜା ସୁଶାସନ ଦେଲେ ରାଜ୍ୟର ବହୁବିଧ ଉନ୍ନତି ସାଧନ କଲେ । ରାଜଅନ୍ତପୁରରେ ବଡ ନିର୍ଲିପ୍ତ ଭାବରେ ଚଳି ବିଳାସିନୀ କାମିନୀମାନଙ୍କ ଠାରୁ କାମତତ୍ତ୍ୱ ଶିକ୍ଷାକରିବା ସହିତ ବାତ୍ସାୟନଙ୍କ କାମଶାସ୍ତ୍ର ପଠନ କରି ଏକ ଅଭିନବ ଅର୍ଥଯୁକ୍ତ ଶାସ୍ତ୍ର ରଚନା କଲେ ।

ଏପରି ସମୟ ଅତିକ୍ରାନ୍ତ ହେବାରୁ ମନ୍ତ୍ରୀ ଓ ରାଣୀଙ୍କ ମନରେ ସନ୍ଦେହ ଜାତହେଲା । ରାଜାଙ୍କ ସୁଶାସନ ଓ ବୁଦ୍ଧିର ଚମତ୍କାରିତା ଦେଖି ସେମାନେ ଅନୁମାନ କଲେ ଯେ ସମ୍ଭବତଃ କେହିଯୋଗୀ ବିଶେଷ କାର୍ଯ୍ୟ ନିମନ୍ତେ ମୃତ ରାଜ ଶରୀରରେ ପ୍ରବେଶ କରିଛନ୍ତି । ତେଣୁ ମନ୍ତ୍ରୀଙ୍କ ଆଦେଶରେ ରାଜ୍ୟରେ ଯେ କୌଣସି ସ୍ଥାନରେ ପଡିରହିଥିବା ମୃତଦେହକୁ ସତ୍କାର କରିବା ନିମନ୍ତେ ଆଦେଶଦେଲେ ଓ ସୈନିକମାନେ ଏହା ସଙ୍ଗେ ସଙ୍ଗେ ପାଳନ କଲେ । ଏକଥା ଦେଖି ପ୍ରଧାନଶିଷ୍ୟ ପଦ୍ମପାଦ ଏକ ନାରୀବେଶ ହୋଇ ଏକ ନୃତ୍ୟଦଳର ମୁଖ୍ୟଭାବେ ସେହି ରାଜ୍ୟରେ ପ୍ରବେଶକରି ରାଜାଙ୍କ ଚିତ୍ତ ବିନୋଦନ ଉଦ୍ଦେଶ୍ୟରେ ରାଜପୁରରେ ନୃତ୍ୟ ପ୍ରଦର୍ଶନ କରି ରାଜାଙ୍କୁ ତାଙ୍କର କାର୍ଯ୍ୟ ସଂପର୍କରେ ମନେପକାଇଦେଲେ । ଛଦ୍ମବେଶୀ ନର୍ତ୍ତକୀଙ୍କୁ ତାଙ୍କ ନୃତ୍ୟରେ ମୁଗଧହୋଇ ରାଜା ରଚନା କରିଥିବା ପୁସ୍ତକ (ପୋଥି) ଉପହାର ସ୍ୱରୂପ ପ୍ରଦାନ କଲେ । ତତ୍‌ପରେ ଶଙ୍କର ରାଜଦେହ ତ୍ୟାଗ କରି ସ୍ୱ ଦେହରେ ପ୍ରବେଶ କରି ଜୀବନ୍ତ ହୋଇ ଉଠିଲେ ଓ ତତ୍‌କ୍ଷଣାତ୍ ଶିଷ୍ୟ ମଣ୍ଡଳୀଙ୍କ ସହ ମାହେଷ୍ମତୀ ନଗରୀରେ ପ୍ରବେଶ କରି ଦେବୀ

ଉଭୟ ଭାରତୀଙ୍କ ନିକଟରେ ଅବତୀର୍ଣ୍ଣ ହୋଇ ପ୍ରସ୍ତୁତ କରିଥିବା କାମଶାସ୍ତ୍ରର ପୋଥି ପ୍ରଦାନ କଲେ । ଦେବୀ ଭାରତୀ କହିଲେ- ଆଉ ଶାସ୍ତ୍ରାର୍ଥର ଆବଶ୍ୟକତା ନାହିଁ ଆପଣ ବିଜୟୀ ହୋଇଛନ୍ତି ।

ତହୁଁ ଦେବୀ ଭାରତୀ ଗୁରୁ ଶଙ୍କରଙ୍କୁ ପ୍ରଣାମ ପୂର୍ବକ ନିଜର ଦେହତ୍ୟାଗର ଅଭିପ୍ରାୟ ଜଣାଇଲେ ମାତ୍ର ଶଙ୍କର ତାଙ୍କୁ ଅନୁରୋଧ କରି କହିଲେ ମାତା ଆପଣ ସାକ୍ଷାତ୍ ସରସ୍ୱତୀ । ଏହି ଜଗତରେ ଲୋକଶିକ୍ଷା ପାଇଁ ଆପଣଙ୍କର ଆବଶ୍ୟକତା ରହିଛି । ଆପଣ ଦେହତ୍ୟାଗକଲେ ସଂସାରରୁ ବିଦ୍ୟା ଲୋପ ପାଇଯିବ । ଭାରତୀ ଚିନ୍ତାକଲେ ସ୍ୱାମୀ ସନ୍ୟାସ ନେଲେ ସ୍ତ୍ରୀକୁ ବୈଧବ୍ୟ ଭୋଗୀବାକୁ ହୁଏ । ମୋର ସ୍ୱାମୀ ସ୍ୱଚକ୍ଷୁରେ ମୋର ବୈଧବ୍ୟ ଦଶା ଦେଖିବେ ଏହା ଅତିଶୟ ଦୁଃଖଦାୟକ । ତେଣୁ ଦେହତ୍ୟାଗ କରିଦେବା ସବୁଠାରୁ ଶ୍ରେୟସ୍କର । ଶଙ୍କର ମାଙ୍କ ମନୋବ୍ୟଥା ବୁଝିପାରିକହିଲେ ଆପଣ ବାକ୍‌ର ଅଧିଷ୍ଠାତ୍ରୀ ଦେବୀ ଆପଣ ସେହି ନାମରେ ଶୃଙ୍ଗେରୀ ମଠରେ ଅବସ୍ଥାନ ପୂର୍ବକ ବିଦ୍ୟାଦାନରେ ବ୍ରତୀ ହୁଅନ୍ତୁ । ଦେବୀ ଭାରତୀ କହିଲେ- ହେଉ ମୁଁ ସେଠାରେ ଦୈବୀ ଶରୀରରେ ଅବସ୍ଥାନ କରି ଆପଣଙ୍କ ପ୍ରାର୍ଥନା ପୂରଣ କରିବି । ଆପଣ ସେଠାରେ ଶ୍ରୀଯନ୍ତ୍ର ସ୍ଥାପନ କରିବେ । ମୁଁ ସେଠାରେ ଶାରଦା ନାମରେ ବିରାଜିତ ହୋଇ ଆପଣଙ୍କ ଅଭୀଷ୍ଟ ପୂରଣ କରିବି । ତପ୍ରେ ଦେବୀ ଭାରତୀ ଯୋଗ ବଳରେ ଦେହତ୍ୟାଗ କଲେ ।

ଏହାପରେ ମଣ୍ଡନମିଶ୍ର ଦେବୀ ଭାରତୀଙ୍କ କ୍ରିୟାକର୍ମ ସମାପନ ପରେ ଯଥାବିଧି ସନ୍ୟାସ ଗ୍ରହଣ କଲେ ଓ ସନ୍ନ୍ୟାସ ଗ୍ରହଣପରେ ତାଙ୍କ ନାମ ସୁରେଶ୍ୱରାଚାର୍ଯ୍ୟ ନାମ ଧାରଣ କଲେ । ଗୁରୁଶଙ୍କର ସୁରେଶ୍ୱରଙ୍କୁ ତତ୍ତ୍ୱମସି ମହାବାକ୍ୟର ଉପଦେଶ ଦେଲେ । ସେ ଯେଉଁ ଶିକ୍ଷାଦେଲେ ତାହାର ସଂକଳନ ତତ୍ତ୍ୱୋପଦେଶ ନାମକ ଏକ କ୍ଷୁଦ୍ର ଗ୍ରନ୍ଥରେ ଉପଲବଧ ହୁଏ । ଶଙ୍କର ମଠସ୍ଥାପନା କରି ଶୃଙ୍ଗେରୀ (ସମ୍ଭବତଃ କାଞ୍ଚି) ପୀଠରେ ତାଙ୍କୁ ଶଙ୍କରାଚାର୍ଯ୍ୟ ଆସନରେ ଅଧିଷ୍ଠିତ କଲେ । ସେଠାରେ ଯଜୁର୍ବେଦକୁ ବେଦରୂପରେ ଓ ବୃହଦାରଣ୍ୟକ ଉପନିଷଦର ଅହଂ ବ୍ରହ୍ମାସ୍ମିକୁ ମହାବାକ୍ୟ ଭାବେ ଗ୍ରହଣ କରାଗଲା ।

ଭଗବଦପାଦ ଶଙ୍କର ଏକେଶ୍ୱର ବା ଅଦ୍ୱୈତବାଦର ପ୍ରବକ୍ତା । ତାଙ୍କ ପ୍ରଚରିତ ଅଦ୍ୱୈତ ଦର୍ଶନ ଏ ସୃଷ୍ଟିକୁ ବ୍ରହ୍ମର ପ୍ରସାରିତ ସତ୍ତା ରୂପେ ବିବେଚନା କରେ । ଯିଏ ବ୍ରହ୍ମର ସନ୍ଧାନୀ ସିଏ ସୃଷ୍ଟି ଓ ସଂହାର ସହିତ ସଂପର୍କ ଛିନ୍ନ କରିବା ଦରକାର । ଜୀବକୁ ବାନ୍ଧିରଖିଥିବା ଅବିଦ୍ୟା ବା ଅଜ୍ଞାନର ସମସ୍ତ ଜଟିଳତାରୁ ମୁକ୍ତ ନହେଲେ ବ୍ରହ୍ମୋପଲବଧି

ଅସମ୍ଭବ । ତାଙ୍କ ପ୍ରଚାରିତ ତତ୍ତ୍ୱ ଏକ ବହୁ ପ୍ରଚାରିତ ଶ୍ଳୋକରେ ପ୍ରତିଫଳିତ ଶ୍ଳୋକାର୍ଦ୍ଧେନ ପ୍ରବକ୍ଷାମୀ ଯଦୁ୍ୟକ୍ତଂ ଗ୍ରନ୍ଥ କୋଟିଭିଃ । ବ୍ରହ୍ମ ସତ୍ୟ ଜଗତ ମିଥ୍ୟା ଜୀବୋ ବହ୍ମୈବ ନା ପରଃ । ଅର୍ଥାତ୍ ବ୍ରହ୍ମ ସତ୍ୟ ପ୍ରତିଭାତ ଜଗତ ମିଥ୍ୟା ମାତ୍ର ଆତ୍ମା ବ୍ରହ୍ମଠାରୁ ଭିନ୍ନ ନୁହେଁ ।

ମାତ୍ର ବତିଶ ବର୍ଷ ବୟସରେ ଏହି ଅବତାର ପୁରୁଷଙ୍କର କେଦାରନାଥ ଠାରେ ମହାପ୍ରୟାଣ ଘଟିଥିଲା । ତାଙ୍କର ଶ୍ରେଷ୍ଠ ରଚନା ହେଲା ବ୍ରହ୍ମସୂତ୍ରର ଭାଷ୍ୟ, ଉପନିଷଦର ଭାଷ୍ୟ ଓ ଗୀତା ଭାଷ୍ୟ । କିନ୍ତୁ ମୋହମୁଦ୍‌ଗର ଗ୍ରନ୍ଥ ତାର ଲାଳିତ୍ୟ ଯୋଗୁ ଜନମାନସରେ ବହୁଳ ପ୍ରଚାରିତ । ଭାରତର ପ୍ରତ୍ୟେକ ପ୍ରଦେଶରେ ତାର ପଦ ହାସଲ ଆବୃତ୍ତି ସାଧାରଣରେ ଶୁଣିବାକୁ ମିଳେ ।

ନଳିନୀ ଦଳଗତ ଜଳମତିତରଳମ୍ ତଦ୍‌ବତଜୀବି ମତିଶୟ ଚପଳମ୍
ବିଦ୍ଧି ବ୍ୟାଧ୍ୟଭିମାନ ଗ୍ରସ୍ତଂ ଲୋକଂ ଶୋକହତଂ ଚ ସମସ୍ତମ୍ ॥
ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ମତେ ।



# ଯୁଧିଷ୍ଠିର ଓ ଧର୍ମବକଙ୍କ ସମ୍ବାଦ

ଯୁଧିଷ୍ଠିର ଓ ଧର୍ମବକଙ୍କ ସମ୍ବାଦ ମହାଭାରତର ବନପର୍ବରେ ଦେଖିବାକୁ ମିଳେ । ଓଡିଶାର ଆଦିକବି ସାରଳାଦାସ ତାଙ୍କ ରଚିତ ସାରଳା ମହାଭାରତର ବନପର୍ବରେ ମଧ୍ୟ ଏ ସମ୍ବାଦ ବିଷଦ ଭାବରେ ବର୍ଣ୍ଣନା କରିଛନ୍ତି । ପଶାଖେଳରେ ହାରି ପାଣ୍ଡବ ପାଞ୍ଚଭାଇ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତ ବାସକୁ ଖେଳର ସର୍ତ୍ତ ଅନୁସାରେ ବରଣ କରିନେଇ ଜଙ୍ଗଲରେ ବୁଲିଲେ । ଏହି ବନବାସ ସମୟରେ ପାଣ୍ଡବମାନେ ଅନେକ ଅଭିଜ୍ଞତା ଅର୍ଜନ କଲେ । ବାସ୍ତବରେ ତାହାଥିଲା ଏକ ତପସ୍ୟା । କେତେ ତୀର୍ଥସ୍ଥାନ, ସାଧୁସନ୍ଥଙ୍କ ଆଶ୍ରମ ସେ ବୁଲିଲେ । ସେତେବେଳେ ଲୋମଶ ଋଷି ଯୁଧିଷ୍ଠିରଙ୍କୁ କେତେକ ଉପଦେଶ ପ୍ରଦାନ କରିଥିଲେ ।

ଲୋମଶ ବୋଇଲେ ତାଙ୍କୁ ଅନେକ ପରମାର୍ଥ, ରାଜ୍ୟ ତେଜି ବନେ କିମ୍ପେ ବୁଲ ପଞ୍ଚଭ୍ରାଥ ।
ଧର୍ମର ନନ୍ଦନ ଯେ ମୁନୀଙ୍କି ବହୁତ କଲେ ପୂଜା, ଶୁଣି ମହାମୁନୀ ବଦୟନ୍ତି ଧର୍ମରାଜା ॥

ମହାମୁନୀ ଉପଦେଶ ଦେଇ କହିଲେ ଯେ ସମ୍ପଦ ଓ ବିପଦ ବୃକ୍ଷର ଛାଇ ଭଳି । ସୂର୍ଯ୍ୟଥିବା ଯାଏ ଏ ଗୋଡାଇଥାନ୍ତି । ସୂର୍ଯ୍ୟ ଅସ୍ତ ହୋଇଗଲେ ଏ ଛାଇ ଆଉ ରହେ ନାହିଁ । ମର୍ତ୍ତ୍ୟର ଲୋକେ କିନ୍ତୁ ଏ ଧନ ମୋର, ଏ ସମ୍ପଦ ମୋର, ବୋଲି ଦାବୀ କରିଥାନ୍ତି । ଏ ଧନ କିଏ ଅର୍ଜନ କରିଥିଲା ତାର ପତ୍ତା କେହି ପାଏନି ଅଜା କି ବାପ କିଏ ଅର୍ଜନ କରିଥିଲା ତାହା ଜଣାନାହିଁ କିନ୍ତୁ ତାର ଅଭାବରେ ସଭିଏଁ ଦୁଃଖୀ ହୋଇଥାନ୍ତି । ପ୍ରକୃତରେ ଧନ ସଂପଦ ବ୍ୟକ୍ତିର ନୁହେଁ , ଏହା ମନୁଷ୍ୟମାନଙ୍କ ପାଖକୁ ଆସିଥାଏ ତାର ଦେଖାଶୁଣା କରିବାକୁ, ତାକୁ ଜଗିବାକୁ, ସଂପଦ ପ୍ରକୃତରେ ଈଶ୍ୱରଙ୍କର ।

ଲୋମଶଙ୍କ ନିକଟରୁ ବିଦାୟ ନେଇ ଯୁଧିଷ୍ଠିର ପଞ୍ଚଭାତ୍ରା ଦ୍ୱାଦଶ ଋଷିଙ୍କୁ ଭେଟି ତାଙ୍କ ନିକଟରୁ ଆଶୀର୍ବାଦ ନେଲେ ଏବଂ ବାମଦେବ ନାମକ ବନରେ ପ୍ରବେଶ କଲେ । ସେଠାରେ ସେ କେଉଁଠି ହେଲେ ଜଳାଶୟ ନଦେଖି ଭାଇ ଭୀମସେନଙ୍କୁ ଜଳ ଆଣିବା ନିମନ୍ତେ ପ୍ରେରଣ କଲେ । ଜଳପାନ କରି ସେହିଠାରେ ସନ୍ଧ୍ୟା ପ୍ରାର୍ଥନା

ସାରିବାକୁ ଯୁଧିଷ୍ଠିର ମନ କରିଥିଲେ । ଭୀମସେନ ଜଙ୍ଗଲ ମଧ୍ୟରେ ବହୁବାଟ ଖୋଜାଖୋଜି କରି ପ୍ରାୟ ପନ୍ଦର କୋଶ ଦୂରରେ ଅନ୍ଧକ ନାମକ ଏକ ସରୋବର ଆବିଷ୍କାର କଲେ । ସେ ସରୋବର ବହୁତ ବିଶାଳ ଓ ଏକ ଯୋଜନ ପରିମିତ ଅଞ୍ଚଳରେ ପରିବ୍ୟାପ୍ତ । ତା ମଝିରେ ଏକ ବିରାଟ ଶିମିଳି ବୃକ୍ଷ ରହିଛି । ସେ ସୁରଭି ବୃକ୍ଷ ଉପରେ ଧବଳ ବର୍ଣ୍ଣର ଏକ ବଗପକ୍ଷୀ ବସିଥିବାର ଦେଖିଲେ । ସେ ବଗପକ୍ଷୀଙ୍କ କଣ୍ଠରୁ ଧର୍ମଶାସ୍ତ୍ର ଗାନ କରିବା ଶୁଣାଯାଉଥାଏ । ଭୀମସେନ ଜଙ୍ଗଲରେ ବୁଲିବୁଲି ତୃଷାର୍ତ୍ତ ଥିଲେ ଓ ଜଳପାନ କରିବାକୁ ଉଦ୍ୟତ ହୁଅନ୍ତେ ଧର୍ମବକ ତାକୁ ବାରଣ କରି କହିଲେ ହେ ବ୍ରାହ୍ମଣ ଏ ଗଂଗାର ଜଳପାନ ପୂର୍ବରୁ ମୋ ପ୍ରଶ୍ନର ଉତ୍ତର ଦିଅ । ଯଥାର୍ଥ ଉତ୍ତର ଦେଲେ ଜଳପାନ କରିପାର ନଚେତ୍ ତୁମର ମୃତ୍ୟୁ ହେବ । ଭୀମସେନ ତୃଷାର୍ତ୍ତଥିଲେ ତେଣୁ ସେ ଧର୍ମବକର ବାକ୍ୟ ନଶୁଣି ସରୋବରରେ ପଶି ପାଣି ପିଇଲେ । ପାଣି ପିଇବା ପରେ ସେ ଅନ୍ଧ ହୋଇଗଲେ ଓ ବିକଳରେ ହୁଡା ଉପରକୁ ଉଠି ଆସନ୍ତେ କଉଡି ହୋଇ ପଡି ପ୍ରାଣତ୍ୟାଗ କଲେ ।

ଭୀମସେନଙ୍କର ଫେରିବା ବହୁ ବିଳମ୍ବ ହେବାରୁ ରାଜା ଯୁଧିଷ୍ଠିର ଅର୍ଜୁନଙ୍କୁ ଭୀମଙ୍କୁ ଖୋଜିବା ନିମନ୍ତେ ପ୍ରେରଣ କଲେ । ଅର୍ଜୁନ ମଧ୍ୟ ବହୁ ପଥଶ୍ରମପରେ ସେହି ସରୋବର ନିକଟରେ ପହଞ୍ଚିଲେ ।

ଅର୍ଜୁନଙ୍କୁ ଦେଖି ଧର୍ମବକ କହଲେ –

ଧର୍ମବକ ବୋଇଲା ଆହୋ ଶୁଣସି ପୁରୁଷ
ପାଣି ନଖାଅ ଏଥି ଭିତରେ ନପଶ ॥
ଯେଜଳ ପିଅନ୍ତେଣ ବାବୁ ବେନିଚକ୍ଷୁ ଯାଇ ଫୁଟି
କୂଳରେ ଉଠିଗଲେ ନିଜପ୍ରାଣ ଯାଇଁ ତୁଟି ।

ମାତ୍ର ଅର୍ଜୁନ ମଧ୍ୟ ଧର୍ମବକଙ୍କ କଥା ଅମାନ୍ୟକରି ଜଳରେ ପଶି ଜଳପାନ କଲେ ଓ ଉପରକୁ ଉଠି ଆସନ୍ତେ ପ୍ରାଣ ତ୍ୟାଗ କଲେ । ପୁଷ୍କରିଣୀର ପୂର୍ବତଟରେ ଭୀମସେନ ଓ ଦକ୍ଷିଣ ତୀରରେ ବୀର ଅର୍ଜୁନ ପଡି ରହିଲେ ।

ଏହାପରେ ରାଜା ଯୁଧିଷ୍ଠିର ଭୀମ ଓ ଅର୍ଜୁନଙ୍କ ବାରତା ନପାଇ ନକୁଳ ଓ ପରେ ସହଦେବଙ୍କୁ ପଠାଇଲେ । ସେ ଦୁଇଭାଇ ମଧ୍ୟ ସମ ପରିସ୍ଥିତି ଓ ସମଦଶାଭୋଗୀ ମରିପଡିଲେ । ଚାରିଭାଇ ନ ଫେରେନ୍ତେ ନିଜେ ରାଜା ଯୁଧିଷ୍ଠିର ଦୌପଦ୍ରୀଙ୍କ ସହିତ ଭାଇମାନଙ୍କୁ ଖୋଜିଖୋଜି ସରୋବର ନିକଟରେ ପହଞ୍ଚିଲେ ଓ ଧର୍ମବକଙ୍କୁ ଭେଟିଲେ ।

ରାଜା ପାଣି ପିଇବାକୁ ମନ କରନ୍ତେ ଧର୍ମବକ ତାଙ୍କୁ ଅ ଗୋଳିଲେ ଓ ପ୍ରଶ୍ନର ଉତ୍ତର ଦେବାକୁ ଆହ୍ୱାନ କଲେ । ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ ଜଳପାନ କରିବାକୁ ସମ୍ମତି ଦେଲେ । ଏଥିରେ ରାଜା ଯୁଧିଷ୍ଠିର ସମ୍ମତ ହୋଇ ପ୍ରଶ୍ନ ଆହ୍ୱାନ କଲେ । ତହୁଁ ଧର୍ମବକ ପ୍ରଶ୍ନ ପଚାରିଲେ -

ଧର୍ମବକ - ହେ ମହାତ୍ମା ରାଜା କାହା ନିକଟରେ ନିଜର ବଶ୍ୟତା ସ୍ୱୀକାର କରେ ?

ଯୁଧିଷ୍ଠିର - ରାଜା ଧର୍ମ ନିକଟରେ ନିଜର ବଶ୍ୟତା ସ୍ୱୀକାର କରେ । ଅଧର୍ମ ତାକୁ ନଷ୍ଟ କରିଦିଏ ।

ଧର୍ମବକ - ଭଣ୍ଡାର ଓ ସଂସାର କେ ନାଶ କରେ ?

ଯୁଧିଷ୍ଠିର - ଅଧର୍ମ ଏବଂ କ୍ରୋଧ ଭଣ୍ଡାର ବା ସଂପତ୍ତି ନାଶ କରେ । ସଂପତ୍ତି ନାଶ ହେଲେ ସଂସାର ନାଶ ଯାଏ ।

ଧର୍ମବକ - ଜଗତରେ କାମଧେନୁ କିଏ ? ଫଳବତୀ କାମଧେନୁ ଦୁଷ୍ଟ ହେଲେ କି ଫଳ ମିଳେ ?

ଯୁଧିଷ୍ଠିର - କାମ ଦୁଗ୍ଧା ଧେନୁ ଯଦ୍ୟପି ହୋଇବ, ରାତ୍ରଦିବସ ଅହନିଶି ଦୁହୁଁଥିବ କିନ୍ତୁ ବିଦ୍ୟା କାମଧେନୁ ସଦୃଶ ଫଳବତୀ - ବିଦ୍ୟା କେବେ ଶେଷ ହୁଏ ନାହିଁ ।

ଧର୍ମବକ - ନଦୀ ଭିତରେ ଶ୍ରେଷ୍ଠ ବୈତରଣୀ ତାହାକୁ କିଏ ବନ୍ଦୀ କରିପାରେ ।

ଯୁଧିଷ୍ଠିର - ତୃଷ୍ଣା ହିଁ ବୈତରଣୀ ନଦୀ ଅଟେ । ଏହି ତୃଷ୍ଣାକୁ ବୈତରଣୀ ପରି ନଦୀ ମଧ ଶୀତଳ କରିପାରେନା । ବୈରାଗ୍ୟ ତୃଷ୍ଣାକୁ ଶୀତଳ କରିପାରେ ।

ଧର୍ମବକ - ବନସ୍ତ ଠାରୁ ବଡ କିଏ ?

ଯୁଧିଷ୍ଠିର - ଶାହାସ୍ର ବୋଲି କରିଣ ଯେବଣ ବାଟଗୋଟି, ପ୍ରାନ୍ତ କରି ନପାରିଲେ ସେହି ଗହନଟି । ଅର୍ଥାତ୍ ସାଧକ ସହସ୍ରାରକୁ ଭେଦ କରି ନ ପାରିଲେ ଜୀବନ କେବଳ ଗହନ ବନରେ ପରିଣତ ହୋଇଥାଏ । ଏହାର ଆଉ ଏକ ଅର୍ଥ -ଶାସ୍ତ୍ରକୁ ଭେଦକରି ନପାରିଲେ ଏହା ଗହନରେ ପରିଣତ ହୋଇଥାଏ ।

ଧର୍ମବକ - ପ୍ରବାସରେ ପୁରୁଷର ମିତ୍ର କିଏ ?

ଯୁଧିଷ୍ଠିର - ପୁରୁଷର ପ୍ରବାସରେ ମିତ୍ର ବିଦ୍ୟା ଅଟେ କାରଣ ବିଦ୍ୟା ରକ୍ଷା କରିପାରେ।

ଧର୍ମବକ - ଗୃହର ମିତ କିଏ ?

ଯୁଧିଷ୍ଠିର - ନିଜର ପତ୍ନୀ ସୁଲକ୍ଷଣୀ ଓ ଗୁଣବନ୍ତୀ ହେଲେ ସେ ଗୃହସ୍ଥର ମିତ୍ର ହୋଇଥାନ୍ତି ।

ଧର୍ମବକ - ରୋଗର ସଖା କିଏ ?

ଯୁଧିଷ୍ଠିର - ମହୋଷଧି ହେଉଛି ରୋଗ ବ୍ୟାଧିର ସଖା ।

ଧର୍ମବକ - ପ୍ରାଣ ଯିବାବେଳେ ଜୀବର ମଇତ୍ର କିଏ ବା ସାଥୀ କିଏ ?

ଯୁଧିଷ୍ଠିର - ଧର୍ମମତ ସମ୍ମତ କର୍ମଫଳ ମୃତ୍ୟୁସମୟରେ ମିତ୍ର ସଦୃଶ ସହାୟକ ହୋଇଥାଏ । ଜୀବ ଯିବାବେଳେ ଏକା ଗୋବିନ୍ଦ ସାରଥୀ ।

ଧର୍ମବକ - ବିପଦ ପଡିଲେ କିଏ ସହାୟ ହୋଇଥାନ୍ତି ।

ଯୁଧିଷ୍ଠିର - ଦୁର୍ଗାମାତାଙ୍କ ନାମ ସ୍ମରମ କଲେ ସମସ୍ତ ବିପଦରୁ ରକ୍ଷା ମିଳେ

ଧର୍ମବକ - ଜୀବନରେ ପ୍ରମାଦ ଆସିଲେ କିଏ ରକ୍ଷାକବଚ ସାଜିଥାଏ ?

ଯୁଧିଷ୍ଠିର - ଧର୍ମବଳ ଥିଲେ ମନୁଷ୍ୟକୁ ପ୍ରମାଦରୁ ମୁକ୍ତି ମିଳେ ।

ଧର୍ମବକ - ଆକାଶ ମଣ୍ଡଳର ପରିସୀମା କେତେ ?

ଯୁଧିଷ୍ଠିର - ଶୁଣ ହୋ ମହା ତମା –ଚତୁର ଅଙ୍ଗୁଳଆକାଶ । ଅର୍ଥାତ୍ ଚାରି ଅନ୍ତଃକରଣ ମନବୁଦ୍ଧି,ଚିତ୍ତ, ଅହଂକାର ।

ଧର୍ମବକ - ପୃଥିବୀ କେତେ ପାଦ ଅଟେ ?

ଯୁଧିଷ୍ଠିର - ପୃଥିବୀ ଦୁଇପାଦ ବିଶିଷ୍ଟ - ଜନ୍ମ ଓ ମୃତ୍ୟୁ

ଧର୍ମବକ - ଷଡଋତୁ ମଧ୍ୟରେ କେତେ ଧାରା ବର୍ଷାହୁଏ ?

ଯୁଧିଷ୍ଠିର - ପୃଥିବୀରେ ନବଧାରାରେ ବୃଷ୍ଟି ହୁଏ ।

ଧର୍ମବକ - ଆକାଶରେ କେତୋଟି ତାରା ଉଦିତ ହୁଅନ୍ତି ।

ଯୁଧିଷ୍ଠିର - ଆକାଶରେ ଦୁଇଗୋଟି ତାରକା ଉଦୟ ହୋଇ ଅସ୍ତ ଯାନ୍ତି –ସୂର୍ଯ୍ୟ ଓ ଚନ୍ଦ୍ର ।

ଧର୍ମବକ - ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କେତୋଟି ଦ୍ୱାର ଅଛି ?

ଯୁଧିଷ୍ଠିର - ସଚରାଚରରେ ଦଶ ଗୋଟି ଦ୍ୱାର ରହିଛି । (ଦୁଇକାନ, ଦୁଇ ଆଖି, ଦୁଇ ନାକପୁଡା, ପାଟି ମଳମୂତ୍ର ଦ୍ୱାର ଓ ସହସ୍ରାର) । ଏଥିରୁ ନବଦ୍ୱାର ଉନ୍ମୁକ୍ତ ଓ ଗୋଟିଏ ଦ୍ୱାର ଗୋପ୍ୟ ହୋଇ ରହିଛି ।

ଧର୍ମବକ - ସତ୍ତ୍ୱ ରଜତମ କେଉଁ ଭୁବନରେ ବିଦ୍ୟମାନ ?

ଯୁଧିଷ୍ଠିର - ରଜୋଗୁଣ ଜାତ ବ୍ରହ୍ମା, ସେ ଆକାଶ ମଣ୍ଡଳରେ ସେବା କରନ୍ତି, ସତ୍ତ୍ୱ ଗୁଣରୁ ବିଷ୍ଣୁ ଜାତ ଓ ସେ ପାତାଳ ଭୁବନର ରକ୍ଷାକର୍ତ୍ତା, ତମୋଗୁଣରୁ ରୁଦ୍ରଜାତ ଓ ସେ ମର୍ତ୍ତମଣ୍ଡଳର ସେବା କରନ୍ତି । ଏମାନେ ତିନିକାଳରେ ବ୍ରହ୍ମ କର୍ମ ସଂପାଦନ କରନ୍ତି । ପ୍ରାତଃ କାଳରେ ବ୍ରହ୍ମା । ମଧ୍ୟକାଳରେ ବାସୁଦେବ ଓ ସନ୍ଧ୍ୟାକାଳରେ ସଦାଶିବ କର୍ମ ସଂପାଦନ କରନ୍ତି ।

ଧର୍ମବକ - ପଞ୍ଚ ମହାଭୂତ କାହାକୁ କାହାକୁ କୁହାଯାଏ ?

ଯୁଧିଷ୍ଠିର - ପୃଥିବୀ-ଭୂମି, ଆପ-ଜଳ, ତେଜ-ଅଗ୍ନି (ଚନ୍ଦ୍ର ସୂର୍ଯ୍ୟ) ବାୟୁ (ପବନ) ଓ ଆକାଶ / ଯୁଝେଷ୍ଟି ବୋଇଲେ ଯେ ପଞ୍ଚ ପଞ୍ଚାଶ ବୋଲାଇ, ପାଖୁଡା ମଧ କେଶର ଆବୋରନ୍ତି ଥାଇ ।

ଧର୍ମବକ - କାଳ ପୁରୁଷ କିଏ ? ତାର ପିତାମାତା କିଏ ? ସେ କେଉଁଠାରେ ରହେ ?

ଯୁଧିଷ୍ଠିର - ଅକ୍ଷୟ, ଅବ୍ୟୟ, ଅବିକାର ଅଣାକାର ସେ କାଳପୁରୁଷ । ନାସିକା ଚକ୍ଷୁ ମଧ୍ୟସ୍ଥ ତ୍ରିବେଣୀ ସଂଗମରେ ତାରବାସ । ସେ ପୁରୁଷର ଶିର ଆକାଶରେ, ହୃଦୟରେ ମଧ ଅଂଶ ଓ ପାଦ ପାତାଳରେ ଅବସ୍ଥିତ ।

ଧର୍ମବକ - ସଂସାରରେ ମନୁଷ୍ୟମାନେ କେଉଁଥିପାଇଁ ଜାଣିଶୁଣି ବାଟବଣା ହେଉଛନ୍ତି ? ଅର୍ଥାତ୍ ଏଠାରେ ସର୍ବାଶ୍ଚର୍ଯ୍ୟ କଣ ?

ଯୁଧିଷ୍ଠିର - ମନୁଷ୍ୟମାନେ ଜାଣୁଛନ୍ତି ଯେ ଜନ୍ମହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ତାହା ସତ୍ତ୍ୱେ ସେମାନେ ସଂସାରରେ ସବୁଦିନ ବଞ୍ଚି ରହିବାକୁ ଅଦମ୍ୟ ଚେଷ୍ଟା କରୁଛନ୍ତି । ଏହାଠାରୁ ଆଶ୍ଚର୍ଯ୍ୟ ଜିନିଷ ଆଉ କିଛି ନାହିଁ ।

ଯୁଧିଷ୍ଠିରଙ୍କଠାରୁ ଏ ସମସ୍ତ ଯଥାର୍ଥ ଉତ୍ତର ପାଇବାପରେ ଧର୍ମବକ ଯୁଧିଷ୍ଠିରଙ୍କୁ ସରୋବର ମଧ୍ୟର ଜଳପାନ କରିବା ନିମନ୍ତେ ଅନୁମତି ପ୍ରଦାନ କଲେ । ଜଳପାନ କରିବାପରେ ଭାଇ ମାନଙ୍କ ଦୁର୍ଦ୍ଦଶା ଦେଖି ଯୁଧିଷ୍ଠିର ବିକଳ ହୁଅନ୍ତେ ଧର୍ମବକ କହିଲେ ତୁମର ଚାରିଭାଇ ସରୋବରର ଚାରିକୂଳରେ ମରିପଡିଛନ୍ତି ସେଥିରୁ ଯାହାକୁ ଜଣେ ହେଲେ ମୁଁ ଜୀବନ ଦାନ ଦେଇପାରେ । ତୁମେ କାହାକୁ ନେବ କୁହ ।

ଧର୍ମବକଙ୍କଠାରୁ ଯୁଧିଷ୍ଠିର ଏହି କଥା ଶୁଣି ସାନଭାଇ ନକୁଳଙ୍କୁ ଜୀବିତ ଅବସ୍ଥାରେ ପାଇବା ପାଇଁ ପ୍ରାର୍ଥନା କଲେ । ଏଥିରେ ଆଶ୍ଚର୍ଯ୍ୟ ହୋଇ ଧର୍ମବକ ପ୍ରଶ୍ନ କଲେ - ଏମାନଙ୍କ ମଧ୍ୟରେ ଯୋଦ୍ଧା ଧନୁର୍ଦ୍ଧର ହେଲେ ଅର୍ଜୁନ । ସେ ଏକାକୀ ତୁମକୁ ଯୁଦ୍ଧରେ

ବିଜୟ ପ୍ରଦାନ କରିପାରିବେ। ମହାବଳଶାଳୀ ଭୀମସେନ ବାଉନଭାର ଗଦା ବହନକାରୀ,ତୁମକୁ ଶତ୍ରୁମାନଙ୍କ କବଳରୁ ରକ୍ଷା କରିପାରିବେ । ସେମାନଙ୍କ ଜୀବନ ତୁମେ ପ୍ରାର୍ଥନା ନକରି ନକୁଳକୁ ମାଗିଲ କାହିଁକି ? ଏହାର ଉତ୍ତରରେ ଯୁଧିଷ୍ଠିର କହିଲେ-ଏକପିତା ତଥା ଦୁଇଜଣ ମା'ଙ୍କର ଆମେ ପାଞ୍ଚ ସନ୍ତାନ । ମାତା କୁନ୍ତୀଙ୍କର ତିନି ସନ୍ତାନ ମଧ୍ୟରୁ ମୁଁ ଜୀବିତ । ଦ୍ୱିତୀୟମାତା ମାଦ୍ରୀଙ୍କର ଏ ଦୁଇପୁତ୍ର ନକୁଳ ଓ ସହଦେବଙ୍କ ମଧ୍ୟରୁ ନକୁଳ ଜ୍ୟେଷ୍ଠ । ଆମେ ଦୁଇଜଣ ବଂଚିରହିଲେ ତିଳତର୍ପଣ କରି ଦୁଇମାତାଙ୍କୁ ତଥା ପିତୃପୁରୁଷଙ୍କୁ ପିଣ୍ଡଦାନ କରିପାରିବୁ । ଯୁଦ୍ଧରେ ଜିତିବା ମୋର ଲକ୍ଷ୍ୟ ନୁହେଁ । ଯଦି ମୋ ପ୍ରତିଦୟା କରୁଛନ୍ତି ତେବେ ସେହି ଭାଇ ନକୁଳକୁ ଜୀବନ ଦାନ କରନ୍ତୁ ।

ଏପରି ବିଚାର ଶୁଣି ଧର୍ମବକ ପ୍ରୀତହେଲେ ଓ ଯୁଧିଷ୍ଠିରଙ୍କୁ ସେ ନିଜର ସ୍ୱରୂପ ପ୍ରଦର୍ଶନ କଲେ । ସେ ଥିଲେ ଧର୍ମଦେବ । ତତ୍‌ପରେ ସେ ଯୁଧିଷ୍ଠିରଙ୍କ ସମସ୍ତ ଚାରିଭାଇଙ୍କୁ ଜୀବନଦାନ ଦେଇ କହିଲେ ହେ ଧର୍ମରାଜ ଯୁଧିଷ୍ଠିର ତୁମର ବାରବର୍ଷ ବନବାସ ସମାପ୍ତ ହେବାକୁ ଯାଉଛି । ଏହାପରେ ତୁମେ ଏକବର୍ଷ ଅଜ୍ଞାତବାସରେ ରହିବ । ମୁଁ ତୁମକୁ ଆଶୀର୍ବାଦ କରୁଛି ତୁମର ଅଜ୍ଞାତବାସ ପର୍ବ ଅଚିରେ ସମାହିତ ହେବ ଓ କେହିହେଲେ ତୁମକୁ ଚିହ୍ନିପାରିବେ ନାହିଁ । ଏହା କହି ଧର୍ମଦେବ ସେଠାରୁ ଅନ୍ତର୍ହିତ ହେଲେ ।



## ସୁଶାନ୍ତ କୁମାର ପଣ୍ଡାଙ୍କ କଲମରୁ.....

# ଅଭିମତ

ସୁଶାନ୍ତ କୁମାର ପଣ୍ଡା ସାହିତ୍ୟରେ ଅଧ୍ୟାପକ ଥିଲେ । ସେ ମୋର ସାନଭାଇ ସୁବାସର ସହପାଠୀ । ସୁଶାନ୍ତ ବାବୁ ଅବସର ଗ୍ରହଣ ପରେ ଚୁପ୍ ହୋଇ ବସିରହିନାହାନ୍ତି,ଅଧ୍ୟୟନ ଓ ଅଧ୍ୟାପନା ଜାରି ରଖିଛନ୍ତି । ଲୋକଶିକ୍ଷା ନିମନ୍ତେ ସେ ବହୁ ବହି ଲେଖି ସାରିଲେଣି ଓ ସେଗୁଡିକୁ ସେ ଅନୁରାଗୀମାନଙ୍କୁ ଦେଇ ତାକୁ ପଢିବା ସହ କାର୍ଯ୍ୟରେ ଲଗାଇବା ପାଇଁ ଅନୁରୋଧ କରୁଛନ୍ତି । ତାଙ୍କ ଲିଖିତ ସମର୍ପଣ ସୁମନ ଶତକ, ଭକ୍ତିସୁମନ ଶତକ, ଦିବ୍ୟସରଣୀ ଓ ଅମୃତବିନ୍ଦୁ ପୁସ୍ତକ ସୁବାସ ହାତରେ ସେ ମୋ ପାଖକୁ ପଠାଇଥିଲେ । ସେ ବହିଗୁଡିକ ପଢି ମୁଁ ବହୁତ ଖୁସି ହୋଇଥିଲି ।

ସୁବାସ ଓ ସୁଶାନ୍ତ ବାବୁ ଦୁହେଁ ଅନ୍ତରଙ୍ଗ ବନ୍ଧୁ । ରେଭେନ୍ସା କଲେଜରେ ଏକାଠି ପାଠ ପଢୁଥିଲେ । ସୁଶାନ୍ତ ବାବୁଙ୍କ ମାମୁଁଘର ସୁବାସଙ୍କ ଗାଁରେ ।ପିଲାଦିନେ କିଛି କାଳ ପାଇଁ ସୁଶାନ୍ତବାବୁ ମାମୁଁ ଘରେ ରହି ସ୍କୁଲରେ ପଢୁଥିଲେ । ପୁଣି ଦୁହେଁ ଯାକ ଗୁରୁଗ୍ରହଣ କରିଛନ୍ତି । ଚିନ୍ମୟ ମିଶନ ସହିତ ସେ ଦୁହେଁ ବହୁଦିନରୁ ଯୁକ୍ତ ହୋଇ ରହିଛନ୍ତି । ପରମପୂଜ୍ୟ ଗୁରୁ ସ୍ୱାମୀ ଚିନ୍ମୟାନନ୍ଦଙ୍କ ଲିଖିତ ଶାସ୍ତ୍ର ପୁସ୍ତକ ଅଧ୍ୟୟନ କରିଛନ୍ତି । ବର୍ତ୍ତମାନର ପୁସ୍ତକ ସେମିତି କିଛି ଶାସ୍ତ୍ର ଆଲୋଚନା ଉପରେ ଲିଖିତ । ଶାସ୍ତ୍ର ବଡ ଗହନ, ତାକୁ ଠିକ୍‌ଭାବରେ ବୁଝି ନପାରିଲେ ଏହା ମନରେ ଭ୍ରମ ସୃଷ୍ଟିକରେ । ତେଣୁ ଶାସ୍ତ୍ର ବାଖ୍ୟା ପାଇଁ ଉପଯୁକ୍ତ ଗୁରୁଙ୍କର ଆବଶ୍ୟକତା ରହିଛି । ଶାସ୍ତ୍ର ହେଉଛି ମାତା ସଦୃଶ । ସେ ପାଳନ କରେ । ପିତା ହେଉଛନ୍ତି ଗୁରୁ ସେ ଶାସ୍ତ୍ରର ସମ୍ୟକ ଅର୍ଥ ପ୍ରଦାନ କରି ଶାସ୍ତ୍ରର ଗହନ ଅରଣ୍ୟ ଭିତରୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କରନ୍ତି ।

ଆଜିର ଯୁବସମାଜ ଆମ ଦେଶର ଐତିହ୍ୟ, ପରମ୍ପରା, ଚଳଣୀ ସବୁରୁ ଧୀରେ ଧୀରେ ଦୂରେଇ ଯାଉଛନ୍ତି । ଗାଁ ଗାଁରେ ସନ୍ଧ୍ୟାବେଳେ ଆଈ ମାକୁ ଘେରିବସି ପିଲାଏ ରାମାୟଣ, ମହାଭାରତର କାହାଣୀ ଶୁଣୁନାହାନ୍ତି । ଭାଗବତ ଟୁଙ୍ଗୀର ଭାଗବତ ଗାନ ପ୍ରାୟ ଶୁଭୁନାହିଁ । ସମସ୍ତେ ସନ୍ଧ୍ୟାରେ ଟେଲିଭିଜନ ଆଗରେ ରୁଣ୍ଡ । ଏପରି ସମୟରେ ଆମର ଶାସ୍ତ୍ର ପୁରାଣ ପିଲାଏ ଜାଣିବେ କେମିତି ? ସୁଶାନ୍ତ ବାବୁ ସେ ଦିଗରେ କାମ କରିବା ପାଇଁ ବାହାରିଛନ୍ତି । ଭାରତର ପରମ୍ପରାକୁ ସରଳଭାଷାରେ ଲେଖି ଶିକ୍ଷାଦେବା

ନିମନ୍ତେ ସେ ଅଣ୍ଟାଭିଡି ବାହାରିଛନ୍ତି । ଶୃଙ୍ଖଳା ମନୁଷ୍ୟ ଜୀବନପାଇଁ ନିହାତି ଦରକାର । ଚାରି ଆଶ୍ରମ ଭିତରୁ ବ୍ରହ୍ମଚର୍ଯ୍ୟ ଆଶ୍ରମ ଓ ଗୃହସ୍ଥ ଆଶ୍ରମରେ ଶୃଙ୍ଖଳା ବହୁତ ଜରୁରୀ । ଏ ଦୁଇଟି ଆଶ୍ରମ ମନୁଷ୍ୟର ପରବର୍ତ୍ତୀ ଆଶ୍ରମ,ବାନପ୍ରସ୍ଥ ଓ ସନ୍ୟାସରେ ବହୁଭାବରେ ପ୍ରଭାବ ପକାଇଥାଏ । ତେଣୁ ଶାସ୍ତ୍ରାନୁମୋଦିତ ଦୈନିକ ଜୀବନଚର୍ଯ୍ୟା ଦ୍ୱାରା ମନୁଷ୍ୟ ନିତି ନିଷ୍ଠ ହୋଇ ଈଶ୍ୱର ଆରାଧନାରେ ବ୍ରତୀ ହୁଏ ।

କର୍ମର ଗତି ବଡଗହନ । ମନୁଷ୍ୟର ସର୍ବବିଧ ଉପକାର ପାଇଁ କର୍ମନିହାତି ଦରକାର । କର୍ମ କରି ଶତେକ ବର୍ଷ ବଞ୍ଚିରହ ବୋଲି ଉପନିଷଦ ମାନବ ସମାଜ ନିକଟରୁ ଆଶା ରଖିଛି । କର୍ମ ଓ କର୍ମଫଳ ଅଙ୍ଗାଙ୍ଗୀ ଭାବେ ଜଡିତ । କର୍ମ ଯେପରି, ଫଳ ସେପରି ମିଳିଥାଏ । କେହି କେହି କର୍ମଫଳକୁ ଭିନ୍ନ ଭାବରେ ତର୍ଜମା କରିଥାନ୍ତି । ଉଦାହରଣ ସ୍ୱରୂପ- ମହାଦେବଙ୍କ ମନ୍ଦିର ବେଢାରେ କେହି ଜଣେ ନଡିଆଗଛ ଲଗାଉଛି । ଉଦ୍ଦେଶ୍ୟ ମହାଦେବଙ୍କ ଶିରରେ ପଇଡପାଣି ଓ ଭୋଗରେ ନାରିକେଳ ଲାଗିବ । ସେ ସଂସାରରୁ ଚାଲିଯିବାପରେ ମଧ୍ୟ ନଡିଆଗଛ ଫଳଦେବ ଓ ଦେବ କାର୍ଯ୍ୟରେ ତାହା ଲାଗିବ । ଏ ପୂଣ୍ୟ କର୍ମର ଫଳଭାଗୀ ହେବେ ସେ ବ୍ୟକ୍ତି ଯେ ନଡିଆଗଛ ଲଗାଇଛନ୍ତି ମାତ୍ର ଯଦି ଦିନେ ଏକ ନଡିଆ ଜଣେ ଲୋକର ମୁଣ୍ଡରେ ପଡି ସେ ଆଘାତ ପ୍ରାପ୍ତ ହୋଇ ମୃତ୍ୟୁବରଣ କରନ୍ତି ତେବେ ପାପ କଣ ଗଛ ଲଗାଇଥିବା ଲୋକ ଉପରକୁ ଯିବ ? ତାର ଉତ୍ତର ନିଶ୍ଚିତଭାବରେ ନା । କାରଣ ଗଛ ଲଗେଇଥିବା ଲୋକର ମନୋଭାବ ମଣିଷ ମାରିବା ନଥିଲା । ଦୁଃଖ ଦେବା ପାଇଁ ସେ କର୍ମ କରିନଥିଲା । ତେଣୁ ମଣିଷର କର୍ମ ପଛରେ ଥିବା ବାସନା ତାକୁ ପାପ କିମ୍ବା ପୂର୍ଣ୍ୟ ପ୍ରଦାନ କରିପାରେ । ପୁଣି ଏଠାରେ ପ୍ରଶ୍ନ କରାଯାଇପାରେ ଯେ ଯେଉଁ ଲୋକ ନଡିଆ ଆଘାତରେ ମଲା -ସେ କାହା ପାପରୁ ମଲା ? ଏଠାରେ କୁହାଯାଇପାରେ ତାର ପ୍ରାରବ୍ଧ । ତ୍ରିତାପ ବିଷୟରେ ଏଠାରେ ମନନ କରାଯାଇପାରେ । ସେହିପରି ଜଣେ ରାସ୍ତାରେ ଗୋଟାଏ ବଡଖାତ ଖୋଳିଛି,ଜଣକୁ ପକାଇମାରିବା ଉଦ୍ଦେଶ୍ୟରେ । ମାତ୍ର ଆଉଜଣେ ବ୍ୟକ୍ତି ତା ଭିତରେ ପଡିଗଲା ଓ ଗୋଟାଏ ଗାଡି ତା ଉପରଦେଇ ଚାଲିଗଲା । ଲୋକଟି ଗାତଭିତରେ ଥିବାରୁ ରକ୍ଷାପାଇଗଲା । ଏଠାରେ ଗାତଖୋଳିଥିବା ଲୋକ ପୂଣ୍ୟ ଅର୍ଜନ କରିବନାହିଁ । କାରଣ ତାର ମନୋଭାବ ଥିଲା ମଣିଷ ମାରିବା । ତେଣୁ କୁହାଯାଏ, ଗହନା କର୍ମଣୋ ଗତି । ସୁଶାନ୍ତବାବୁ ଶାସ୍ତ୍ରକୁ ସରଳ ମାତୃଭାଷାରେ ଲେଖି ଶାସ୍ତ୍ରରୁ ବହୁ ଉଦ୍ଧୃତିଦେଇ ବିଭିନ୍ନ କଥା ଉତ୍‌ଥାପନ କରିଛନ୍ତି ଯାହା ସ୍ୱାଗତଯୋଗ୍ୟ । ଯେ କର୍ମରେ ଅକର୍ମ ଦେଖେ ଓ ଅକର୍ମରେ କର୍ମ ଦେଖେ ସେ ଯଥାର୍ଥରେ କର୍ମଯୋଗୀ । ଫଳ ସେ ଆଶାକରେନା ମାତ୍ର ତାକୁ ଈଶ୍ୱର ଫଳ ଦିଅନ୍ତି ।

ଆଜିର ସମାଜ ଆଦର୍ଶ ଶିଶୁଚାହେଁ । ତେଣୁ ପିତାମାତା ନୂତନ ଶିଶୁକୁ ପୃଥିବୀକୁ ଆଣିବା ପୂର୍ବରୁ ଯଥେଷ୍ଟ ସାଧନା କରିବା ଦରକାର । ତାହା ଗୃହସ୍ଥାଶ୍ରମର ବିବାହ ସଂସ୍କାରଠାରୁ

ଆରମ୍ଭ ହୋଇଥାଏ । ଆଦର୍ଶ ଶିଶୁ, ସମସ୍ତେ ଋହୁଁଛନ୍ତି । ଆଦର୍ଶ ବୋହୂ ସମସ୍ତେ ଖୋଜୁଛନ୍ତି । ମାତ୍ର ଆଦର୍ଶ ପୁତ୍ର କନ୍ୟା କିଭଳି ସଂସାରକୁ ଆସିବେ ସେ ଦିଗରେ ପିତାମାତା ଯତ୍ନବାନ ହେଉନାହାନ୍ତି । ଏ ବଡ ବିଷମ ସମସ୍ୟା । ତେଣୁ ଶାସ୍ତ୍ରକୁ ପଢିଥିଲେ ସେଥିରୁ ଶିକ୍ଷା ପାଇ ତାକୁ ଜୀବନରେ ଉପଯୋଗ କରିପାରିବା । ସୁଶାନ୍ତ ବାବୁ ଏହି ଶିକ୍ଷା ଦେବାରେ ବ୍ରତୀ ହୋଇଛନ୍ତି ।

ଯଜ୍ଞ, ଦାନ ଏବଂ ତପ ଏହା ଜୀବନର ତିନୋଟି ବ୍ରତ । ଏ ତିନୋଟିକୁ ମନୁଷ୍ୟ କେତେବେଳେ ହେଲେ ତ୍ୟାଗ କରିବା ଉଚିତ୍ ନୁହେଁ । ଦାନ କହିଲେ ଆମେ କେବଳ ଧନ ଦାନକୁ ବୁଝୁ । ମାତ୍ର ତାହା ନୁହେଁ ।ଜଣେ ନିର୍ଦ୍ଧନୀ ବ୍ୟକ୍ତି, ଜଣେ ବୃଦ୍ଧ, ଜଣେ ଦିନମଜୁରିଆ ମଧ୍ୟ ଦାନ କରିପାରିବ । ସମୟ, ଶ୍ରମ, ବିଦ୍ୟା, ଜଣେ ଦାନ କରିପାରେ । ଦାନର ସ୍ୱରୂପ କିଭଳି ମହାନ୍ ତାହା ବର୍ଣ୍ଣନା କରିଛନ୍ତି ସୁଶାନ୍ତ ବାବୁ ।

ସର୍ବଶେଷରେ ପରିଣତ ବୟସରେ କିଭଳି ମନୁଷ୍ୟ ଶାନ୍ତି ଓ ସନ୍ତୋଷ ଲାଭ କରିପାରିବ ତାର ବହୁବିଧ ଉପାୟ ସେ ବର୍ଣ୍ଣନା କରିଛନ୍ତି । ଷାଠିଏ ବର୍ଷ ବୟସ ପରେ ଋକିରୀ କରୁଥିବା ବ୍ୟକ୍ତି ସାଧାରଣତଃ ଅବସର ନିଏ । ମାତ୍ର ଯେଉଁମାନେ ବ୍ୟବସାୟରେ ବା କୃଷିକର୍ମରେ ଅଛନ୍ତି ସେମାନେ ସ୍ୱତଃପ୍ରବୃତ୍ତ ହୋଇ ପିଲାମାନଙ୍କୁ ଏହାର ଦାୟିତ୍ୱ ଦେଇ ଈଶ୍ୱର ପ୍ରଣିଧାନରେ ବ୍ୟାପୃତ ହେବା ଉଚିତ୍ । କାରଣ ମୃତ୍ୟୁକୁ ଶେଷରେ ଭେଟିବାକୁ ହିଁ ହେବ । ବ୍ରହ୍ମଚର୍ଯ୍ୟ ଓ ଗାର୍ହସ୍ଥ୍ୟ ଜୀବନରେ ପାଳନ କରିଥିବା ଅଭ୍ୟାସ, ବୈରାଗ୍ୟ ଓ ଶରଣାଗତି ଶେଷ ଜୀବନରେ ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନରେ ପରିଣତ ହେବ ଯାହା ମାନବକୁ ପରିତୃପ୍ତି ଦେବ ।

ଶ୍ରୀ ପଣ୍ଡା ବହୁଶାସ୍ତ୍ରଦର୍ଶୀ । ପିଲାବେଳୁ ଏ ଯାବତ ସେ ଅଧ୍ୟୟନ ଓ ଅଧ୍ୟାପନରେ ନିଜକୁ ବ୍ୟାପୃତ କରିଛନ୍ତି । ତାଙ୍କର ଦୀର୍ଘଜୀବନ କାମନା ସହ ଏ ପୁସ୍ତକ ପାଠକ ମହଲରେ ଆଦୃତ ହେଉ ବୋଲି ଗୁରୁଦେବଙ୍କଠାରେ ପ୍ରାର୍ଥନା କରୁଛି ।

**ସତ୍ୟଭାମା ବିଶ୍ୱାଳ**

**ଅବସରପ୍ରାପ୍ତ ଶିକ୍ଷୟିତ୍ରୀ ଓ ସୁଲେଖିକା**

**ଭୁବନେଶ୍ୱର**

# ଧର୍ମଶାସ୍ତ୍ରାନୁମୋଦିତ ଦୈନିକ ଚର୍ଯ୍ୟା

ଭୌଗୋଳିକ ସ୍ଥିତି, ଜଳବାୟୁ, ପରିବେଶ ତଥା ରାଷ୍ଟ୍ରୀୟ ଆଇନ ବ୍ୟବସ୍ଥା ମନୁଷ୍ୟର ଜୀବନ ପ୍ରକ୍ରିୟାକୁ ପ୍ରଭାବିତ କରିଥାଏ । ଭାରତୀୟ ଋଷିଗଣ ଆମ ଦେଶର ତଥା ବିଶ୍ୱର ବିଭିନ୍ନ ଅବସ୍ଥା, ବୃତ୍ତି ଇତ୍ୟାଦିର ଊର୍ଦ୍ଧ୍ୱରେ ଯାହା ବିଶ୍ୱ କଲ୍ୟାଣକର, ପ୍ରାଣୀ ହିସାବରେ ସେହିପରି ଜୀବନଯାତ୍ରା, ଭାବନା ତଥା ପ୍ରାର୍ଥନା କରିବା ନିମିତ୍ତ ନିର୍ଦ୍ଦେଶ ପ୍ରଦାନ କରି ଅଛନ୍ତି । ସୁସ୍ଥ ବିଚାରଧାରାକୁ ଆତ୍ମସ୍ଥ କରିଦେବାର ଉପକ୍ରମ ଦୈନିକ ଚର୍ଯ୍ୟାରେ ହିଁ ନିହିତ । ପରିବାର ଠାରୁ ଆରମ୍ଭ କରି ସମାଜର ବିଭିନ୍ନ ସ୍ତରରେ ବହୁବିଧ ଦାୟିତ୍ୱରେ ଥିବା ବ୍ୟକ୍ତି ବିଶେଷ ନିଜର ଶିକ୍ଷା, ସଂସ୍କାର ଉଦାର ମନୋଭାବ ଦ୍ୱାରା ପରିଚାଳିତ ହୋଇଥିବାର ଲକ୍ଷ୍ୟ କରାଯାଏ ।

ପ୍ରାତଃକାଳରୁ ଶଯ୍ୟା ତ୍ୟାଗ କରିବା ଠାରୁ ଆରମ୍ଭ କରି ରାତ୍ରିରେ ଶଯ୍ୟାଗ୍ରହଣ କରିବା ପର୍ଯ୍ୟନ୍ତ ଦୈନିକ କାର୍ଯ୍ୟକ୍ରମ ପର୍ଯ୍ୟାପ୍ତ ମହତ୍ତ୍ୱ ରଖିଥାଏ । ଶାସ୍ତ୍ରରେ ଏ ସମସ୍ତ ବିଧାନ ସଦାଚାର ଅନ୍ତର୍ଗତ । କେହି ସଜ୍ଜନ ଅଧଘଣ୍ଟାଏ ରୁ ଘଣ୍ଟାଏ ଦେବାରାଧନା, ପୂଜା ପାଠ, ସମାଜସେବା ପରୋପକାର କାର୍ଯ୍ୟରେ ବ୍ୟତୀତ କରିଥାନ୍ତି । ଅବଶିଷ୍ଟ ସମୟ ବ୍ୟବହାରରେ ସ୍ୱେଚ୍ଛାଚାରୀ ହୋଇ କାର୍ଯ୍ୟ କରିବା, କାମ,କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ତଥା ଛନ୍ଦ, କପଟ, ଆତ୍ମପ୍ରଚାର, ଆତ୍ମପ୍ରତିଷ୍ଠା ଯୁକ୍ତି, ଅସତ୍ କାର୍ଯ୍ୟରେ ଲାଗିଯାଆନ୍ତି । ଯହିଁରେ ପାପ-ପୁଣ୍ୟ, ସୁଖ-ଦୁଃଖ ଭୋଗିବା ଅନିବାର୍ଯ୍ୟ ହୋଇପଡେ । ବାସ୍ତବ ସୁଖ ନିତ୍ୟ ସନାତନ ଓ ଏକରସ ଶାନ୍ତିରେ ହିଁ ରହିଥାଏ । ତାର ଆଶ୍ରୟ କରୁଣାନିଧାନ ପରମାତ୍ମା । ପୁରୁଷ ନାରୀ ଶିକ୍ଷିତ-ଅଶିକ୍ଷିତ, ଧନୀ-ନିର୍ଦ୍ଧନ, ସମସ୍ତଙ୍କର ପ୍ରଯତ୍ନ ସେହି ପରମ ପୁରୁଷଙ୍କୁ ପ୍ରାପ୍ତି ନିମିତ୍ତ ହେବା ବିଧେୟ । ନିଦ୍ରାବ୍ୟତୀତ ନିଜର ସମସ୍ତ ସମୟ ସକଳ କାର୍ଯ୍ୟକ୍ରମ ଭଗବତ୍ ଆରାଧନାର ରୂପ ହୋଇଯାଉ । ତାହାହେଲେ ଫଟୋ ପ୍ରତିମା ବା ଅନ୍ୟ କୁତ୍ରାପି ଦେବାରାଧନା କରିବାର ସ୍ୱତନ୍ତ୍ର ପ୍ରୟାସର ପ୍ରୟୋଜନ ରହିବ ନାହିଁ । ପ୍ରତି ଶ୍ୱାସରେ ଆମେ ସେହି ଦିବ୍ୟତ୍ୱ ଅନୁଭବ

କରୁ । ଏଥିପାଇଁ ମନକୁ ପ୍ରଶିକ୍ଷିତ ଓ ଶାନ୍ତ ରଖିବା ଜରୁରୀ । ଯଦି ବଂଚି ରହିଛୁ ତେବେ ସେହି ଲକ୍ଷ୍ୟ ପୂରଣ ଦିଗରେ ଅଗ୍ରସର ହେବା ପରମ କର୍ତ୍ତବ୍ୟ ହେଉ । ଖାଇବା, ପିଇବା, ଚାଲିବା, ବୁଲିବା ଶୋଇବା ଆଦି ନିତ୍ୟକର୍ମ ମଧ୍ୟ ଈଶ୍ୱର ପ୍ରୀତି ନିମିତ୍ତ ପୂଜାରୂପ ହୋଇଯାଉ ।

ସ୍ୱ କର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ (ଭଗବତ୍ ଗୀତା ୧୮/୪୬)

ନିଜର ଦିନଚର୍ଯ୍ୟା ଶାସ୍ତ୍ର ପୁରାଣୋକ୍ତ ନିର୍ଦ୍ଦେଶାନୁସାରେ ଚାଳିତ ହେଲେ ତ ସକଳ କ୍ରିୟା ଭଗବତ୍ ଆରାଧନାର ରୂପାନ୍ତରୀତ ହୋଇଯିବ । ପଦ ପାଦରେ ଦିବ୍ୟତ୍ୱ ଅନୁଭୂତ ହେବ ।

ପ୍ରାତଃ ଜାଗରଣ -ପ୍ରାତଃ କାଳ, ବ୍ରାହ୍ମ ମୁହୂର୍ତ୍ତରୁ (୧) ସୂର୍ଯ୍ୟୋଦୟ ପ୍ରାୟ ଦେଢଘଣ୍ଟା ପୂର୍ବରୁ ଜାଗ୍ରତ ହେବା ବିଧେୟ । ଆଖି ଖୋଲିବା ସହିତ ଏହି ଶ୍ଳୋକ ପାଠ କରିବା ବିଧି-

କରାଗ୍ରେ ବସତେ ଲକ୍ଷ୍ମୀ କରମଧ୍ୟେ ସରସ୍ୱତୀ

କରମୂଳେ ସ୍ଥିତୋ ବ୍ରହ୍ମା ପ୍ରଭାତେକର ଦର୍ଶନମ୍ ॥ (ଆଚାର ପ୍ରଦୀପ)

ହାତ ପାପୁଲିର ଅଗ୍ରଭାଗରେ ଲକ୍ଷ୍ମୀ ନିବାସ କରୁଛନ୍ତି । ମଧ୍ୟଭାଗରେ ସରସ୍ୱତୀ ଓ ମୂଳରେ ଭଗବାନ ବ୍ରହ୍ମା ନିବାସ କରୁଅଛନ୍ତି । ଏହାଦ୍ୱାରା ପୂଣ୍ୟ ଲାଭ ହୁଏ । ବସ୍ତୁତଃ ଦିନ ତମାମର କାର୍ଯ୍ୟ ହାତଦ୍ୱାରା ହିଁ ହୋଇଥାଏ । ଯେଉଁ ହାତରେ ଧନଦାତ୍ରୀ, ବିଦ୍ୟାଦାତ୍ରୀ ଓ ବିଶ୍ୱ ସ୍ରଷ୍ଟା (ବ୍ରହ୍ମା) ନିବାସ କରୁଛନ୍ତି ତାହା ନିଜର ଓ ଅନ୍ୟର ଧନ, ବିଦ୍ୟା ଓ ସୃଜନ କର୍ମର ସହାୟକ ହେଉ । ଅପରପକ୍ଷେ ଦେବତ୍ୱ ଯୁକ୍ତ ହସ୍ତରେ ଅନ୍ୟର କୌଣସି ହାନି ଯେପରି ନହୁଏ, ସେଥିପ୍ରତି ମଧ୍ୟ ନିଜେ ସତର୍କତା ଅବଲମ୍ବନ କରିବାର ପ୍ରତୀକ୍ଷା କରାଯାଉଛି । ଅର୍ଥାତ୍ ମୋର ସକଳ କର୍ମ କେବଳ କଲ୍ୟାଣ କର ହେଉ । ସୃଷ୍ଟି କର୍ମରେ ବିନିଯୁକ୍ତ ହେଉ । ତାହା ଅକଲ୍ୟାଣ କର ବା ଧ୍ୱଂସ ମୁଖୀ ନହେଉ ।

ପୃଥିବୀ ବନ୍ଦନା- ଶଯ୍ୟାରେ ଉପବେଶନ କରି ପୃଥ୍ୱୀ ଉପରେ ପାଦସ୍ପର୍ଶ କରିବା ପୂର୍ବରୁ ପୃଥିବୀ ମାତାଙ୍କର ଅଭିବାଦନ କରିବା ଓ ପାଦସ୍ପର୍ଶ ଅପରାଧ ହେତୁ କ୍ଷମା ପ୍ରାର୍ଥନା ନିମିତ୍ତ ଏହି ଶ୍ଳୋକ ପାଠ କରନ୍ତୁ-

ସମୁଦ୍ରେ ବସନେ ଦେବୀ ପର୍ବତ ସ୍ତନମଣ୍ଡଳେ

ବିଷ୍ଣୁ ପତ୍ନୀ ନମସ୍ତୁଭ୍ୟଂ ପାଦସ୍ପର୍ଶ କ୍ଷମସ୍ୱମେ ॥

ସମୁଦ୍ର ରୂପୀ ବସ୍ତ୍ରଧାରଣକାରୀ, ପର୍ବତ-ସ୍ତନରେ ମଣ୍ଡିତ ଭଗବାନ ବିଷ୍ଣୁଙ୍କର ପତ୍ନୀ ପୃଥିବୀଦେବୀ ଆପଣ ମୋର ପାଦସ୍ପର୍ଶ କ୍ଷମା କରନ୍ତୁ ।

ମଙ୍ଗଳ ଦର୍ଶନ- ତତ୍ ପରେ ଗୋରଚନା, ଚନ୍ଦନ, ସୁବର୍ଣ୍ଣ, ଶଂଖ, ଦର୍ପଣ, ମଣି, ସୂର୍ଯ୍ୟ, ଅଗ୍ନି ଆଦି ମାଙ୍ଗଳିକ ବସ୍ତୁ ଗୁଡିକର ଦର୍ଶନ ଓ ମୂର୍ତ୍ତିମାନ୍ ଭଗବାନ୍ ମାତା-ପିତା ଗୁରୁ ଏବଂ ଈଶ୍ୱରଙ୍କୁ ନମସ୍କାର କରିବା ବିଧି । ଶୌଚଦିରୁ ନିବୃତ୍ତ ହୋଇ ରାତି ପିନ୍ଧା ବସ୍ତ୍ର ପରିବର୍ତ୍ତନ କରି ଆଚମନ କର୍ତ୍ତବ୍ୟ ୧. (ଆଚରେ, ମୟୁଖ ପୃ-୯ କ୍ୟାତାୟନଙ୍କ ବଚନ) ୨(ଆଚର ରତ୍ନପୃ-୮ରେ ଅଙ୍ଗୀରା) ହାତ, ପାଦ, ମୁଖ ଧୋଇକୁଳି କରିବେ ଓ ଅଧୋଲିଖିତ ଶ୍ଳୋକ ପାଠକରି ସମସ୍ତ ଶରୀର ଉପରେ ଜଳ ସିଞ୍ଚି ହେବେ । ଏହାକୁ ମାନସିକ ସ୍ନାନ କୁହାଯାଏ ।

ମନ୍ତ୍ର - ଓଁ ଅପବିତ୍ରଃ ପବିତ୍ରୋବା ସର୍ବାବସ୍ଥାଂ ଗତୋଽପିବା
ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟଭ୍ୟନ୍ତରଃ ଶୁଚିଃ ॥
ଅତି ନୀଳ ଘନଶ୍ୟାମଂ ନଳୀନାୟତ ଲୋଚନମ୍
ସ୍ମରାମି ପୁଣ୍ଡରୀକାକ୍ଷଂ ତେନ ସ୍ନାତୋ ଭବା ମ୍ୟହମ୍ ॥
(ଆଚର ଭୂଷଣ ପୃ-୪ ବାମନ ପୁରାଣର ବଚନ)

ମୂର୍ତ୍ତିମାନ୍ ଭଗବାନ୍ ପିତା ମାତା ଗୁରୁଙ୍କୁ ଅଭିବାଦନ କରାଯାଏ । (୩) ରାମଚରିତ ମାନସରେ ଶ୍ରୀରାମଙ୍କ ନିତ୍ୟାଚରରେ ଏହାର ସୂଚନା ଦେଖିବାକୁ ମିଳେ (୪)

ପ୍ରାତଃସ୍ମରଣ ଶ୍ଳୋକ- ବିଷ୍ଣୁ, ଗଣେଶ, ଶିବ, ଦେବୀ, ସୂର୍ଯ୍ୟ, ନବଗ୍ରହ, ଋଷିଗଣ ଓ ପ୍ରକୃତି ସ୍ମରଣ ନିମିତ୍ତ ନିର୍ଦ୍ଦେଶ ରହିଛି । ଏହା ଫଳରେ ବହୁ କଲ୍ୟାଣ ହୋଇଥାଏ । ୧ଦିନ ଭଲରେ ଯାଏ, ୨. ଦୁଃସ୍ୱପ୍ନ କାଳିଦୋଷ, ଶତ୍ରୁ ପାପ ଓ ଭବଭୟ ନାଶ ହୋଇଥାଏ । ୩. ବିଷଭୟ ହୁଏନାହିଁ । ୪ଧର୍ମର ବୃଦ୍ଧି ହୋଇଥାଏ ଅଜ୍ଞାନର ଜ୍ଞାନପ୍ରାପ୍ତି ହୁଏ, ୫-ରୋଗ ନାଶ ହୋଇଥାଏ, ୬. ସଂପୂର୍ଣ୍ଣ ଆୟୁଲାଭ ହୋଇଥାଏ । ୭-ବିଜୟ ପ୍ରାପ୍ତ ହୋଇଥାଏ ୮. ଦାରିଦ୍ର୍ୟ ଦୂର ହୁଏ, ୯. କ୍ଷୁଧା ତୃଷା ଓ କାମ ବାଧା ଦୂର ହୁଏ

---

୧. ଆଚର ମୟୂଖ ପୃ-୯ କାତ୍ୟାୟନଙ୍କ ବଚନ, ୨-ଆଚର ରତ୍ନ ପୃ-୮ରେ ଅଙ୍ଗିରା

୩. ଉତ୍ଥାୟ ମାତା ପିତରୌ ପୂର୍ବମେବାଭିବାଦୟେତ୍
ଆଚର୍ଯ୍ୟଶ୍ଚ ତତୋ ନିତ୍ୟ ମଭିବାଦ୍ୟୋ ବିଜାନତା ॥

୪. ପ୍ରାତକାଳ ଉଠି କୈ ରଘୁନାଥା
ମାତୁ ପିତା ଗୁରନାବ ହିଁ ଗାଥା (ରାମଚରିତ ମାନସ-ବାଳକାଣ୍ଡ-ଗୋସ୍ୱାମୀ ତୁଳସୀଦାସ)

୧୦. ସମସ୍ତ ବାଧାରୁ ମୁକ୍ତି ମିଳିଥାଏ ଇତ୍ୟାଦି ।

ନିଷ୍କାମ କର୍ମୀ ମାନଙ୍କର ମଧ କେବଳ ଇଷ୍ଟ ପ୍ରୀତି ନିମିତ୍ତ ଏହି ଶ୍ଳୋକର ପାଠ କରିବା ବିଧି ।

ପ୍ରକୃତି ସ୍ମରଣ- ପୃଥ୍ୱୀ ସଗନ୍ଧା ସରସା ସ୍ତଥାପଃ
ସ୍ପର୍ଶୀ ଚ ବାୟୁ ର୍ଜ୍ୱଳିତଂ ତେଜଃ ।
ନଭଃ ସଶବ୍ଦଂ ମହତା ସହୈବ
କୁର୍ବନ୍ତ ସର୍ବେ ମମ ସୁପ୍ରଭାତମ୍
(ବାମନ ପୁ୧୪/୨୬)

ସମଗ୍ର ଦୃଶ୍ୟା-ଦୃଶ୍ୟ ଜଗତ ଯେଉଁ ମୌଳିକ ପଞ୍ଚ ମହାଭୂତ ଦ୍ୱାରା ନିର୍ମିତ ଅର୍ଥାତ୍ ମନୁଷ୍ୟ ଯେଉଁ ଉପାଦାନରେ ଗଠିତ ସେ ସକଳକୁ ସର୍ବପ୍ରଥମ ସ୍ମରଣ କରି ସେମାନଙ୍କୁ ପ୍ରାର୍ଥନା କରୁଛି ଯେ ଆଜି ଦିନଟି ଶୁଭରେ ଯାଉ ।

ସପ୍ତାର୍ଣ୍ଣବାଃ ସପ୍ତ କୁଳାଚଳାଶ୍ଚ ସପ୍ତର୍ଷୟୋ ଦ୍ୱୀପବନାନି ସପ୍ତ ।
ଭୂରାଦି କୃତ୍ୱା ଭବନାଦି ସପ୍ତ କୁର୍ବନ୍ତ ସର୍ବେ ମମ ସୁ ପ୍ରଭାତମ୍ ॥
(ବାମନପୁରାଣ ୧୪/୨୭)

ସପ୍ତ ସମୁଦ୍ର, ସପ୍ତ କୁଳ ପର୍ବତ, ସପ୍ତର୍ଷିଗଣ, ସପ୍ତବନ, ସପ୍ତ ଦ୍ୱୀପ, ଭୂଲୋର୍କ, ଭୁବଲୋକ, ଆଦି ସପ୍ତ ଲୋକ ସମସ୍ତେ ମୋର ପ୍ରାତଃ କାଳକୁ ମଙ୍ଗଳମୟ କରନ୍ତି ।

ଭାରତବର୍ଷର ପୁଣ୍ୟ ଶ୍ଳୋକ ନରପତି, ଜନାର୍ଦ୍ଦନ, ସପ୍ତଚିରଜୀବିଙ୍କ ସହିତ ମାର୍କଣ୍ଡେୟଙ୍କ ସ୍ମରଣ ଅପମୃତ୍ୟୁ ନିବାରଣ ସହ ଶତବର୍ଷ ପରମାୟୁ ପ୍ରଦାନ କାରି । ପଦ୍ମପୁରାଣରେ ଧର୍ମ ବର୍ଦ୍ଧନ ପାଇଁ ଯୁଧିଷ୍ଠିର ପାପ ବିନାଶନ ପାଇଁ ବୃକୋଦର, ଶତ୍ରୁବିନାଶ ପାଇଁ ଧନଂଜୟ, ଓ ନକୁଳ ସହଦେବଙ୍କ ନାମ ସ୍ମରଣରେ ନିରୋଗ ହେବାର ସୂଚନା ରହିଛି ।

ପୁରାତନ କାଳରୁ ବାରଣାସି ବିଦ୍ୟା ବିଭବରେ ସୁପ୍ରସିଦ୍ଧ, ଉକ୍ତ କ୍ଷେତ୍ରର ମହତ୍ତ୍ୱ, ଚତୁର୍ଦ୍ଦିଗସ୍ଥ ବିଶେଷ ଦେବତାଙ୍କ ସ୍ମରଣରେ ଆଧ୍ୟାତ୍ମିକ ତଥା ସାଂସ୍କୃତିକ ଚେତନାର

---

୫. ଆଲ୍ହିକସୂତ୍ରାବଳୀ ପୃ-୪, ୬-ପଦ୍ମପୁରାଣ, ୭ ଏସମ୍ବନ୍ଧରେ ଉତ୍ପାତ ସାଗର ଗ୍ରନ୍ଥ ଅନୁସଂଧେୟ ଆଲ୍ହିକ ଭୂଷଣ ପୃ-୧୦.

ଅଭ୍ୟୁଦୟ ହୋଇଥାଏ ।ସ୍ୱପ୍ନ ଦର୍ଶନ ମନୁଷ୍ୟର ଜାଗ୍ରତା ବସ୍ଥା କର୍ମ ପ୍ରବାହକୁ ନିୟନ୍ତ୍ରିତ କରିଥାଏ । ଶକୁନ ଶାସ୍ତ୍ରରେ ରାତ୍ରିର କେଉଁ ସମୟର ସ୍ୱପ୍ନ ଓ କିପ୍ରକାର ସ୍ୱପ୍ନ ଦର୍ଶନ ହୋଇଛି ତା ଫଳାଫଳ ନିର୍ଦ୍ଦେଶିତ ହୋଇଅଛି । ସୁ ସ୍ୱପ୍ନ ଦ୍ୱାରା ମାନସିକ ପ୍ରେରଣା ଲାଭ ହୁଏ ଓ ଜୀବନ ଯାତ୍ରା ଉତ୍ସାହର ସହ ସମାହିତ ହୋଇଥାଏ । ଅପରପକ୍ଷେ ଦୁଃସ୍ୱପ୍ନ ମନୁଷ୍ୟର ମାନସିକ ଅବସ୍ଥାକୁ ଆନ୍ଦୋଳିତ କରି ଅସ୍ୱାଭାବିକ ସ୍ଥିତିରେ ପହଞ୍ଚାଇ ଥାଏ । ଏ ସମ୍ବନ୍ଧରେ ଭାଗବତରେ ବର୍ଣ୍ଣିତ କଂସ ସ୍ୱପ୍ନ ବୃତ୍ତାନ୍ତ ଉଲ୍ଲେଖଯୋଗ୍ୟ ।

ଶିବପୁରାଣ ବର୍ଣ୍ଣିତ ଏକ ବିଶେଷ ପ୍ରସଂଗକୁ ଲକ୍ଷ୍ୟ କରାଯାଉ । ଭାରତର ଦ୍ୱାଦଶ ଜ୍ୟୋତିଲିଙ୍ଗର ଉଚ୍ଚାରଣରେ ସର୍ବପାପରୁ ବିମୁକ୍ତ ହୋଇ ସର୍ବସିଦ୍ଧି ଫଳ ଲାଭ ହେବା ସୂଚିତ ହୋଇଛି । ଲକ୍ଷ୍ୟ କରିବାର କଥା ଏହିକି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗର ଉଚ୍ଚାରଣରେ ଭାରତର ବିଭିନ୍ନ ପ୍ରାନ୍ତ ସର୍ବୋପରି ଅଧୁନାତନ ଭାଷାରେ 'ଜାତୀୟ ସଂହତି' ରକ୍ଷାର ମୌଳିକ ତତ୍ତ୍ୱକୁ ପ୍ରତ୍ୟେକ ଅବଧାରଣା କରି ଦୈନନ୍ଦିନ ଜୀବନଯାତ୍ରା ସମାହିତ କରିବାର ଦିବ୍ୟ ଭାବନାକୁ ଅନୁସ୍ୟୂତ କରି ଦେଇ ଅଛନ୍ତି ।

ଭଗବତ୍ ପ୍ରାର୍ଥନା କରି ତାଙ୍କ ଠାରୁ ଆଜ୍ଞା ପ୍ରାପ୍ତି କରିବା ଉଚିତ୍ ।

ତ୍ରୈଲୋକ୍ୟ ଚୈତନ୍ୟ ମାୟାଦି ଦେବ

ଶ୍ରୀନାଥ ବିଷ୍ଣୋ ଭବ ଦା ଜ୍ଞୟେବ

ପ୍ରାତଃ ସମୁତଥାୟ ତବ ପ୍ରିୟାର୍ଥଂ

ସଂସାର ଯାତ୍ରା ମନୁବର୍ତ୍ତ ୟିଷ୍ୟେ ।

(ମନ୍ତ୍ର ମହୋଦଧି-୨୧-୬)

ଅତଃ ପର ଅଜପା ଜପର ସଂକଳ୍ପ କରିବା ବିଧି । ଶାସ୍ତ୍ରୀ ସମସ୍ତ ସାଧନାରେ ଏହି ଅଜପା ଜପ ବିଶେଷ ସୁଗମ । ସ୍ୱାଭାବିକ ଶ୍ୱାସ ସହିତ ହଂ ସଃ ହଂସଃ ଜପଧ୍ୟାନ କରିବା ଦ୍ୱାରା ଶୟନ -ଜାଗରଣ ସକଳ ସ୍ଥିତିରେ ନିରନ୍ତର ଏହି ଜପ ଚାଲିଥାଏ ।

ଶୌଚେ ଯତ୍ନଃ ସଦାକାର୍ଯ୍ୟଃ ଗୌଡ ମୂଳୋ ଦ୍ୱିଜଃ ସ୍ମୃତଃ

ଶୌଚାଚାର ବିହିନସ୍ୟ ସମସ୍ତା ନିଷ୍ଫଳାଃକ୍ରିୟା ॥

(ଦକ୍ଷସ୍ମୃତି ୫।୨।ବାଧୂଳସ୍ମୃତି -୨୦)

ଶୌଚାଚାରରେ ସଦା ପ୍ରଯତ୍ନଶୀଳ ରହିବା ଉଚିତ । କାରଣ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟଙ୍କର ମୂଳ ଶୌଚାଚାରେ ହିଁ ହୋଇଥାଏ । ଶୌଚାଚାର ପାଳନ ନକଲେ ସମସ୍ତ

କ୍ରିୟା ନିଷ୍ଫଳ ହୋଇଥାଏ । ଶୌଚ ସାମାନତଃ ଦ୍ୱିବିଧ ଆଭ୍ୟନ୍ତର ଓ ବାହ୍ୟ । ଆଭ୍ୟନ୍ତର ଶୌଚ -ବ୍ୟାଘ୍ର ପାଦଙ୍କ ଅନୁସାରେ ମୃତ୍ତିକା ଓ ଜଳରେ ହେଉଥିବା ଶୌଚ ବାହ୍ୟ ଶୌଚ ନାମରେ କଥିତ । ଏହା ଅବାଧିତ ଆବଶ୍ୟକତା ରହିଛି । କିନ୍ତୁ ଆଭ୍ୟନ୍ତର ଶୌଚ ବିନା ଏହାର ପ୍ରତିଷ୍ଠା ହୋଇ ନପାରେ ।

ମନୋଭାବର ଶୁଦ୍ଧତା, ମାନସିକ ସ୍ତରରେ ନିର୍ମଳତା ପ୍ରାପ୍ତିକୁ ଆଭ୍ୟନ୍ତର ଶୌଚ କୁହାଯାଇଛି । କାହାରି ପ୍ରତି ଇର୍ଷା, ଦ୍ୱେଷ, କ୍ରୋଧ, ଲୋଭ, ମୋହ, ଘୃଣା, ଆଦି ନହେବା ଆଭ୍ୟନ୍ତର ଶୌଚ । ପରମେଶ୍ୱର ସମସ୍ତଙ୍କ ଠାରେ ବିଦ୍ୟମାନ, ଏଣୁ କାହାରିକୁ କ୍ରୋଧାଦି କରିବା ଅନୁଚିତ୍ । ସବୁରି ଠାରେ ପରମାତ୍ମାଙ୍କ ଦର୍ଶନ କରି ପରିସ୍ଥିତିକୁ ଈଶ୍ୱରୀୟ କାରଣ ଭାବନା କରି ସମସ୍ତଙ୍କଠାରେ ମୈତ୍ରୀ ଭାବ ରଖିବା ଉଚିତ୍ ।

ଶୌଚ ବିଧି-ଜନବସତି ଠାରୁ (ଗ୍ରାମ କ୍ଷେତ୍ରରେ) ଦକ୍ଷିଣ ପଶ୍ଚିମ କୋଣଦିଗକୁ ମୁକ୍ତ ସ୍ଥାନରେ କିଛି ଦୂର ଯିବା ପ୍ରୟୋଜନ । ରାତ୍ରରେ ଏତେ ଦୂରଯିବା ନିଷପ୍ରୟୋଜନ ଗୃହ ଶୌଚାଳୟ ଏଥିପାଇଁ ଉପଯୁକ୍ତ । ଜଳପାତ୍ର ଓ ମୃତ୍ତିକା ଏଥିନିମିତ୍ତ ପ୍ରୟୋଜନ, ଜଳପାତ୍ର ହାତରେ ଧରିବା ଅବିଧି । ଶିର ଓ ଶରୀର ବସ୍ତ୍ରାବୃତ୍ତ ହେବା ବିଧି ।ଉପବୀତ ଦକ୍ଷିଣ କର୍ଣ୍ଣରେ ବେଷ୍ଟିତ ହେବା ବିଧି । ଶୌଚନିମିତ୍ତ ବସିବା ସମୟରେ ଦିନରେ (ସକାଳ ସଂଧ୍ୟାରେ) ଉତ୍ତରାଭିମୁଖ ତଥା ରାତିରେ ଦକ୍ଷିଣାଭିମୁଖ ହେବା ବିଧେୟ । ମୌନ ହୋଇ ଶୌଚକ୍ରିୟା କରିବା । ଦୀର୍ଘଶ୍ୱାସ ଓ ଥୁକ ମଧ୍ୟ ନିଷିଦ୍ଧ । ଜଳ

---

୯.୨୪ଘଣ୍ଟାରେ ମନୁଷ୍ୟ ପ୍ରାୟ ୨୧୬୦୦ ଶ୍ୱାସ ନେଇଥାଏ । ପ୍ରତ୍ୟେକ ଶ୍ୱାସରେ ହଂସଃ ସ୍ୱାଭାବିକ ଜପ ହୋଇଚାଲିଥାଏ । ପ୍ରାତଃରୁ ଥରେ ପ୍ରଭୁଙ୍କ ଶ୍ରୀଚରଣରେ ଏହାକୁ ମାନସିକ ରୂପେ ସମର୍ପିତ କରିଦେବା ବିଧାନ ଶାସ୍ତ୍ର ସମ୍ମତ ।

ଅଜପା ନାମ ଗାୟତ୍ରୀ ଯୋଗୀନାଂ ମୋକ୍ଷଦା ସଦା
ଅସ୍ୟାଃ ସଂକଳ୍ପ ମାତ୍ରେଣ ନରଃ ପାପୈ ପ୍ରମୁଚ୍ୟତେ ॥

୧୦ ଶୌଚଂ ତୁ ଦ୍ୱିବିଧଂ ପ୍ରୋକ୍ତଂ ବାହ୍ୟଂ ମାଭ୍ୟନ୍ତର ତଥା । ମୃଜ୍ଜଳାଭ୍ୟାଂସ୍ମୃତଂ ବାହ୍ୟଂ ଭାବଶୁଦ୍ଧି ସ୍ତଥାନ୍ତରମ୍ ॥ (ଆହ୍ନିକଂ -ବ୍ୟାଘ୍ରପାଦ)

୧୧. ଅନ୍ତର୍ଧାୟ ତୃଣୈର୍ଭୂମିଂ ଶିରଃ ପ୍ରାବୃତ୍ୟବାସସା
ବାଚଂ ନିୟମ୍ୟ ଯତ୍ନେନ ଷ୍ଠୀବନୋଚ୍ଛ୍ୱାସ ବର୍ଜିତଃ ॥
(ଦେ.ଭା ୧୧।୨।୯)

୧୨ ଏ ସମ୍ବନ୍ଧରେ ମନୁସ୍ମୃତି ୫/୧୩୬,ବାଧୂଳି ସ୍ମୃତି ୧୮, ଆଚାରଭୂଷଣ ପୃ-୧୮ରେ ଦେବଳ ପାରିଜାତ ଆଚାର ରତ୍ନ ପୃ-୧୫ ପ୍ରଭୃତି ଅନୁସଂଧେୟ ।

୧୩.ଦକ୍ଷିଣଂ ବାହୁ ମୁଦ୍ଧୃତ୍ୟ ବାମସ୍କନ୍ଧେ ନିବେଶୟମ୍ ।
ଯଜ୍ଞୋପବୀତ ମିତ୍ୟୁକ୍ତଂ ଦେବକାର୍ଯ୍ୟେଷୁ ଶସ୍ୟତେ - ଅଂଗିରା ।

ଓ ମୃତ୍ତିକା ଦ୍ୱାରା ଲିଂଗ ଓ ଗୁଦା କୁ ଧୌତ ପୂର୍ବକ ପରିଷ୍କାର ହେବାପରେ ବାମହାତକୁ ଧୌତ କରିବାର ବିଧି ରହିଛି । ମୁଖ ଶୋଧନ ପାଇଁ ଦ୍ୱାଦଶ କୁଲ୍ୟ ବିଧାନ ରହିଛି । ଉପବୀତ ବାମସ୍କନ୍ଧରେ ସ୍ଥାପନ କରି ନେବା ବିଧି ।

ଦନ୍ତଧାବନ- ମୁଖ ଶୁଦ୍ଧି ବିନା ପୂଜାପାଠ, ମନ୍ତ୍ର ଜପ ଆଦି ନିଷ୍ଫଳ ହୋଇଥାଏ। ଅତଃ ପ୍ରତିଦିନ ମୁଖ ଶୋଧନ ନିମିତ୍ତ ଦନ୍ତଧାବନ ଅଥବା ମଂଜନାଦି କରିବା ବିଧେୟ । ଐଶାନ୍ୟ ଓ ପୂର୍ବ ଦିଗକୁ ମୁଖ କରି ଉପବେଶନ ପୂର୍ବକ କରଣୀୟ ।

ଦାନ୍ତକାଠିକୁ ମୁଖରେ ଦେବା ପୂର୍ବରୁ ଜଳରେ ଧୌତକରି ବନସ୍ପତିକୁ ପ୍ରାର୍ଥନା କରିବାକୁ ନିର୍ଦ୍ଦେଶ ରହିଛି ।

ଆୟୁର୍ବଳଂ ଯଶୋ ବର୍ଚ୍ଚଃ ପ୍ରଜା ପଶୁ ବସୂନିଚ
ବ୍ରହ୍ମ ପ୍ରଜ୍ଞା ଚ ମେଧାଂ ଚ ତ୍ୱଂନୋ ଦେହି ବନସ୍ପତେ ॥

(କାତ୍ୟାୟନ ସୂତ୍ର ୧୦।୪। ଗର୍ଗ ସଂହିତା ବିଜ୍ଞାନଖଣ୍ଡ ଅ.୭)

(ଲକ୍ଷ୍ୟଣୀୟ ଯେ ସନାତନ ସଂସ୍କୃତିରେ ପ୍ରକୃତି (ବନସ୍ପତି) ପ୍ରତି କୃତଜ୍ଞତା ଜ୍ଞାପନ କରିବାର ମହାନ ପରମ୍ପରା ପୁରାକାଳରୁ ପ୍ରଚଳିତ)

ସତର୍କତାର ସହ ମୌନ ପୂର୍ବକ ଦାନ୍ତ ଘଷିବା ପାଇଁ ନିର୍ଦ୍ଦେଶ ରହିଛି ଜିଭ ସଫା କରିବାର ସୂଚନା ନିର୍ଦ୍ଦେଶିତ ହୋଇଛି ।

ଗ୍ରାହ୍ୟ ଦାନ୍ତକାଠି- ଖଇର, କରଂଜ, କଦମ୍ବ, ବଟ ତେନ୍ତୁଳି ବାଉଁଶ, ଆମ୍ବ, ନିମ୍ବ, ଅପାମାରଂଗ, ବିଲ୍ୱ, ଅରଖ, ଉଦୁମ୍ବର, ବଦରୀ, ତିନ୍ଦୁକ, ଅଗସ୍ତି ପ୍ରଭୃତି ଦାନ୍ତକାଠି ନିମିତ୍ତ ପ୍ରଶସ୍ତ ୧୫ ।

କୁଶ, କାଶ, ଧବ, ନୀଳ, କପାସ, ପଳାସ, ଶିଶୁ ଇତ୍ୟାଦି ବର୍ଜିତ ଦନ୍ତ କାଠି । ଶାସ୍ତ୍ରରେ କୌଣସି ଅବସରରେ ଅଥବା ତିଥିରେ ଏଥିରେ ଦାନ୍ତ ଘଷିବା ନିଷେଧ କରାଯାଇଛି ।

---

୧୪. ଆଚାର ସୂତ୍ର, ଗର୍ଗ, ଛାଡୂକର୍ଣ୍ୟ, ଆଚାର ଭୂଷଣରେ ବିଷ୍ଣୁ, ପ୍ରଭୃତି ଦ୍ରଷ୍ଟବ୍ୟ ।

୧୫ ଖଦିରଶ୍ଚ କରଞ୍ଜଶ୍ଚ କଦମ୍ବଶ୍ଚ ବଟସ୍ତଥା
ତିନ୍ତିଡି ବେଣୁ ପୃଷ୍ଟଂ ଚ ଆମ୍ରନିମ୍ବୋ ତଥୈବଚ ॥
ଅପା ମାର୍ଗଶ୍ଚ ବିଲ୍ୱଶ୍ଚ ଅର୍କଶ୍ଚୈଦୁମ୍ବରସ୍ତଥା
ବଦରୀ ତିନ୍ଦୁକା ଶ୍ୱେତେ ପ୍ରଶସ୍ତା ଦନ୍ତଧାବନେ (ଆଚାରେନ୍ଦୁରେ ନାରସିଂହ)

୧୬. କୁଶଂ କାସଂ ପଳାସଂଚ ଶିଂଶପଂ ଯସ୍ତ ଭକ୍ଷୟେତ
ତାବତ୍ ଭବତି ଚଣ୍ଡାଳୋ ଯାବତ୍ ଗଂଗାନପଶ୍ୟତି (ଆଚାର ମୟୂଖ ପୃ-୨୯ର ଗର୍ଗ)

ମାତ୍ର ମଂଜନ ବିଧାନ ରହିଛି । ଦାନ୍ତ ସହିତ ସ୍ୱାସ୍ଥ୍ୟର ଗଭୀର ସମ୍ବନ୍ଧ ରହିଛି ଏଣୁ ବିଧି ନିଷେଧ ନିର୍ଦ୍ଦେଶିତ ହୋଇଛି ।

ତୈଳାଭ୍ୟଙ୍ଗ ବିଧି- ଷଷ୍ଠୀ, ଏକାଦଶୀ, ଦ୍ୱାଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ବ୍ରତ ଏବଂ ଶ୍ରାଦ୍ଧ ଦିନ ତଥା ରବି,ମଙ୍ଗଳ, ଗୁରୁ ଓ ଶୁକ୍ରବାରରେ ତେଲ ଲଗାଇବା ନିଷିଦ୍ଧ, କିନ୍ତୁ ସୁଗନ୍ଧିତ ପୁଷ୍ପରେ ବାସିତ ଆୟୁର୍ବେଦ ପଦ୍ଧତିରେ ଷଡବିନ୍ଦୁ ବା ମହା ଭୃଂଗରାଜ ଆଦି ସୁଗନ୍ଧିତ ତେଲ ବର୍ଜିତ କାଳରେ ମଧ୍ୟ ଲଗାଯାଇ ପାରେ । ମୁଖ୍ୟ ରୂପରେ ତିଳ ତୈଳ ନିଷିଦ୍ଧ ୧୭।

ସ୍ନାନ- ଉଷା-ଲାଲିମା ହେବା ପୂର୍ବରୁ ସ୍ନାନ କରିବା ଉତ୍ତମ, ସ୍ନାନପରେ ମନୁଷ୍ୟ ଶୁଦ୍ଧ ହୋଇ ପୂଜା ପାଠ ଆଦି ସମସ୍ତ କର୍ମ ପାଇଁ ଯୋଗ୍ୟ ହୋଇଥାଏ । ଅତଃ ପ୍ରାତ ସ୍ନାନର ପ୍ରଶଂସା କରାଯାଇଛି । ନବ ଦ୍ୱାର ଯୁକ୍ତ ମଳିନ ଶରୀରରୁ ଦିବାରାତ୍ର ମଳ ନିସୃତ ହେଉଅଛି, ଅତଃ ପ୍ରାତଃକାଳ ସ୍ନାନରେ ଶରୀର ଶୁଦ୍ଧି ହୁଏ ।

ଉଷସ୍ୟୁଷସି ଯତ୍ ସ୍ନାନଂ ନିତ୍ୟମେବା ରୁଣୋଦୟେ
ପ୍ରଜାପତ୍ୟେନ ତତ୍ ତୁଲ୍ୟଂ ମହାପାତନାଶନମ୍ ॥ (ଦକ୍ଷସ୍ମୃତି -୨)

ଏହାଦ୍ୱାରା ପ୍ରାଜାପତ୍ୟ ବ୍ରତର ଫଳପ୍ରାପ୍ତି ହୋଇଥାଏ । ସ୍ୱାସ୍ଥ୍ୟ ଓ ଶୁଚିତା ଉଭୟ ନିମିତ୍ତ ସ୍ନାନର ପ୍ରୟୋଜନ ରହିଛି । ପାପନାଶନ ଓ ପୁଣ୍ୟ ପ୍ରାପ୍ତି ଉଭୟ ବିଧ ଲାଭ ହେତୁ ପ୍ରାତ ସ୍ନାନ କରଣୀୟ । ସ୍ନାନଦ୍ୱାରା ୧-ରୂପ, ୨ ତେଜ, ୩ ବଳ, ୪ ପବିତ୍ରତା, ୫ ଆୟୁ, ୬ ଆରୋଗ୍ୟ, ୭ ନିର୍ଲୋଭତା, ୮ ଦୁସ୍ୱପ୍ନନାଶ, ୯ ତପ ୧୦ମେଧା, ଏହି ଦଶଗୁଣ ପ୍ରାପ୍ତ ହୁଏ । ବେଦ ସ୍ମୃତିରେ କଥିତ ସମସ୍ତ କାର୍ଯ୍ୟ ସ୍ନାନମୂଳକ । ସୁତରାଂ ଲକ୍ଷ୍ମୀ, ପୁଷ୍ଟି ଏବଂ ଆରୋଗ୍ୟ ଋହୁଁଥିବା ମନୁଷ୍ୟ ସ୍ନାନ କରିବା ବିଧି ।

---

୧୭. ତୈଳାଭ୍ୟଙ୍ଗେ ରବୌ ତାପଃ ସୋମେ ଶୋଭା କୁଜେସ୍ମୃତିଃ ।
ବୁଧେ ଧନଂ ଗୁରୌ ହାନିଃ ଶୁକ୍ରେ ଦୁଃଖଂ ଶନୌସୁଖମ୍ ॥
ରବୌ ପୁଷ୍ପଂ ଗୁରୌ ଦୂର୍ବା ଭୌମ ବାରେ ତୁ ମୃତ୍ତିକା
ଗୋମୟଂ ଶୁକ୍ରବାରେ ଚ ତୈଳାଭ୍ୟଙ୍ଗେ ନ ଦୋଷ ଭାକ୍ ॥
ସାର୍ଷପଂ ଗନ୍ଧ ତୈଳଂ ଚ ଯତୈଳଂ ପୁଷ୍ପ ବାସିତମ୍
ଅନ୍ୟ ଦ୍ରବ୍ୟ ଯୁକ୍ତଂ ତୈଳଂ ନଦୂଷ୍ୟତି କଦାଚନ । (ନିର୍ଣ୍ଣୟ ସିନ୍ଧୁ; କମଳାକରଭଟ୍ଟ)

୧୮ ଦକ୍ଷ ସ୍ମୃତି ୨।୯ ଦକ୍ଷସ୍ମୃତି ୨।୭

୧୯ ଆଋର ମୟୂଖ ପୃ ୪୭-୪୮ ପ୍ରୟୋଗ ପାରିଜାତ

ସ୍ନାନଭେଦ-ମନ୍ତ୍ରସ୍ନାନ, ଭୌମସ୍ନାନ, ଅଗ୍ନିସ୍ନାନ, ବାୟବ୍ୟସ୍ନାନ ,ଦିବ୍ୟସ୍ନାନ, ବାରୁଣାସ୍ନାନ, ଓ ମାନସିକ ସ୍ନାନ ଏହି ସପ୍ତବିଧି ସ୍ନାନ ଶାସ୍ତ୍ର କଥିତ, ଆପୋହିଷ୍ଠାଂ ଇତ୍ୟାଦି ମନ୍ତ୍ରରେ ମାର୍ଜନ କରିବାକୁ ମନ୍ତ୍ର ସ୍ନାନ ସମଗ୍ର ଶରୀରରେ ମୃତ୍ତିକା ଆଚ୍ଛାଦିତ ସ୍ନାନକୁ ଭୌମସ୍ନାନ, ଭସ୍ମ ଲେପିତ ସ୍ନାନକୁ ଅଗ୍ନିସ୍ନାନ, ଗାଈ ଖୁରାର ଧୂଳି ଲଗାଇବାକୁ ବାୟବ୍ୟସ୍ନାନ, ସୂର୍ଯ୍ୟକିରଣ ଓ ବର୍ଷା ସ୍ନାନକୁଦିବ୍ୟ ସ୍ନାନ, ଜଳରେ ନିମଜ୍ଜିତ ହୋଇ ସ୍ନାନ କରିବାକୁ, ବାରୁଣସ୍ନାନ, ଆତ୍ମଚିନ୍ତନ ସ୍ନାନକୁ ମାନସିକ ସ୍ନାନ କୁହାଯାଇଛି ।

ସ୍ନାନ ପୂର୍ବରୁ ଅଂଗରେ ଅଧୋଦତ୍ତ ମନ୍ତ୍ରରେ ମୃତ୍ତିକା ଲେପନ ବିଧି ।

ଅଶ୍ୱକ୍ରାନ୍ତେ ରଥକ୍ରାନ୍ତେ ବିଷ୍ଣୁକ୍ରାନ୍ତେ ବସୁନ୍ଧରେ ।

ମୃତ୍ତିକେ ହରମେ ପାପଂ ଜନ୍ମୟା ଦୁଷ୍କୃତଂ କୃତମ୍ ॥

(ଦକ୍ଷସ୍ମୃତି ୨।୪୬, ପଦ୍ମ ପୁ୨୦।୧୫୫)

ଗଂଗାଦେବୀଙ୍କର ଦ୍ୱାଦଶ ନାମ ଉଚ୍ଚାରଣ କରି ସ୍ନାନଜଳ (ଜଳାଶୟ ଆଦି) ରେ ପ୍ରବେଶ କରିବେ ।

ନନ୍ଦିନୀ ନନ୍ଦିନୀ ସୀତା ମାଳିନୀଦ୍ୱ ମହାପଗା

ବିଷ୍ଣୁ ପାଦାବ୍ଜ ସଂମ୍ଭୂତା ଗଂଗା ତ୍ରିପଥ ଗାମିନୀ ॥

ଭାଗିରଥୀ ଭୋଗବତୀ ଜାହ୍ନବୀ ତ୍ରିଦଶେଶ୍ୱରୀ

ଦ୍ୱାଦଶୈତାନି ନାମାନି ଯତ୍ର ଯତ୍ର ଜଳାଶୟେ

ସ୍ନାନୋଦ୍ୟତଃ ସ୍ମରେନ୍ନିତ୍ୟଂ ତତ୍ର ତତ୍ର ବସାମ୍ୟହମ୍ ॥

(ଆଚ୍ଛର ପ୍ରକାଶ ଆଚ୍ଛରେନ୍ଦୁ ପୃ-୪୫)

କ୍ରମଶଃ ଜଳର ସାପେକ୍ଷ ଶ୍ରେଷ୍ଠତା –

କୂପର ଜଳ ଅପେକ୍ଷା ଝରଣାଜଳ, ଝରଣାଜଳ ଅପେକ୍ଷା ସରୋବର ଜଳ ସରୋବର ଜଳ ଅପେକ୍ଷା ନଦୀଜଳ, ନଦୀଜଳ ଅପେକ୍ଷା ତୀର୍ଥଜଳ, ତୀର୍ଥ ଜଳ ଅପେକ୍ଷା ଗଂଗାଜଳ ଅଧିକ ଶ୍ରେଷ୍ଠ ଗୃହୀତ ।

ଜଳରେ ମଳମୂତ୍ର ତ୍ୟାଗ କରିବା ଥୁକି ପକାଇବା, ଅନୁଚିତ୍ । ଏପରିକି ବସ୍ତ୍ର ଚିପୁଡ଼ିବା ମଧ ଦୋଷାବହ । ସ୍ନାନାନ୍ତେ ସଂଧ୍ୟା ଉପାସନା କରିବା ପୂର୍ବରୁ ଦେବତର୍ପଣ, ଋଷିତର୍ପଣ, ପିତୃତର୍ପଣ କରିବା ବିଧି, ଏହାଦ୍ୱାରା ପଞ୍ଚମହାଭୂତ, ଜ୍ଞାନ ଗଂଗାରଧାରା ତଥା ନିଜସୃଷ୍ଟିର ପୂର୍ବପୁରୁଷ, ପୂର୍ବସୂରୀ ମାନଙ୍କୁ କୃତଜ୍ଞତା ଜ୍ଞାପନ କରାଯାଏ । ଆଜିର

ସ୍ଥିତି ପାଇଁ ସଂସ୍କୃତିର ବିକାଶ ପାଇଁ ସେମାନଙ୍କ ମହାନ୍ ତ୍ୟାଗକୁ ସ୍ୱୀକାର କରିବା ସହ ସେହିଧାରାର ପରିପୁଷ୍ଟି ନିମିତ୍ତ ନିଜକୁ କୃତ ସଂକଳ୍ପ କରାଯାଏ ।

ତିଳକଧାରଣ- ସଂଧ୍ୟା ପ୍ରାର୍ଥନା, ଜପ,ଧ୍ୟାନ କାର୍ଯ୍ୟ ସଂପନ୍ନ କରିବା ପୂର୍ବରୁ ତିଳକ ଧାରଣର ଆବଶ୍ୟକତା ରହିଛି ।

ମୃତ୍ତିକା ଚନ୍ଦନଂ ଚୈବ ଭସ୍ମତୋୟଂ ଚତୁର୍ଥକମ୍ ।

ଏଭିଦ୍ରବୈ ର୍ଯଥାକାଳ ମୂର୍ଦ୍ଧ୍ୱପୁଣ୍ଡ୍ର ସମାଚରେତ୍ ।(ବ୍ରହ୍ମାଣ୍ଡ ପୁରାଣ)

ଦୁଇ ଭ୍ରୂଲତା ମଧ୍ୟସ୍ଥ ଓ ନାସିକାର ଉପରି ଭାଗରେ ତିଳକ ଧାରଣ ପ୍ରଶସ୍ତ । ଏହା ଆଜ୍ଞା ଚକ୍ର ଏହାର ସ୍ୱର୍ଗ ଓ ବିଶିଷ୍ଟ ଦ୍ରବ୍ୟାନୁଲେପନ ଫଳରେ ମନୁଷ୍ୟର ନୂତନ ଜ୍ଞାନୋଦୟ ହୋଇଥାଏ ।

ଶିଖାବଂଧନ -ଯେଉଁଠାରେ ଶିଖା ରଖାଯାଏ, ସେହିଠାରେ ମେରୁଦଣ୍ଡ ଭିତରେ ସ୍ଥିତ ଜ୍ଞାନ ତଥା କ୍ରିୟାଶକ୍ତିର ଆଧାର ସୁଷୁମ୍ନା ନାଡୀର ଅନ୍ତିମଭାଗ । ଶରୀରର ଏହା ସର୍ବାଧିକ ମର୍ମସ୍ଥାନ । ଏହି ସ୍ଥାନରେ ଚୁଟୀ ରହିବା ଦ୍ୱାରା ମର୍ମ ସ୍ଥାନ କ୍ରିୟାଶକ୍ତି ତଥା ଜ୍ଞାନ ଶକ୍ତି ସୁରକ୍ଷିତ ରହେ । ଫଳତଃ ପ୍ରାର୍ଥନା, ଭଜନ, ଧ୍ୟାନ, ଦାନାଦି ଶୁଭକର୍ମ ସୁଚାରୁ ରୂପେ ସଂପନ୍ନ ହୋଇଥାଏ । ସଂଧ୍ୟାରେ ପ୍ରାଣାୟାମ ସୂର୍ଯ୍ୟାର୍ଘ୍ୟ ଆଦି ମନ୍ତ୍ରରେ ଅମ୍ବୁ ପ୍ରାସନ, ଅଘମର୍ଷଣ, ସୂର୍ଯ୍ୟୋପସ୍ଥାନ, କରି ସର୍ବନିମ୍ନ ୧୦୮ ବା ତଦୂର୍ଦ୍ଧ୍ୱ ଗାୟତ୍ରୀ ମନ୍ତ୍ର ଜପ କରିବା ବିଧି ।

ପଞ୍ଚ ମହାଯଜ୍ଞ- ବ୍ରହ୍ମ ଯଜ୍ଞ (ଋଷି ଯଜ୍ଞ), ପିତୃଯଜ୍ଞ, ଦେବଯଜ୍ଞ, ଭୂତଯଜ୍ଞ, (ବଳି ବୈଶ୍ୱଦେବ) ଓ ମନୁଷ୍ୟ ଯଜ୍ଞ । ବେଦଶାସ୍ତ୍ରର ପଠନ ପାଠନ ଏବଂ ସଂଧ୍ୟୋପାସନା, ଗାୟତ୍ରୀ ଜପ ଆଦି ବ୍ରହ୍ମଯଜ୍ଞ (ଋଷିଯଜ୍ଞ) ନିତ୍ୟଶ୍ରାଦ୍ଧ ତର୍ପଣ ପିତୃଯଜ୍ଞ, ହବନ ଦେବ ଯଜ୍ଞ, ବଳି ବୈଶ୍ୱଦେବ ଭୂତଯଜ୍ଞ ଓ ଅତିଥି ସତକାର ମନୁଷ୍ୟ ଯଜ୍ଞ । ଦେବଯଜ୍ଞ ଦ୍ୱାରା ଦେବତା , ଋଷି ଯଜ୍ଞଦ୍ୱାରା ଋଷି, ପିତୃଯଜ୍ଞ ଦ୍ୱାରା ପିତୃଗଣ, ମନୁଷ୍ୟ ଯଜ୍ଞଦ୍ୱାରା ମନୁଷ୍ୟ ଏବଂ ଭୂତଯଜ୍ଞ ଦ୍ୱାରା ଭୂତମାନଙ୍କର ତୃପ୍ତି ବିଧାନ ହୋଇଥାଏ ।

ଉପଯୁକ୍ତ ସମସ୍ତ ମହାଯଜ୍ଞର ତାତ୍ପର୍ଯ୍ୟ ସଂପୂର୍ଣ୍ଣ ଭୂତ ପ୍ରାଣୀମାନଙ୍କୁ ଅନ୍ନ, ଜଳଦ୍ୱାରା ସେବା କରିବା ଏବଂ ଅଧ୍ୟୟନ ଅଧ୍ୟାପନ, ଜପ ଉପାସନା ଆଦି ସ୍ୱାଧ୍ୟାୟ ଦ୍ୱାରା

---

୨୦. ଅଧ୍ୟାପନଂ ବ୍ରହ୍ମଯଜ୍ଞ ପିତୃଯଜ୍ଞ ସ୍ତୁତର୍ପଣମ୍ ।
ହୋମୋ ଦୈବୋ ବଳି ଭୌତୋ ନୃଯଜ୍ଞୋଽତିଥି ପୂଜନମ୍ ॥ (ମନୁ ୩/୭୦)

ସମସ୍ତଙ୍କର ହିତକାମନା କରିବା, ପରମେଶ୍ୱରଙ୍କ ସୃଷ୍ଟି ବିଧାନରେ ସହାୟତା କରିବା ଓ ସହଭାଗୀ ହୋଇ ତାହାର ପରିପୃଷ୍ଟି ସାଧନରେ ସହଯୋଗୀ କରିବ ।

ଆହାର- ପ୍ରାଣୀଙ୍କର ନେତ୍ର, ଶ୍ରୋତ୍ର, ସୁଖ ଆଦିଦ୍ୱାରା ଆହରଣୀୟ ରୂପ, ରସ ଶବ୍ଦ ଆଦି ଦ୍ୱାରା ବିଷୟ ରୂପ । ଆହାର ଶୁଦ୍ଧି ହେତୁ ମନର ଶୁଦ୍ଧି ହୋଇଥାଏ । ମନ ଶୁଦ୍ଧି ହେବାଦ୍ୱାରା ପରମତତ୍ତ୍ୱର ନିଶ୍ଚଳ ସ୍ମୃତି ହୋଇଥାଏ ।

ନିଶ୍ଚଳ ସ୍ମୃତିରେ ଗ୍ରନ୍ଥି ମୋକ୍ଷ ହୋଇଥାଏ । ବଳି ବୈଶ୍ୱଦେବ ପରେ ଗୋ, ଶ୍ୱାନ, କାକ, ଅତିଥି ତଥା କୀଟ ପତଙ୍ଗ ନିମିତ୍ତ ପଞ୍ଚବଳି ଦେବା ବିଧାନ । ଯାହା ଭୋଜନ ପୂର୍ବରୁ ସେହି ସେହି ଜୀବମାନଙ୍କୁ ଦେବା ଉଚିତ୍ । ନିଜର ଇଷ୍ଟଦେବଙ୍କୁ ନିବେଦିତ କରି ଈଶ୍ୱରଙ୍କୁ ସମର୍ପଣ ପୂର୍ବକ ପ୍ରସାଦ ରୂପରେ ଭୋଜନ କରିବାର ବିଧାନ ରହିଛି ।

ଆରମ୍ଭରେ ଓଁ ଭୂତପତୟେସ୍ୱାହା ଓଁ ଭୂବନ ପତୟେସ୍ୱାହା, ଓଁ ଭୂତାନାଂ ପତୟେସ୍ୱାହା, ଏହିମନ୍ତ୍ରରେ ତିନିଗ୍ରାସ ଦେବା ବିଧି । ଏହାର ତାତ୍ପର୍ଯ୍ୟ ସଂପୂର୍ଣ୍ଣ ପୃଥ୍ୱୀର ସ୍ୱାମୀ ଏବଂ ଚତୁର୍ଦ୍ଦଶ ଭୁବନର ସ୍ୱାମୀଙ୍କୁ ଚରାଚର ଜଗତର ପ୍ରାଣୀଙ୍କୁ ମୁଁ ଏହି ଅନ୍ନ ପ୍ରଦାନ କରୁଅଛି । ତତ୍‌ପରେ ଓଁ ପ୍ରାଣାୟସ୍ୱାହା, ଓଁ ଅପାନାୟସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା ଏହି ପାଞ୍ଚ ମନ୍ତ୍ରରେ ପାଞ୍ଚ ଗ୍ରାସ ଆତ୍ମାରୂପ ବ୍ରହ୍ମପାଇଁ ପଞ୍ଚ ଆହୁତି ରୂପରେ ନେବା ପ୍ରୟୋଜନ । ଭୋଜନ ଶେଷରେ ଅମୃତାପିଧାନମସି ଏହି ମନ୍ତ୍ରରେ ଆଚମନ କରିବା ବିଧି । ଆହାର ପବିତ୍ରତା ନିମିତ୍ତ ଆହାର ଉଚ୍ଛିଷ୍ଟ ନହେବା ଓ ସତ୍ୟନିଷ୍ଠ ଉପାୟରେ ଅର୍ଜିତ ଧନରେ ହେବା ବିଧି ।

କର୍ମକ୍ଷେତ୍ର- ଗୃହସ୍ଥ ଗୃହକର୍ମରେ ମନୋନିବେଶ କରିବା ବିଧେୟ । ଗୃହସ୍ଥାଶ୍ରମ ସକଳ ଆଶ୍ରମର ଆଧାର । ସ୍ମରଣ ଯୋଗ୍ୟ ଯେ ଆମର ସକଳ କର୍ମ ଈଶ୍ୱର ପ୍ରୀତ୍ୟର୍ଥେ ହେବା ଉଚିତ୍ । କର୍ମ କରିସାରିବା ପରେ କର୍ମଫଳକୁ ବିଭୁଚରଣରେ ସମର୍ପଣ କରିବା ବିଧେୟ । ଏହାଦ୍ୱାରା ମନୁଷ୍ୟ କର୍ମ ବନ୍ଧନରେ ବାନ୍ଧି ହୁଏ ନାହିଁ । ସମସ୍ତ କର୍ମ ଭଗବତ୍ ଆରାଧନାରେ ପରିଣତ ହୋଇଯାଏ । ବର୍ଣ୍ଣାଶ୍ରମ ବିହୀତ ତଥା ନିନ୍ଦା ରହିତ କାର୍ଯ୍ୟ ଦ୍ୱାରା ଧନସଂଚୟ କରିବା ନିମିତ୍ତ ସୂଚନା ରହିଛି ।

---

୨୧- ଆତ୍ମାର ଶୁଦ୍ଧୌ ସତ୍ତ୍ୱ ଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବାସ୍ମୃତିଃ ।
ସ୍ମୃତି ଲମ୍ଭେ ସର୍ବ ଗ୍ରନ୍ଥିନାଂ ବିପ୍ରମୋକ୍ଷଃ (ଛାନ୍ଦୋଗ୍ୟ ୦୭।୨୬।୨)

ଯାତ୍ରା ମାତ୍ର ପ୍ରସିଦ୍ଧ୍ୟର୍ଥଂ ସ୍ୱୈଃ କର୍ମଭିରଗର୍ହିତୈଃ ।

ଅକ୍ଳେଶେନ ଶରୀରସ୍ୟ କୁର୍ବିତ ଧନସଂଚୟମ୍ ॥

ଶୟନ ବିଧି- ଯେପରି ମନୁଷ୍ୟ ନିଦ୍ରା ତୁଟିଗଲା ପରେ ଶାନ୍ତ ଚିତ୍ତରେ ଯାହାର ଚିନ୍ତନ କରେ ତାର ଗଭୀର ପ୍ରଭାବ ପଡିଥାଏ । ଅନୁରୂପ ଭାବେ ଶୟନ ପୂର୍ବରୁ ଯାହାର ଚିନ୍ତା କରାଯାଏ ମନରେ ତାର ପ୍ରଭାବ ମଧ୍ୟ ବ୍ୟାପକ ହୋଇଥାଏ । ଶୟନ ପୂର୍ବରୁ ଈଶ୍ୱରୀୟ ଚେତନା, ବାଣୀ, ପୁରାଣାଦି ଶ୍ରବଣ ନିମିତ୍ତ ନିର୍ଦ୍ଦେଶ ରହିଛି (୨୨)। ଭୋଜନ ପୂର୍ବରୁ ଏହି କଥା ଶ୍ରବଣ ଦ୍ୱାରା ମନ ନିର୍ମଳ ହୋଇଥାଏ ।

ଶୟନ ପୂର୍ବରୁ ଦିନ ତମାମ କରିଥିବା କାର୍ଯ୍ୟକୁ ସମୀକ୍ଷା କରିବା ବିଧେୟ । କୃତକର୍ମରେ କୌଣସି ତୃଟି ବା କିଛି ଭୁଲକାର୍ଯ୍ୟ ହୋଇ ଯାଇଛି କି ? ଉପଯୁକ୍ତ ତ୍ରୁଟି ନିମିତ୍ତ ଈଶ୍ୱରଙ୍କ ନିକଟରେ କ୍ଷମାପ୍ରାର୍ଥନା କରିବା ବିଧି ଓ ପୁନଃ ଭବିଷ୍ୟତରେ ଏହା ନଘଟିବା ନିମିତ୍ତ ପ୍ରତିଜ୍ଞା କରିବା ପ୍ରୟୋଜନ । ଫଳରେ ଜୀବନ କର୍ମ ସରଣୀ ନିର୍ଦ୍ଦୋଶ ହେବ ।

ହାତ,ପାଦ ମୁଖ ଧୌତ କରି ଉପଯୁକ୍ତ (ତ୍ରୁଟିମୁକ୍ତ) ଶଯ୍ୟାରେ ଶୟନ କରିବା ଉତ୍ତମ କୁହାଯାଇଛି । ପୂର୍ବ ଦକ୍ଷିଣକୁ ଶିର କରି ଶୟନ କରାଯିବା ବିଧି ।

ସମସ୍ତ କାର୍ଯ୍ୟରେ ଦର୍ଶନ- ସଂପୂର୍ଣ୍ଣ ପଦାର୍ଥକୁ ନାଶବାନ୍, କ୍ଷଣଭଂଗୁର ସିଦ୍ଧାନ୍ତ କରି ନ୍ୟାୟୋପାର୍ଜିତ ପଦାର୍ଥର ବିବେକ ତଥା ବୈରାଗ୍ୟ ଯୁକ୍ତ ବୁଦ୍ଧିରେ ସମଭାବରେ ଗ୍ରହଣ କରିବା ଉଚିତ୍ । ଦର୍ଶନ, ଶ୍ରବଣ, ଭୋଜନାଦି କାର୍ଯ୍ୟ ରସବୁଦ୍ଧିକୁ ତ୍ୟାଗ କରି ପ୍ରୟୋଜନ, କର୍ତ୍ତବ୍ୟ ବୁଦ୍ଧିରେ ଭଗବତ୍ ପ୍ରାପ୍ତିର ସୋପାନ ସଦୃଶ ଜ୍ଞାନ କରି କରିବା ଉଚିତ୍ । ଆସକ୍ତି ରହିତ ହୋଇ ବିବେକ ବୈରାଗ୍ୟ ପୂର୍ବକ ଧର୍ମ ବୁଦ୍ଧିରେ ବିହିତ ବିଷୟ ସେବନ କରିବା ଉଚିତ୍ । ଏହି ପ୍ରକାର ସାଧନରତ ହୋଇ ପାରିଲେ ପରମାତ୍ମାଙ୍କ ରୂପରେ ସ୍ଥିର ଓ ଅଚଳ ସ୍ଥିତି ହୋଇଯିବ ତଥା ତାଙ୍କ ପ୍ରାପ୍ତି ମଧ୍ୟ ହୋଇପାରିବ ।



(୨୨) ମୁଚ୍ୟତେ ସର୍ବ ପାପେଭ୍ୟୋ ବ୍ରହ୍ମହତ୍ୟାଦିଭିର୍ବିଭୋ
ପୁରାଣଂ ସାତ୍ତ୍ୱିକଂ ରାତ୍ରୌ ଶୁଚିର୍ଭୂତ୍ୱା ଶୃଣୋତିଯଃ । (ଭବିଷ୍ୟପୁରାଣ)

# ଜୀବନ ଚର୍ଯ୍ୟା

୧. ଆଶ୍ରମ ବ୍ୟବସ୍ଥା - ଚତୁରାଶ୍ରମ ବ୍ୟବସ୍ଥା ଭାରତୀୟ ସଂସ୍କୃତି ଏବଂ ହିନ୍ଦୁଧର୍ମର ଏକ ପ୍ରମୁଖ ଅଂଶ । ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ସନ୍ୟାସ ଏହି ଚାରି ଆଶ୍ରମରେ ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ କର୍ମ ତାର ବର୍ଣ୍ଣ ସହିତ ଆଶ୍ରମ ମଧ୍ୟ ନିର୍ଭର କରିଥାଏ ।

(କ) ବ୍ରହ୍ମଚର୍ଯ୍ୟାଶ୍ରମ- ଗୁରୁକୁଳରେ ବିଦ୍ୟାଧ୍ୟୟନ ଠାରୁ ୨୫ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ଆଶ୍ରମ ଅନ୍ତର୍ଗତ ହୋଇଥାଏ । ପ୍ରାଚୀନ କାଳରେ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ବାଳକ ବିଦ୍ୟାଧ୍ୟୟନ କାଳ ସମାପ୍ତି ପର୍ଯ୍ୟନ୍ତ ଗୁରୁଗୃହ ବା ଆଶ୍ରମରେ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ । ନିୟମାନୁସାରେ ରହୁଥିଲେ । ଶୂଦ୍ର ବାଳକ ମଧ୍ୟ ଅଧିକାର ଅନୁସାରେ ଏହି ଉଚ୍ଚଆଦର୍ଶକୁ ଅନୁକରଣ କରୁଥିଲେ । ପରନାରୀ ସ୍ପର୍ଶ କଣ ତାର ଚିନ୍ତନ ମଧ୍ୟ ଅପରାଧ ଥିଲା ।୨୫ବର୍ଷ ଅବସ୍ଥା ପ୍ରାପ୍ତ ହେବା ପରେ ସମାବର୍ତ୍ତନ ସମାପନାନ୍ତେ ପାଣିଗ୍ରହଣ ସଂସ୍କାର ଦ୍ୱାରା ସେ ଗୃହସ୍ଥା ଶ୍ରମରେ ପ୍ରବେଶ କରୁଥିଲେ ।

(ଖ) ଗୃହସ୍ଥାଶ୍ରମ - ଆଶ୍ରମ ବ୍ୟବସ୍ଥାରେ ଗୃହସ୍ଥାଶ୍ରମକୁ ଏକ ମହତ୍ତ୍ୱପୂର୍ଣ୍ଣ ଆଶ୍ରମ ଭାବେ ଗ୍ରହଣ କରାଯାଇଛି । ଏହା ସମସ୍ତ ଆଶ୍ରମର ଆଧାର । ସମସ୍ତ ଜୀବନର ଦାୟିତ୍ୱ ନିର୍ବାହ ଏହି ଆଶ୍ରମରେ ହିଁ ହୋଇଥାଏ । ଯୁବାବସ୍ଥା ହେବାପରେ ବ୍ୟକ୍ତିଠାରେ ଏକ ବିଶେଷ ଶକ୍ତିର ସଂଚାର ହୋଇଥାଏ । ପଚାଷ ବର୍ଷ ଆୟୁ ପର୍ଯ୍ୟନ୍ତ ଶାସ୍ତ୍ରରେ ତାକୁ ଅଧିକାର ଦିଆଯାଇଛି କି ସେ ପିତୃଋଣରୁ ମୁକ୍ତ ହେବା ପାଇଁ ବଂଶବୃଦ୍ଧି ଅର୍ଥେ ସଂତାନ ଉତ୍ପାଦନ କରିବ ଏବଂ ଜୀବିକା ଉପାର୍ଜନ ପୂର୍ବକ ପରିବାରର ପାଳନ ପୋଷଣ କରିବ । ସମାଜ, ଦେଶ, ରାଷ୍ଟ୍ରର ସେବା କରିବ । ଗୃହସ୍ଥାଶ୍ରମର ଅନେକ କର୍ତ୍ତବ୍ୟ ବର୍ଣ୍ଣନା ପୁରାଣ ଆଦି ଗ୍ରନ୍ଥରେ ହୋଇଅଛି ।

(ଗ) ବାନପ୍ରସ୍ଥାଶ୍ରମ- ପଚାଷ ବର୍ଷ ହୋଇଗଲେ ବ୍ରହ୍ମଚର୍ଯ୍ୟ ଆଶ୍ରମର ଅଧିତବ୍ୟ ଜ୍ଞାନ ଏବଂ ଦ୍ୱିତୀୟ ପର୍ଯ୍ୟାୟ ସମାଜ ଅଧ୍ୟୟନ ଦ୍ୱାରା ସ୍ୱୟଂ ପରିପୁଷ୍ଟ ହୋଇଥାଏ ।

ଏହାପରେ ଜୀବନ ବିଳୟ ପଥରେ ଗତିକରେ । ସେତେବେଳକୁ ତାଙ୍କ ସଂତାନ ଯୁବାବସ୍ଥା ପ୍ରାପ୍ତ ହୋଇ ସାରିଥାନ୍ତି । ଭଗବତ୍ ଆରାଧନା ନିମିତ୍ତ ତାଙ୍କ ପ୍ରବୃତ୍ତି ଉନ୍ମୁଖ ହୋଇଥାଏ । ତେଣୁ ସେ ଗୃହସ୍ଥ ଜୀବନର ଦାୟିତ୍ୱକୁ ମୁକ୍ତ ହେବା ଭାବନା ଜାଗ୍ରତ ହେବା ସ୍ୱାଭାବିକ । ଅତଃ ଶାସ୍ତ୍ରକାର ୫୦ରୁ ୭୫ବର୍ଷ ପର୍ଯ୍ୟନ୍ତ ସମୟକୁ ବାନପ୍ରସ୍ଥ ଆଶ୍ରମର ବ୍ୟବସ୍ଥା କରିଅଛନ୍ତି । ଏହି ଆଶ୍ରମର ଗୃହସ୍ଥାଶ୍ରମର ସୁଖ (ଭୋଗ) ତ୍ୟାଗ କରି ବ୍ୟକ୍ତି ନିବୃତ୍ତିମାର୍ଗର ପଥରେ ଚଳିତ ହେବା ଉଚିତ୍, ମୁଖ୍ୟ ଭାବରେ ବଣରେ ଏକାନ୍ତରେ ଅଥବା ତୀର୍ଥ ସ୍ଥଳରେ ନିବାସ କରି ନିଷ୍କାମ କର୍ମ, ଭଗବତ୍ ଚିନ୍ତନ, ଆରାଧନା ଏବଂ ତପୋମୟ ଜୀବନ ବ୍ୟତୀତ କରିଥାଏ । ତୀର୍ଥଯାତ୍ରା ବ୍ରତ, ପରୋପକାର, ସମାଜସେବା ତଥା ଅନ୍ୟ ସକଳ ପାରମାର୍ଥିକ କାର୍ଯ୍ୟ ଏହି ଆଶ୍ରମରେ ସଂପନ୍ନ କରାଯାଇଥାଏ ।

(ଘ) ସନ୍ୟାସ ଆଶ୍ରମ- ଏହା ଜୀବନର ଅନ୍ତିମ ଆଶ୍ରମ, ସମସ୍ତ ପ୍ରକାର ଦାୟିତ୍ୱକୁ ସନ୍ୟାସ ନେବାର ବିଧାନ ଏହି ଆଶ୍ରମରେ ହୋଇଥାଏ । ଜୀବନ ନିର୍ବାହ ନିମିତ୍ତ ଯେଉଁ କର୍ମ କେବଳ ତାକୁ ବାଦ ଦେଇ ଅନ୍ୟ ସମସ୍ତ କର୍ମ ତ୍ୟାଜ୍ୟ ହୋଇଥାଏ । 'ସର୍ବଂ ଖଲ୍ୱିଦଂ ବ୍ରହ୍ମ'ର ଭାବନାରେ ବ୍ରହ୍ମଚିନ୍ତନ ହିଁ ଆପଣା ସମୟ ବ୍ୟତୀତ କରେ ।

ବର୍ଣ୍ଣାଶ୍ରମ ପୁନର୍ଜନ୍ମ ଏବଂ କର୍ମବାଦର ସିଦ୍ଧାନ୍ତ ଉପରେ ଅବଲମ୍ବିତ, ବର୍ଣ୍ଣାଶ୍ରମର ଅନ୍ତିମ ଲକ୍ଷ୍ୟ ଶିବତ୍ୱ ପ୍ରାପ୍ତି , ଜନ୍ମ ମରଣର ଚକ୍ରରୁ ମୁକ୍ତ ହେବା ମନୁଷ୍ୟ ଜୀବନର ପରମ ଓ ଚରମ ଲକ୍ଷ୍ୟ । ବର୍ଣ୍ଣାଶ୍ରମ ଏହି ସାଧନର ମାର୍ଗ ଉନ୍ମୁକ୍ତ କରିଥାଏ ।

ବ୍ରତୋପବାସ- ମନୁଷ୍ୟର କଲ୍ୟାଣ ନିମିତ୍ତ ଯଜ୍ଞ, ତପସ୍ୟା, ତୀର୍ଥାଟନ, ଦାନ ଆଦି ଅନେକ ସାଧନ ସୂଚିତ ହୋଇଅଛି, ତନ୍ମଧ୍ୟରୁ ବ୍ରତୋପବାସ ହେଉଛି ଏକ ସାଧନ । ଅନ୍ତଃକରଣ ଶୁଦ୍ଧିନିମିତ୍ତ ବ୍ରତୋପବାସର ଆବଶ୍ୟକତା ରହିଛି । ଏହାଦ୍ୱାରା ବୁଦ୍ଧି, ବିଚାର ତଥା ମେଧା ବିକଶିତ ହୋଇଥାଏ । ଶରୀରର ଅନ୍ତଃ ସ୍ଥଳରେ ପରମାତ୍ମାଙ୍କ ପ୍ରତି ଭକ୍ତି ଶ୍ରଦ୍ଧା ଏବଂ ତନ୍ମୟତା ସଂଚାର ହୋଇଥାଏ । ପରମାର୍ଥିକ ଲାଭ ସହିତ ଭୌତିକ ଲାଭ ମଧ୍ୟ ହୋଇଥାଏ । ବ୍ୟାପାର, ବ୍ୟବସାୟ, କଳାକୌଶଳ, ଶାସ୍ତ୍ରାନୁସଂଧାନ ଏବଂ ଉତ୍ସାହ ପୂର୍ବକ ବ୍ୟବହାର କୁଶଳତା ସଫଳ ସଂପାଦନ କରିବା ପାଇଁ ମନ ନିଗ୍ରହୀତ ରହିଥାଏ । ଯଦ୍ୱାରା ସୁଖମୟ ଦୀର୍ଘ ଜୀବନର ସ୍ୱତଃ ସଂଚୟ ହୋଇଯାଇଥାଏ ।

ଯଦ୍ୟପି ରୋଗ ମଧ୍ୟ ପାପ ଏବଂ ଏହିପରି ପାପ ବ୍ରତ ଦ୍ୱାରା ଦୂର ହୋଇଥାଏ । କାୟିକ, ବାଚିକ, ମାନସିକ ଏବଂ ସାଂସର୍ଗିକ ପାପ, ଉପପାପ, ମହାପାପ ଆଦି ବ୍ରତୋପବାସ ଦ୍ୱାରା ଦୂର ହୁଏ । ସମଧିକ ପୁଣ୍ୟ ପ୍ରାପ୍ତି ନିମିତ୍ତ ପାବନ ତୀର୍ଥରେ

ଉପବାସ କରି ବା କୌଣସି କର୍ମାନୁଷ୍ଠାନ ଦ୍ୱାରା ପୁଣ୍ୟ ସଂଚୟ କରିବାର ସଂକଳ୍ପକୁ ବ୍ରତ କୁହାଯାଏ । ଯମ-ନିୟମ, ଶମ-ଦମ, ଆଦିର ପାଳନ ଭୋଜନ ଆଦିର ପରିତ୍ୟାଗ । ଅଥବା ଜଳ -ଫଳ ଆଦିରେ ଜୀବନଧାରଣ, ସମସ୍ତ ଭୋଗ-ତ୍ୟାଗ, ଏ ସମସ୍ତ ବ୍ରତ ଅନ୍ତର୍ଗତ ସମାହିତ ହୋଇଥାଏ । ଶାସ୍ତ୍ର ନିୟମ ଆଧାରରେ ହିଁ ବ୍ରତ କୁହାଯାଏ । ବ୍ରତରେ ଶାରୀରିକ ସନ୍ତାପ ସହିବାକୁ ପଡିଥାଏ । ଏଣୁ ଏହାକୁ ତପ କୁହାଯାଏ । ଇନ୍ଦ୍ରିୟ ନିଗ୍ରହକୁ ଦମ ଓ ମନୋ ନିଗ୍ରହକୁ ଶମ କୁହାଯାଏ । ବ୍ରତରେ ଇନ୍ଦ୍ରିୟ ନିୟମକ (ସଂଜମ) କରିବାକୁ ହୁଏ । ଏହାକୁ ନିୟମ କୁହାଯାଏ । ଏହାର ପାଳନରେ ଦେବଗଣ ବ୍ରତୀ ଉପରେ ପ୍ରସନ୍ନ ହୋଇ ଭୋଗ ତଥା ମୋକ୍ଷ ସମସ୍ତ ସୁଖ ପ୍ରଦାନ କରିଥାନ୍ତି । କ୍ଷମା, ସତ୍ୟ, ଦାନ , ଦୟା, ଶୌଚ ଇନ୍ଦ୍ରିୟ ସଂଯମ, ଦେବପୂଜା, ହବନ, ସଂତୋଷ ଅସ୍ତୈର୍ଯ୍ୟ ଏ ସମସ୍ତ ନିୟମର ପାଳନ ପ୍ରାୟ ସମସ୍ତ ବ୍ରତରେ ଆବଶ୍ୟକ ।

କ୍ଷମା ସତ୍ୟଂ ଦୟା ଦାନ ଶୌଚ ମିନ୍ଦ୍ରିୟ ନିଗ୍ରହଃ ।
ଦେବ ପୂଜାଗ୍ନି ହରଣଂ ସନ୍ତୋଷାଽସ୍ତେୟ ମେବ ଚ ।
ସର୍ବବ୍ରତେଷ୍ୱୟଂ ଧର୍ମଃ ସାମାନ୍ୟୋ ଦଶଧା ସ୍ମୃତ ।
(ଅଗ୍ନିପୁରାଣ ୧୭୫-୧୦-୧୧)

ଏହି ବ୍ରତୋପବାସରେ ବ୍ୟକ୍ତି ସାତ୍ତ୍ୱିକ ଜୀବନ ଆଶ୍ରୟ କରି ନିଜର ତ୍ରିବିଧ ପାପକୁ ଦୂର କରିବା ପାଇଁ ଓ ଚିତ୍ତ ଶୁଦ୍ଧିନିମିତ୍ତ, ବିଶେଷ କରି ଭଗବତ୍ ପ୍ରାପ୍ତି ପାଇଁ ଏହାର ଅନୁଷ୍ଠାନ କରିବା ବିଧି । ଫଳସ୍ୱରୂପ ବିବେକ ଶକ୍ତିର ଉଦୟ, ସତ୍-ଅସତ୍‌ର ନିର୍ଣ୍ଣୟ ହୋଇଥାଏ । ଶେଷରେ ସନ୍ମାର୍ଗରେ ପ୍ରବୃତ୍ତହୋଇ କର୍ତ୍ତା ଲୌକିକ ତଥା ପାରଲୌକିକ ସୁଖ ପ୍ରାପ୍ତ ହୋଇଥାଏ । ଏଥିପାଇଁ କୁହାଯାଇଛି, ବ୍ରତୋପବାସ ଅନୁଷ୍ଠାନରେ ପାପର ପ୍ରଶମନ ହୋଇଥାଏ । ଦେବତାଙ୍କ ଆଶ୍ରୟ ପ୍ରାପ୍ତ ହୋଇଥାଏ । ବ୍ରତୀ ଉପରେ ଦେବତା ପ୍ରସନ୍ନ ହୋଇ ଅଭୀଷ୍ଟ ମନୋରଥ ପ୍ରାପ୍ତ କରାଇଥାଆନ୍ତି । ସଂସାରର ସକଳ ଦୁଃଖରୁ ରହିତ ହୋଇ ସ୍ୱର୍ଗ ଲୋକର ଐଶ୍ୱର୍ଯ୍ୟ ଭୋଗକରେ ତଥା ଦେବତାମାନଙ୍କ ଦ୍ୱାରା ସମ୍ମାନ ଲାଭ କରେ ।

---

ବିଷ୍ଣୁପୁରାଣ, ମାର୍କଣ୍ଡେୟ ପୁରାଣ- ମଦାଳସାଳର୍କ ସଂବାଦ, ଭବିଷ୍ୟୋତ୍ତର -ଶ୍ରୀକୃଷ୍ଣ ଯୁଧିଷ୍ଠିର ସଂବାଦେ, ବିଷ୍ଣୁ ପୁରାଣେ, ଗୃହୀଧର୍ମ ପ୍ରସଂଗ, କାଶିଖଣ୍ଡେ, ସ୍କନ୍ଦାଗସ୍ତ୍ୟ ସମ୍ବାଦେ, ହରିଭକ୍ତି ବିଳାସ ତୃତୀୟ ବିଳାସଃ (ପୃ-୧୦୩-୧୦୪,୧୦୫-୧୦୬)

ଦାନପ୍ରକରଣ- ମନୁଷ୍ୟ ଜୀବନରେ ଦାନର ଅତ୍ୟଧିକ ମହତ୍ତ୍ୱ ନିର୍ଦ୍ଦେଶିତ ହୋଇଛି । ଏହା ଏକ ପ୍ରକାର ନିତ୍ୟ କର୍ମ । ମନୁଷ୍ୟକୁ ପ୍ରତିଦିନ କିଛି ନା କିଛି ଦାନ କରିବା ଉଚିତ୍ । ଶ୍ରଦ୍ଧୟା ଦେୟମ୍, ହ୍ରିୟା ଦେୟମ୍, ଭିୟା ଦେୟମ୍, ଦାନକୁ ଶ୍ରଦ୍ଧାରେ ଦିଅନ୍ତୁ ଅଥବା ଲଜ୍ଜାରେ ଦିଅନ୍ତୁ, ବା ଭୟରେ ଦିଅନ୍ତୁ କିନ୍ତୁ କୌଣସି ପ୍ରକାରେ ଦିଅନ୍ତୁ । ମାନବ ଜାତି ପାଇଁ ଦାନ ପରମ ଆବଶ୍ୟକ । ଦାନ ବିନା ମନୁଷ୍ୟର ଉନ୍ନତି ଅବରୁଦ୍ଧ ହୋଇଯାଏ । ଅତଃ ମାନବ ଅଭ୍ୟୁଦୟ ପାଇଁ ଦାନ ଅବଶ୍ୟ କରିବା ଉଚିତ୍ ।

ଶାସ୍ତ୍ରରେ କୁହାଯାଇଛି ବିଭବୋ ଦାନ ଶକ୍ତିଷ୍ଟ ମହତାଂ ତପସା ଫଳମ୍ । ବିଭବ ଏବଂ ଦାନ ଦେବାର ସାମର୍ଥ୍ୟ ଅର୍ଥାତ୍ ମାନସିକ ଉଦାରତା -ଏ ଦୁଇଟି ତପସ୍ୟାର ଫଳ, ବିଭବ ହେଲେ ତା ସାମର୍ଥ୍ୟର କଥା ଆସୁଛି ଏହା କୌଣସି ପ୍ରକାରେ ହୋଇପାରେ କିନ୍ତୁ ଏହି ବିଭବକୁ ଅନ୍ୟ ପାଇଁ ଦେବା ମନର ଉଦାରତା ଉପରେ ନିର୍ଭରକରେ ଯାହା ଜନ୍ମ ଜନ୍ମାନ୍ତର ପୁଣ୍ୟ ଦ୍ୱାରା ପ୍ରାପ୍ତ ହୋଇଥାଏ ।

ଶାସ୍ତ୍ରରେ ଦାନ ନିମିତ୍ତ ସ୍ଥାନ, କାଳ ଓ ପାତ୍ରର ବିଶେଷ ବିଚାର ହୋଇଛି । ଦାନ କୌଣସି ଶୁଭ ସ୍ଥାନରେ ତୀର୍ଥ ଆଦିରେ ଶୁଭକାଳରେ ତଥା ବିହିତ ମୁହୂର୍ତ୍ତରେ ସତ୍ ପାତ୍ରରେ ଦେବା ଉଚିତ୍ । ଯଦ୍ୟପି ଏହି ବିଚାର ସର୍ବଥା ଉଚିତ କିନ୍ତୁ ଅବସରରେ ମଧ୍ୟ ଯଦି ସୁଯୋଗ ମିଳେ ଦାନର ସ୍ୱୟଂ ଏକ ବିଶିଷ୍ଟତା ହୋଇଥାଏ । ଯେଉଁ ପାତ୍ରର ଆବଶ୍ୟକତା ରହିଛି, ଯେଉଁ ସ୍ଥାନରେ ପ୍ରୟୋଜନ ରହିଛି, ଯେଉଁ କାଳରେ ବାଂଛିତ ହେଉଛି, ସେହିକ୍ଷଣ ଦାନ ଦେବା ବିଶେଷ ମହତ୍ତ୍ୱ ରହିଛି । ଅନ୍ନ, ଆବାସ, ଭୂମି ଆଦିର ଯେଉଁ ସହାୟତା ପ୍ରଦାନ କରାଯାଇଥାଏ, ଏହା ସେହି କୋଟୀର ଦାନ । ଏହି ଦାନ ବ୍ୟକ୍ତିଗତ ବା ସାମୂହିକ ପ୍ରକାରରେ ହୋଇଥାଏ । ଶାସ୍ତ୍ର ପୁରାଣରେ ଏହାର ବିବିଧ ସ୍ୱରୂପ ଦେଖିବାକୁ ମିଳେ ।

(୧) ଦୈନିକ ଜୀବନରେ ଆମେ ଯେପରି ଅନ୍ୟ କାର୍ଯ୍ୟମାନ କରୁଅଛୁ, ସେହିପରି ଦାନ ମଧ୍ୟ ନିୟମ ପୂର୍ବକ କରିବା ପ୍ରୟୋଜନ । ଏହି ପ୍ରକାର ଦାନ ମଧ୍ୟରେ ଅନ୍ନଦାନର ବିଶେଷ ମହତ୍ତ୍ୱ ।

(୨) ବିଭିନ୍ନ ପର୍ବ ଏବଂ ବିଶେଷ ଅବସରରେ ଯେଉଁଦାନ ଦିଆଯାଇଥାଏ ତାକୁ ନୈମିତ୍ତିକ ଦାନ କୁହାଯାଏ । ଯେପରି ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ତାମ୍ର ତଥା ରଜତ ପାତ୍ରରେ କଳାତିଳ, ସ୍ୱର୍ଣ୍ଣଦ୍ରବ୍ୟର ଦାନ । ଏକାଦଶୀ ପୂର୍ଣ୍ଣିମା, ଅମାବାସ୍ୟା, ସଂକ୍ରାନ୍ତି, ବ୍ୟତିପାତ ଆଦି ପୁଣ୍ୟକାଳରେ ବିଶେଷ ରୂପେ ଦାନର ପ୍ରତିପାଦନ

କରାଯାଇଛି । ଏଥିରେ ଅନ୍ନଦାନ, ଦ୍ରବ୍ୟଦାନ, ସ୍ୱର୍ଣ୍ଣଦାନ ଭୂମିଦାନ, ଗୋଦାନ ଆଦି ବିଶେଷ ମହତ୍ତ୍ୱପୂର୍ଣ୍ଣ ।

(୩) କେତେକ ପୁରାଣରେ ଏପରି କିଛି ଦାନର ମହତ୍ତ୍ୱ ରହିଛି, ଯାହା ମନୁଷ୍ୟର କାମନା ପୂର୍ତ୍ତି ନିମିତ୍ତ କରାଯାଇଥାଏ । ଯନ୍ମଧ୍ୟରେ ତୁଳାଦାନ, ଗୋଦାନ, ଭୂମିଦାନ, ସ୍ୱର୍ଣ୍ଣଦାନ, ଘଟଦାନ ଆଦି ଏବଂଅଷ୍ଟ ଏବଂ ଷୋଡଶ ମହାଦାନ ପରିଗଣିତ ହୁଏ । ସମସ୍ତ କାମ୍ୟ କିନ୍ତୁ ନିଃସ୍ୱାର୍ଥ ଭାବରେ ଭଗବାନଙ୍କୁ ପ୍ରସନ୍ନ କରିବା ପାଇଁ ଭଗବତ୍ ଅର୍ପଣ ବିଗ୍ରହରେ କରାଯାଏ ତେବେ ଏହା ବ୍ରହ୍ମ ସମାଧିରେ ପରିଣତ ହୋଇ ଭଗବତ୍ ପ୍ରାପ୍ତିରେ ବିଶେଷ ସହାୟତା କରିଥାଏ ।

(୪) ସମୂହ କଲ୍ୟାଣ- କିଛି ଦାନ ବହୁଜନ ହିତାୟ, ବହୁଜନ ସୁଖାୟ ଭାବନାରେ ସର୍ବସାଧାରଣ ହିତରେ କରିବାର ପରମ୍ପରା ରହିଛି । ଦେବାଳୟ, ବିଦ୍ୟାଳୟ, ଔଷଧାଳୟ, ଭୋଜନାଳୟ, ଗୋଶାଳା, ଧର୍ମଶାଳା, କୂପ, ପୁଷ୍କରିଣୀ ଆଦି ସର୍ବ ଜନୋପଯୋଗୀ ସ୍ଥାନର ନିର୍ମାଣ ଆଦି କାର୍ଯ୍ୟ ଯଦି ନ୍ୟାୟୋପାର୍ଜିତ ଦ୍ରବ୍ୟରେ ବିନା ଯଶ କାମନାରେ ଭଗବତ୍ ପ୍ରୀତ୍ୟର୍ଥ କରାଯାଏ ତାହା ପରମ କଲ୍ୟାଣକାରୀ ହୋଇଥାଏ ।

ସାଧାରଣ ଭାବେ ନ୍ୟାୟୋପାର୍ଜିତ ବିତ୍ତର ଏକ ଦଶମାଂଶ ବୁଦ୍ଧିମାନ ବ୍ୟକ୍ତିକୁ ଦାନ କାର୍ଯ୍ୟରେ ଈଶ୍ୱର ପ୍ରସନ୍ନତା ପାଇଁ ନିୟୋଜିତ କରିବା ଉଚିତ୍ ।

ନ୍ୟାୟୋପାର୍ଜିତ ବିତ୍ତସ୍ୟ ଦଶମାଂଶେନ ଧୀମତଃ ।
କର୍ତ୍ତବ୍ୟୋ ବିନି ଯୋଗଶ୍ଚ ଈଶ୍ୱର ପ୍ରୀତ୍ୟର୍ଥମେବଚ ॥

ଅନ୍ୟାୟ ପୂର୍ବକ ଅର୍ଜିତ ଧନର ଦାନ କରିବାରେ କୌଣସି ପୁଣ୍ୟ ହୋଇନଥାଏ । ନ୍ୟାୟୋପାର୍ଜିତ ବିତ୍ତସ୍ୟ ଉକ୍ତିରୁ ଏହା ସ୍ପଷ୍ଟ ହୁଏ । ଅନ୍ୟାୟ ଉପାର୍ଜିତ ଧନରେ କରାଯାଇଥିବା କର୍ମ ବ୍ୟର୍ଥ । ଏଥିରେ ଲୋକରେ କୀର୍ତ୍ତି ହୁଏ ନାହିଁ କିମ୍ବା ପରଲୋକରେ କୌଣସି ପରମାର୍ଥିକ ଫଳ ମିଳେ ନାହିଁ (ଦେବୀ ଭାଗବତ (୩।୧୨।୮) ପୂର୍ବରୁ ଯେଉଁ ଦଶମାଂଶ ଦାନ ପ୍ରସଙ୍ଗ ଉପାର୍ଜିତ ସଂପତ୍ତି ସଂପର୍କରେ ଚର୍ଚ୍ଚା ହୋଇଛି ତାହା ସାମାନ୍ୟ. ବା ସାଧାରଣ ସ୍ତରର ବ୍ୟକ୍ତି ବିଶେଷଙ୍କ ପାଇଁ । କିନ୍ତୁ ବୈଭବଶାଳୀ ବ୍ୟକ୍ତି, ଧନୀକ ଓ ଉଦାରଚେତା ବ୍ୟକ୍ତିଗଣ ସ୍ୱ ଉପାର୍ଜିତ ଧନକୁ ପାଞ୍ଚ ଭାଗରେ ବିଭକ୍ତ କରିବା ଉଚିତ୍ ।

ଧର୍ମାୟ ଯଶସେଽର୍ଥାୟ କାମାୟ ସ୍ୱଜନାୟଚ ।
ପଞ୍ଚଧା ବିଭଜନ୍ ବିତ୍ତ ମିହାସୂତ୍ର ଚ ମୋଦତେ ॥

(୧) ଧର୍ମ, (୨) ଯଶ, (୩) ଅର୍ଥ (ବ୍ୟାପାର ଆଜି ଆଜୀବିକା) (୪) କାମ (ଜୀବନ ଉପଯୋଗୀ ଭୋଗ) ଏବଂ (୫) ସ୍ୱଜନ ପରିବାର ନିମିତ୍ତ । ଏହିପରି ବିଭାଜନ କରି ସମୁଦାୟ ଅର୍ଜିତ ସଂପତ୍ତିର ବ୍ୟବହାର କରାଗଲେ (ସେ) ଇହଲୋକ ଓ ପରଲୋକରେ ମଧ୍ୟ ଆନନ୍ଦ ପ୍ରାପ୍ତି କରିଥାଏ ।

ଯେଉଁ ବ୍ୟକ୍ତି ଅତ୍ୟନ୍ତ ନିର୍ଧନ, ଅନାବଶ୍ୟକ ଗୋଟିଏ ପଇସା ମଧ୍ୟ ଖର୍ଚ୍ଚ କରେନାହିଁ ଅତ୍ୟନ୍ତ କଷ୍ଟରେ କୁଟୁମ୍ବ ପ୍ରତିପୋଷଣ କରୁଛି ଏପରି ବ୍ୟକ୍ତି ପାଇଁ ଦାନ କରିବାର ବିଧାନ ଶାସ୍ତ୍ର ମନା କରିଛି । ଯଦି ପୁଣ୍ୟ ଲାଭ ଲାଳସାରେ ପାଳନୀୟ ବୃଦ୍ଧ ମାତା ପିତା ତଥା ସାଧ୍ୱୀ ପତ୍ନୀ ଓ ଶିଶୁଙ୍କ ପାଳନ ନକରି ସେମାନଙ୍କ ପେଟରୁ କାଟି ଯେଉଁ ଦାନ କରିଥାଏ, ତହିଁରେ ପୁଣ୍ୟ ହୁଏନାହିଁ, ପାପ ହୋଇଥାଏ ।

ଶକ୍ତଃ ପରଜନେ ଦାତା ସ୍ୱଜନେ ଦୁଃଖ ଜୀବିନୀ ।
ମଧ୍ୱା ପାତେ ବିଷା ସ୍ୱାଦଃ ସଧର୍ମ ପ୍ରତିରୂପକଃ ॥

ଯେଉଁ ଧନୀକ ନିଜର ସ୍ୱଜନ ପରିବାରର ଲୋକଙ୍କୁ ଦୁଃଖ ପୂର୍ବକ ଜୀବିତ କରିବା ପରେ ତାଙ୍କ ପାଳନ କରିବାରେ ସମର୍ଥ ଥାଇ ମଧ୍ୟ ପାଳନ କରି ବିପ୍ରଙ୍କୁ ଦାନ ଦିଏ ସେହି ଦାନ ମଧୁମିଶ୍ରିତ ବିଷ ପ୍ରାୟ ସ୍ୱାଦପ୍ରଦ ଏବଂ ଧର୍ମ ରୂପ ଅଧର୍ମ ।

ପୁରାଣରେ ଦାନ ସଂବଧରେ ଏହା ମଧ୍ୟ କୁହାଯାଇଛି । ଯେତିକିରେ ପେଟ ପୁରି ଯାଉଛି, ସେତିକିରେ ମନୁଷ୍ୟର ଅଧିକାର । ଏହାଠାରୁ ବେଶୀରେ ଯେ ଅଧିକାର ସାବ୍ୟସ୍ତ କରେ ସେ ଚୋର, ସେ ଦଣ୍ଡଭାଗୀ ହୋଇଥାଏ ।

ଯାବଦ୍ ଭ୍ରିୟତ ଜଠରଂ ତାବତ୍ ସ୍ୱତ୍ୱଂ ହି ଦେହନାମ୍ ।
ଅଧିକଂ ଯୋଽଭିମନ୍ୟତେ ସସ୍ତେନୋ ଦଣ୍ଡ ମର୍ହତି ॥

ତୀର୍ଥଯାତ୍ରା- ଭାରତୀୟ ସଂସ୍କୃତିରେ ତୀର୍ଥ ଯାତ୍ରାର ବିଶେଷ ମହତ୍ତ୍ୱ ରହିଛି । ଦେଶର ପଞ୍ଚଭୂତ ଭୂମି, ଜଳ, ବାୟୁ, ତେଜ, ଆକାଶ (ବାତାବରଣ)ରେ କାମ, କ୍ରୋଧାଦି ମାନସିକ ରୋଗକୁ ଦୂର କରିବାର ବିଶେଷ ଯୋଗ୍ୟତା ରହିଛି । ସେହି ବିଶିଷ୍ଟ ସ୍ଥାନମାନଙ୍କୁ ଶାସ୍ତ୍ରୀୟ ଭାଷାରେ ତୀର୍ଥ କୁହାଯାଏ । ଯେଉଁ ସ୍ଥାନର ପ୍ରଭା ଶରୀର ଉପରେ ଯେପରି ପଡିଥାଏ । ସେହିପରି ସାତ୍ତ୍ୱିକ, ରାଜସିକ ଓ ତାମସିକ ଗୁଣ ମନ ଉପରେ ପଡି କ୍ରିୟାଶୀଳ ହୋଇଥାଏ । ତଥାପି ସାତ୍ତ୍ୱିକ ପ୍ରଭାବ ପକାଉଥିବା ସ୍ଥାନ ବିଶେଷ ତୀର୍ଥ ନାମରେ ବିଦିତ ।

ଭଗବାନଙ୍କ ଅବତାରର ପ୍ରାକଟ୍ୟ ସ୍ଥଳ , ବ୍ରହ୍ମା ଆଦି ବିଶିଷ୍ଟ ଦେବଙ୍କ ଯଜ୍ଞସ୍ଥଳ, ଏବଂ କ୍ଷେତ୍ର, ବିଶିଷ୍ଟ ନଦୀ ସଂଗମ ସ୍ଥଳ, ପବିତ୍ର, ବନ, ପର୍ବତ, ଦେବସ୍ଥାନ,

ଝରଣା, ହ୍ରଦ, ପ୍ରଭାବନ୍ତ ସନ୍ଥ, ଭକ୍ତ, ଋଷି, ମୁନି ମହାତ୍ମାଙ୍କ ତପସ୍ଥଳି, ସାଧନା କ୍ଷେତ୍ର ଆଦିକୁ ତୀର୍ଥ କୁହାଯାଇଥାଏ । ତୀର୍ଥକୁ ଯିବାଦ୍ୱାରା ସତ୍‌ସଂଗ ସହିତ ସେହି ସ୍ଥାନର ପୂର୍ବୋକ୍ତ ସମସ୍ତ ତତ୍ତ୍ୱ ସୂକ୍ଷ୍ମ, ତେଜସ୍ୱୀ ସଂସ୍କାର ଉପଲବଧ ହୋଇଥାଏ । ପୂର୍ବ ପାପର ବିନାଶ ଏବଂ ପୂଣ୍ୟ ସଂଚିତ ହୋଇଥାଏ ।

ପ୍ରଭାବାଦ୍ ଭୁତାଦ୍ ଭୂମେଃ ସଲିଳସ୍ୟ ଚ ତେଜସା ।
ପରିଗ୍ରହାନ୍ ମୁନିନାଂ ଚ ତୀର୍ଥାନାଂ ପୁଣ୍ୟଦା ସ୍ମୃତା ॥

ଶ୍ରଦ୍ଧା ଏବଂ ବିଶ୍ୱାସ ଦ୍ୱାରା ତୀର୍ଥର ଫଳ ସମଧିକ ବୃଦ୍ଧି ହୋଇଥାଏ । ତୀର୍ଥକୁ ଯାଉଥିବା ତଥା ରହୁଥିବା ବ୍ୟକ୍ତି ପରିଗ୍ରହ, କାମ, କ୍ରୋଧ, ଲୋଭ, ମୋହ, ଦମ୍ଭ ପରନିନ୍ଦା ତଥା ଈର୍ଷା ଦ୍ୱେଷରୁ ସୁରକ୍ଷିତ ରହିବା ଉଚିତ । ତୀର୍ଥରେ ପାପ କରିବା ଦ୍ୱାରା ପାପ ଗୁଣିତ ହୋଇଥାଏ ଅତଃ ତୀର୍ଥରେ ପାପରୁ ସର୍ବଥା ଦୂର ରହିବା ଉଚିତ୍ ।

ଭାରତର ଚାରିଧାମ ଏବଂ ସପ୍ତପୁରି ତଥା ଭଗବାନ ଶ୍ରୀରାମ- ଶ୍ରୀକୃଷ୍ଣଙ୍କ ଆବାସସ୍ଥଳ, ବଦ୍ରିକାଆଶ୍ରମ, ରାମେଶ୍ୱରମ୍ ବରିଷ୍ଠ ଅବତାରଙ୍କ ଲୀଳା ତଥା ତପସ୍ୟା ସ୍ଥଳ, ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, ଗଂଗାଦି ନଦୀଙ୍କ ନାମ ନେଲା ମାତ୍ରେ ସାଧକ ପରିତ୍ରାଣ ହୁଅନ୍ତି । ଅନୁରୂପ ଭାବେ ପୁଷ୍କର, ମାନସରୋବର ଆଦି ବ୍ରହ୍ମାଙ୍କ ମାନସୋତ୍ପନ୍ନ ହେବା ହେତୁ ଏବଂ ତାଙ୍କ ଦ୍ୱାରା ଯଜ୍ଞ ଆଦି କରାଯାଇଥିବାରୁ ତାହା ମହାନ ତୀର୍ଥ । ଯାହାଙ୍କ ମନ ସଂଜତ ତଥା ଏକମୁଖୀ ହୋଇଥାଏ, ତାଙ୍କୁ ତୀର୍ଥର ଫଳ ଯଥୋଚିତ ମିଳିଥାଏ ।

ମାନସ ତୀର୍ଥ- ମହର୍ଷି ଅଗସ୍ତି ଲୋପାମୁଦ୍ରାଙ୍କୁ ମାନସ ତୀର୍ଥ ସଂପର୍କରେ ବର୍ଣ୍ଣନା କରି କହୁଛନ୍ତି- ଯେଉଁ ତୀର୍ଥରେ ସ୍ନାନ କରିବା ଦ୍ୱାରା ମନୁଷ୍ୟ ପରମ ଗତି ପ୍ରାପ୍ତ ହୁଏ, ତାହା ଗୁଣ, ସତ୍ୟ, କ୍ଷମା, ଇନ୍ଦ୍ରିୟ ସଂଜମ, ପ୍ରାଣୀଙ୍କ ପ୍ରତିଦୟା, ସରଳତା, ଦାନ, ମନ ସଂଯମ, ସଂତୋଷ, ବ୍ରହ୍ମଚର୍ଯ୍ୟ, ପ୍ରିୟଭାଷଣ, ଜ୍ଞାନ, ଧୃତି ଓ ତପସ୍ୟା ଏ ପ୍ରତ୍ୟେକ ଗୋଟିଏ ଗୋଟିଏ ତୀର୍ଥ । ଏଥି ମଧ୍ୟରୁ ବ୍ରହ୍ମଚର୍ଯ୍ୟ ପରମ ତୀର୍ଥ । ଜଳରେ ବୁଡି ପଡିବା ସ୍ନାନ ନୁହେଁ, ଯଦ୍ୱାରା ଇନ୍ଦ୍ରିୟ ସଂଯମ ରୂପ ସ୍ନାନ କରାଯାଏ, ତାହା ହେଉଛି ଯଥାର୍ଥ ସ୍ନାନ ଏବଂ ଯାହାର ଚିତ୍ତ ଶୁଦ୍ଧି ହୋଇଗଲା ସେ ପବିତ୍ର ହେଲା ।

ମତ୍ସ୍ୟ, ମଗର ଆଦି ଜଳଜନ୍ତୁ ଜଳରେ ଜନ୍ମ ହୋଇ ଜଳରେ ମରନ୍ତି କିନ୍ତୁ ସେମାନେ ସ୍ୱର୍ଗବାସୀ ହୋଇନଥାନ୍ତି । କାରଣ ସେମାନଙ୍କ ମନରୁ ମଳ ନାଶ ହୋଇ ନଥାଏ । ବିଷୟାରେ ଅନୁରାଗ ହିଁ ମଳ, ବିଷୟାରୁ ବୈରାଗ୍ୟ ହିଁ ନିର୍ମଳତା । ଚିତ୍ତ ଅନ୍ତସ୍ଥ ବିଚାର । ଏହା ଦୂଷିତ ହୋଇଥିଲେ କେବଳ ତୀର୍ଥ ସ୍ନାନରେ ଶୁଦ୍ଧ ହୋଇନଥାଏ । ଯେ ଯାବତ୍ ମନର ଶୁଦ୍ଧି ନ ହୋଇଛି, ସେ ଯାବତ୍ ଦାନ, ଯଜ୍ଞ, ତପ, ଶୌଚ, ତୀର୍ଥ

ସ୍ନାନ ସମସ୍ତ ଅତୀର୍ଥ । ଯାହାର ଇନ୍ଦ୍ରିୟ ସଂଜମ ହୋଇଛି, ସେ ଯେଉଁଠି ରହୁ ସେ ସ୍ଥାନ ତା ପାଇଁ ପବିତ୍ର କୁରୁକ୍ଷେତ୍ର, ବଦ୍ରିକା ନୈମିଷ୍ୟାରଣ୍ୟ ଇତ୍ୟାଦିପାବନ ଭୂମି । ଧ୍ୟାନଦ୍ୱାରା ବିଶୁଦ୍ଧ ହୋଇ ରାଗ-ଦ୍ୱେଷରୂପୀ ମଳକୁ ନାଶକାରୀ ଜ୍ଞାନ ଗଂଗାରେ ଯିଏ ସ୍ନାନ କରନ୍ତି ସେ ପରମଗତି ପାଇଥାନ୍ତି ।

ଉତ୍ସବ ଅନୁଷ୍ଠାନ -ଯେଉଁ ତିଥି ବା ବାର (ଦିନ) କୌଣସି ବିଶେଷ ଲାଭ ପ୍ରଦକାର୍ଯ୍ୟ ସଂପନ୍ନ ହୋଇଥାଏ ଅଥବା କୌଣସି ବିଶେଷ ପ୍ରେରଣା ଦାୟକ ମହା ପୁରୁଷଙ୍କ ଆବିର୍ଭାବ ହୋଇଥାଏ, ସେହି ତିଥି ବା ବାରକୁ ପାଳନ, ଉତ୍ସବ ଅନୁଷ୍ଠାନ କରିବା ପୁରାତନ କାଳରୁ ପ୍ରଚଳିତ ହୋଇ ଆସୁଅଛି । ଭାରତ ବର୍ଷରେ ଏହି ପର୍ବ ପାଳନର ଅଧିକ ମହତ୍ତ୍ୱ ରହିଛି । ଦଶହରା, ଦୀପାବଳୀ, ହୋଲି(ରି), ଜନ୍ମାଷ୍ଟମୀ, ଇତ୍ୟାଦି ପର୍ବ ମାନଙ୍କରେ ଉଚ୍ଚ ନୀଚ, ଶତ୍ରୁତା ଉଦାସୀନତାର ଭାବ ପରିତ୍ୟାଗ କରି ସମସ୍ତଙ୍କୁ କୋଳାଗ୍ରତ କରିବାର ପରମ୍ପରା ବହୁ ଉପଯୋଗୀ ହୋଇଥାଏ । ଫଳତଃ ସୌହାର୍ଦ୍ୟ ବୃଦ୍ଧିହୁଏ, ବର୍ଷ ବର୍ଷର ଶତ୍ରୁତା, ବ୍ୟବଧାନ ଭଣା ହୋଇଯାଏ ଏବଂ ଉଦାସୀନତା ତୁଟି ଯାଏ ।

ଏ ସମସ୍ତ ଲାଭ ଦୃଷ୍ଟିରୁ ଅବଶ୍ୟ ସ୍ୱୀକାର୍ଯ୍ୟ, ଅନ୍ୟ ଦେଶ ଅପେକ୍ଷା ଭାରତରେ ଉତ୍ସବର ସଂଖ୍ୟା ଅଧିକ । ରାମନବମୀ, ଗଂଗାଦଶହରା, ରଥଯାତ୍ରା, ଜନ୍ମାଷ୍ଟମୀ, ବିଜୟାଦଶମୀ, ଦିପାବଳୀ, ଗୋବର୍ଦ୍ଧନ ପୂଜା ନବାନ୍ନ, ସମର୍ପଣ (ନୂଆଖାଇ) ଗୋପାଷ୍ଟମୀ, ଶିବରାତ୍ରି, ଦୋଳ (ମେଳଣ), ଆଦି ମୁଖ୍ୟ ପର୍ବ । ଏ ସମସ୍ତ ପର୍ବ ନିଜ ନିଜ ବିଷେଷଣରେ ବିମଣ୍ଡିତ । ଧାର୍ମିକ ଦୃଷ୍ଟିରୁ ଏହାକୁ ମାନି ନେବାରେ ବିଶେଷ ପୁଣ୍ୟ ହୋଇଥାଏ । ଏଣୁ ଶାସ୍ତ୍ରୀୟ ବିଧି ବିଧାନରେ ଏହାର ପାଳନ କର୍ତ୍ତବ୍ୟ ।

କୌଣସି ପର୍ବ ମାନଙ୍କରେ ମେଳାମାନ ଆୟୋଜିତ ହୋଇଥାଏ ।ଏଥିରେ ବିଗତ ଦିନରୁ ସାକ୍ଷାତ୍ ହୋଇନଥିବା ମିତ୍ର, ସ୍ୱଜନ ତଥା ସଂବଧୀମାନଙ୍କର ମିଳନ ହୋଇଥାଏ । ଫଳରେ ସେମାନେ ପରସ୍ପର ଜଣେ ଅନ୍ୟର ସୁଖ-ଦୁଃଖରେ ଭାଗୀଦାର ହେବାର ସୁଯୋଗ ସୃଷ୍ଟି ହୁଏ । ରାତ୍ର ଦିନ ନିଜର ପାରିବାରିକ ବୃତ୍ତି ବା ପରିବାର ସଂବଧରେ ବନ୍ଧ ଜୀବ ପ୍ରାୟ ଘୂରି ବୁଲୁଥିବା ମଣିଷଟି ମାନସିକ ଋପ, ପରାଧୀନତା, ଦୀନତା, ଶୂନ୍ୟତା ମଧରେ ସନ୍ତୁଳି ହୋଇଯାଉଥାଏ । ଏହି ପର୍ବ ମେଳା ଇତ୍ୟାଦିରେ ସ୍ୱତନ୍ତ୍ରତା, ପ୍ରସନ୍ନତା ଅନୁଭବ କରିଥାଏ ।

ସୁତରାଂ ଏ ସମସ୍ତ ଲାଭ ଦୃଷ୍ଟିରୁ ପର୍ବ ପାଳନ ଅବଶ୍ୟ କରଣୀୟ । ନାରୀ ଧର୍ମ-ଭାରତୀୟ ସାମାଜରେ ନାରୀ ଏକ ବିଶିଷ୍ଟ ଗୌରବ ପୂର୍ଣ୍ଣ ସ୍ଥାନରେ ପ୍ରତିଷ୍ଠିତ ।

ଆର୍ଯ୍ୟପୁରୁଷ ତାକୁ ନିଜର ଅର୍ଦ୍ଧାଙ୍ଗିନୀ ସ୍ୱୀକାର କରିଆସିଅଛି । ସେତିକି ନୁହେଁ ବ୍ୟବହାରରେ ପୁରୁଷ ମର୍ଯ୍ୟାଦା ଠାରୁ ନାରୀ ମର୍ଯ୍ୟାଦା ସଦା ଉତ୍କୃଷ୍ଟ ଭାବେ ଗୃହୀତ । ହିନ୍ଦୁ ସଂସ୍କୃତିରେ ଏହି ଭାବନା ପରିପୂର୍ଣ୍ଣ ରହିଛି ।

ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବସ୍ତତ୍ରା ଫଳାଃ କ୍ରିୟାଃ ॥

ଯେଉଁ କୂଳ ପରିବାରରେ ନାରୀ ମାନଙ୍କର ସମାଦର ରହିଛି, ସେଠାରେ ଦେବତା ପ୍ରସନ୍ନ ରହିଥାନ୍ତି । ଯେଉଁଠାରେ ଏହା କରା ନ ଯାଏ, ସେହି ପରିବାରରେ ସମସ୍ତ ଯଜ୍ଞାଦି କ୍ରିୟା ବ୍ୟର୍ଥ ହୋଇଥାଏ ।

ହିନ୍ଦୁ -ଜୀବନରେ ନାର ମର୍ଯ୍ୟାଦାକୁ ସଦୈବ- ସର୍ବତ୍ର ସୁରକ୍ଷିତ ରଖିବାର ବିଶେଷ ଧ୍ୟାନ ରଖାଯାଇଥାଏ । ଧର୍ମଶାସ୍ତ୍ରରେ କୁହାଯାଇଅଛି-

ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ ।
ରକ୍ଷତି ସ୍ଥାବରେ ପୁତ୍ରା ନ ସ୍ତ୍ରୀ ସ୍ୱତନ୍ତ୍ର ମର୍ହତି ॥ (ମନୁ ୫।୧୪୮)

ଅର୍ଥାତ୍- ବାଲ୍ୟାବସ୍ଥାରେ ପିତା, ଯୌବନରେ ପତି, ବାର୍ଦ୍ଧକ୍ୟରେ ପୁତ୍ର ରକ୍ଷା କରିଥାଏ । ସ୍ତ୍ରୀଙ୍କର କେବେ ଏଥିରୁ ପୃଥକ ସ୍ୱତନ୍ତ୍ର ରହିବାର ବିଧାନ ନାହିଁ । ଧର୍ମ ଶାସ୍ତ୍ରର ଏହି କଲ୍ୟାଣକାରୀ ଆଦର୍ଶ ନାରୀ ସ୍ୱତନ୍ତ୍ରତାର ଅପହରଣ ନୁହେଁ । ନାରୀକୁ ନିର୍ବାଧ ରୂପରେ ସ୍ୱଧର୍ମ ପାଳନ କରିବା ନିମିତ୍ତ ବାହ୍ୟ ଆପତ୍ତିରୁ ତାକୁ ରକ୍ଷା କରିବା କାରଣରୁ ପୁରୁଷ ସମାଜ ଉପରେ ଏହିଭାର ଦିଆଯାଇଛି । ଧର୍ମ ଭୀରୁ ପୁରୁଷ ଏହାକୁ ଭାର ନମାନି, ଧର୍ମ ରୂପରେ ପାଳନ କରି, ନିଜର କଲ୍ୟାଣକାରୀ କର୍ତ୍ତବ୍ୟ ବୁଝିଥାଏ ।

ନାରୀ ଧର୍ମର ନିର୍ଦ୍ଦେଶ ଧର୍ମଶାସ୍ତ୍ରରେ କୁହାଯାଇଛି-

ନାସ୍ତି ସ୍ତ୍ରୀଣାଂ ପୃଥକ ଯଜ୍ଞୋ ନବ୍ରତଂ ନାପ୍ୟୁପୋଷିତମ୍ ।
ପତିଂ ଶୁଶ୍ରୁୟତେ ଯେନ ତେନ ସ୍ୱର୍ଗେ ମହୀୟତେ ॥

ଅର୍ଥାତ୍- ସ୍ତ୍ରୀଙ୍କ ପାଇଁ ପୃଥକ ରୂପେ କୌଣସି ଯଜ୍ଞ, ବ୍ରତ ବା ଉପବାସ କରିବାର ଆବଶ୍ୟକା ନାହିଁ । କେବଳ ପତି ପରାୟଣତା ଦ୍ୱାରା ହିଁ ସେ ଉତ୍ତମ ଗତିକୁ ପ୍ରାପ୍ତ କରିପାରେ ।

ଧର୍ମଶାସ୍ତ୍ରର ଏହି ନିର୍ଦ୍ଦେଶ ବିଶେଷ ମହତ୍ତ୍ୱପୂର୍ଣ୍ଣ ତଥା ସାର ଗର୍ଭିତ । ଏଥିରେ ନାରୀର ପ୍ରଧାନ ଧର୍ମ ପାତିବ୍ରତର ରହସ୍ୟ ଭରି ରହିଛି । ପାତିବ୍ରତ୍ୟ ପାଳନର ଯେଉଁ ଅକ୍ଷୟ ମହିମା ଶାସ୍ତ୍ରରେ କୁହାଯାଇଛି ତାହା ରୋଚନାର୍ଥ ଫଳଶ୍ରୁତି ନୁହେଁ । ଅକ୍ଷରଶଃ ସତ୍ୟ, ନିଷ୍ଠା ଅନୁସାରେ ଏହି ପାତିବ୍ରତ୍ୟ ଧର୍ମର ଆଧାତ୍ମିକ ଲାଭ ହୋଇଥାଏ ।

ପାତିବ୍ରାତ୍ୟର ଉଚିତ୍ ପାଳନରେ ନାରୀ ମଧ୍ୟରେ ସ୍ୱାଭାବିକ ରୂପରେ ଓ ସିଦ୍ଧି ରୂପରେ ଦୈବୀଶକ୍ତିର ଆବିର୍ଭାବ ହୋଇଥାଏ । ଏହା ପାତିବ୍ରତ୍ୟ ଧର୍ମ ପାଳନର ଆଧିଦୈବିକ ଲାଭ । ପୁରୁଷ ଶରୀରରେ ଯେଉଁ ଅଲୌକିକ ଶକ୍ତିଯୋଗ, ତପ ଆଦି କଠିନ ପ୍ରୟାସ ପୂର୍ଣ୍ଣ ଉପାୟରେ ପ୍ରାପ୍ତ ହୋଇଥାଏ ତାହା ନାରୀ ଶରୀରରେ ପାତିବ୍ରତ୍ୟ ପାଳନରେ ଅନାୟାସରେ ଉପଲବଧ ହୋଇଥାଏ ।

ପାତିବ୍ରତ୍ୟର ଆଧାତ୍ମିକ ଲାଭ ପୂର୍ଣ୍ଣ ସୁଖମୟ ଗାର୍ହସ୍ଥ୍ୟ ଜୀବନ, ଉତ୍ତମ ମେଧାବୀ ଧର୍ମନିଷ୍ଠ ସଂତାନ୍ ଆଦି ସହସ୍ର ରୂପରେ ସ୍ପଷ୍ଟ ଅନୁଭବ କରାଯାଇଥାଏ । ନାରୀ ଜାତି ପାଇଁ ସତୀତ୍ୱ ଧର୍ମ ହିଁ ତାର ସର୍ବବିଧ ଶକ୍ତି ତଥା କଲ୍ୟାଣର ଏକ ମାତ୍ର ଉପାୟ । ଆଧୁନିକ ସମୟରେ ମଧ୍ୟ ତାର ପରମ କଲ୍ୟାଣକାରୀ ନାରୀ ଧର୍ମ ଉପରେ ମଧ୍ୟ ସାମାଜିକ ଏବଂ ରାଜକୀୟ ଆଘାତ ହେବାରେ ଲାଗିଛି । ସଗୋତ୍ର ବିବାହ, ଅସବର୍ଣ୍ଣ ବିବାହ, ବିଧବା ବିବାହ, ତଲାକ ଆଦି ଅବାଂଛିତ କଳୁଷିତ ପ୍ରଥାର ପ୍ରବର୍ତ୍ତକ ସୃଷ୍ଟିର ଉତ୍ପାଦକ ଆଦି କୁଟୁମ୍ବ ଏବଂ ସମାଜକୁ କଳୁଷିତ କରୁଥିବା ଧର୍ମ ମର୍ଯ୍ୟାଦା ଏବଂ ଅର୍ଥ ମର୍ଯ୍ୟାଦାର ବିରୁଦ୍ଧ ରାଜକୀୟ ନିୟମ ସୃଷ୍ଟି ହେଉଅଛି ଏବଂ ଏହାକୁ ସମାଜ ସୁଧାର, ନାରୀଜାଗରଣ, ସମାନ ଅଧିକାର ନାରୀ ସଶକ୍ତିକରଣ ଆଦି ରୋଚକ ନାମରେ ପ୍ରଚରିତ କରାଯାଉଅଛି ।

ଶାସ୍ତ୍ରୀୟ ବିଚରର ଆଧାରରେ କୁହାଯାଇଅଛି, ନାରୀ ଜୀବନ କାଳରେ ଯଦି ପତିର ଦେହାନ୍ତ ହୋଇଯାଏ ତାକୁ ସାଧ୍ୱୀ ଜୀବନ ବ୍ୟତୀତ କରିବା ଉଚିତ୍ । ପୂର୍ଣ୍ଣ ସରଳତାରେ ଜୀବନ ନିର୍ବାହ କରି ଭଗବାନ୍ ନାମଜପ, କୀର୍ତ୍ତନ ଓ ସତ୍ ସଂଗରେ ସମଧିକ ସମୟ ବିତାଇଦେବା ଉଚିତ । ଏକମାତ୍ର ଭଗବାନ ଶରଣାଗତିକୁ ଅବଲମ୍ବନ ମାନି ନିଜ ଜୀବନ ନିର୍ବହନ ତା ପାଇଁ କଲ୍ୟାଣକାରୀ ହୋଇଥାଏ ।

ଏହି ସମୟରେ ନାରୀ ଜାତି ସତର୍କ ରହି ସ୍ୱ କଲ୍ୟାଣକାରୀ ଧର୍ମକୁ ଆଶ୍ରୟ କରିବା ଉଚିତ୍ । ନାରୀ ସମାଜ ଉପରେ ସୃଷ୍ଟି ଉତ୍ପାଦନର ଭାର ରହିଛି । ଭାରତର ପୁରାଣ, ଇତିହାସ ତଥା ଅଧୁନାତନ କାଳରେ ବିଶେଷକରି ଆଜିର ପରିପ୍ରେକ୍ଷୀରେ ବୀର, ସାହସୀ, ମେଧାବୀ, ପବିତ୍ର ତଥା ସର୍ବତୋଭାବେ ଉନ୍ନତଶୀଳ ସନ୍ତାନ ସୃଜନ ହେଉ, ଏଣୁ ପ୍ରତ୍ୟେକ ଭାରତୀୟ ନାରୀ ନିଜର ବ୍ୟାବହାରିକ ଜୀବନରେ ଅନ୍ତର୍ବାହ୍ୟ ପବିତ୍ରତା ରକ୍ଷା କରିବା ପାଇଁ ସତତ ସାବଧାନ ରହିବା ବିଧେୟ । ସ୍ୱଧର୍ମ ପ୍ରତିପାଦକ ରାମାୟଣ, ମହାଭାରତ, ଭାଗବତ, ଭଗବତଗୀତା, ଯୋଗ ବାଶିଷ୍ଠ ଆଦି ଧାର୍ମିକ, ଐତିହାସିକ ଗ୍ରନ୍ଥର ପଠନ, ମନନ ଏବଂ ଆଲୋଚନା ଆଦି କରିବା ଉଚିତ । ସିନେମା ଟିଭି(ସିରିଅଲ)

ଆଦି ତ୍ୟାଗ କରାଯିବା ବିଧେୟ ।ଏହି ସମୟ ମଧ୍ୟରେ ସନ୍ତାନମାନଙ୍କୁ ଶାସ୍ତ୍ରାନୁମୋଦିତ ସଂସ୍କାର କରାଯିବା ବିଧି, ଏଥି ନିମନ୍ତେ ତତ୍‌ପର ହେବା ଦରକାର । ଏଥି ସହିତ ପ୍ରତ୍ୟେକ ପରିବାର ଏବଂ ସମାଜର କର୍ତ୍ତବ୍ୟ ହେଉଛି କନ୍ୟା, ବିବାହିତା ଅଥବା ବିଧବା ସମସ୍ତ ଅବସ୍ଥାରେ ନାରୀର ସ୍ୱଧର୍ମ ପରିପାଳନର ପୂର୍ଣ୍ଣ ସୁବିଧା ପ୍ରଦାନ କରିବା । ଉପଯୁକ୍ତ ଶିକ୍ଷା ଦ୍ୱାରା ସେମାନଙ୍କୁ ପୂର୍ଣ୍ଣ ସତୀ, ପୂର୍ଣ୍ଣ ମାତା, ଉତ୍ତମ ଗୃହିଣୀ ନିର୍ମାଣ କରାଇ ପ୍ରତ୍ୟେକ ଅବସ୍ଥାରେ ତାଙ୍କୁ ସ୍ୱଧର୍ମରେ ପ୍ରତିଷ୍ଠିତ ରହିପାରିବାର ଯୋଗ୍ୟ ଭାବେ ସ୍ଥାପିତ କରିବା । ପରିଣାମରେ ସମାଜ ଏବଂ ରାଷ୍ଟ୍ରର ବିକାଶ ସଂଭବ ହେବ ।

ଗୋ ସେବା- ଗାଈକୁ ଗୋମାତା କୁହାଯାଇଛି । ସଂସାରରେ ଗାଈ ଯେପରି ପରମ ଉପଯୋଗୀ ପ୍ରାଣୀ ମନୁଷ୍ୟ ପାଇଁ ମିଳିବା ଅତି ଦୁର୍ଲଭ । ଗାଈ ଦୁଧରେ ମା ଦୁଧ ପ୍ରାୟ ସମସ୍ତ ଗୁଣ ବିଦ୍ୟମାନ । ମାତା ଦୁଧର ଅଭାବରେ ବା କମ୍ ହେବା କାରଣରୁ ଗାଈ ଦୁଧ ବାଳକକୁ ପିଆଯାଇଥାଏ । କେବଳ ଗାଈର ଦୁଧ ନୁହେଁ, ଗାଈର ଗୋବର ତଥା ଗୋମୂତ୍ର ଏତେ ଅଧିକ ପବିତ୍ର ଯେ ଭଜନ -ଭୋଜନ ସ୍ଥାନକୁ ଗୋବର ଗୋମୂତ୍ର ଦ୍ୱାରା ଲେପନ କରି ପବିତ୍ର କରାଯାଏ । ଶାରୀରିକ ରୋଗନାଶକ, ବିଷ ପ୍ରକୋପ ନାଶକ ଗୁଣକୁ ଆଜିର ବୈଜ୍ଞାନିକ ସ୍ୱୀକାର କରିଥାନ୍ତି । ଆୟୁର୍ବେଦରେ ବହୁ ଔଷଧୀର ଶୋଧନ ଗୋମୂତ୍ର ଓ ଗୋମୟରେ କରାଯାଇଥାଏ । ଧର୍ମଶାସ୍ତ୍ର ଅନୁସାରେ କେବଳ ଶରୀର ଶୁଦ୍ଧିପାଇଁ ନୁହେଁ, ମାନସିକ ଶୁଦ୍ଧି ପାଇଁ ଗାଈ ଗୋବରର ପଞ୍ଚଗବ୍ୟ ପାନର ବିଧାନ କରାଯାଇଅଛି । କୃଷି ପ୍ରଧାନ ଭାରତ ବର୍ଷରେ ଗାଈର ବାଛୁରୀ ବଳଦ ରୂପେ ବିଶେଷ ଉପଯୋଗୀ ।

ଏ ସବୁ ଦୃଷ୍ଟିରେ ମାତା ତୁଲ୍ୟ ପାଳନକାରୀ ଗୋ ମାତା ରକ୍ଷା ନିମନ୍ତେ ଶାସ୍ତ୍ରକାର ଦୁଇଗୋଟି ବିଧାନ କରିଛନ୍ତି ( ୧ ) ପ୍ରଥମତଃ ଗୋବଧକୁ ପାପ ଘୋଷଣା କରାଯାଇଛି । ଯଦ୍ୱାରା ଗାଈର କେହି ବିନାଶ ନକରନ୍ତୁ ( ୨ ) ଗୋରକ୍ଷାକୁ ମହାନ୍ ପୁଣ୍ୟ ସୂଚଇ ଦିଆଯାଇଛି ଫଳରେ ଏମାନଙ୍କ ସୁରକ୍ଷାରେ ଲୋକଙ୍କ ପ୍ରବୃତ୍ତି ହେବ । ଯେପରି ପୁତ୍ରର କର୍ତ୍ତବ୍ୟ ନିଜ ମାତାର ସେବା କରିବା ସେହିପରି ମନୁଷ୍ୟ ମାତ୍ରେ ଏହି କର୍ତ୍ତବ୍ୟ କି ସେ ଗୋମାତାର ସେବା ଏବଂ ପାଳନ କରୁ ।

ଗୋ ସେବାର ପ୍ରତ୍ୟକ୍ଷ ଲାଭ ହେଉଛି, ଏହାଦ୍ୱାରା କାମନାବାସନାର ପୂର୍ତ୍ତି ହୋଇଥାଏ । ଏହା ଅନୁଭବ କରିବାର ଆବଶ୍ୟକତା ରହିଛି । ଏଥି ସହିତ ପରଲୋକରେ ଶାଶ୍ୱତ ସୁଖ ପ୍ରାପ୍ତି ହୋଇଥାଏ । ଶାସ୍ତ୍ର କଥନ ଅନୁସାରେ ଗାଈଠାରେ ସର୍ବ ଦେବଦେବୀ ନିବାସ କରିଥାନ୍ତି । (ଅଥର୍ବ ବେଦ ୯।୪।୧ , ମହାଭାରତ ଅନୁଶାସନ ୫ ୧।୨ ୬।୩୪ ,

୮୩,୧୭-୨. ଅଗ୍ନିପୁରାଣ, ଅ ୨୯୨ ବ୍ରହ୍ମାଣ୍ଡ ପୁରାଣ, ଗୋ ସାବିତ୍ରୀ ସ୍ତୋତ୍ର, ସ୍କନ୍ଦ ପୁରାଣ, ଆବନ୍ତ୍ୟ ଖଣ୍ଡ- ରେବା ଖଣ୍ଡ ଅ-୮୩, ଶ୍ଳୋ -୧୦୪ରୁ ୧୧୦, ୧୧୨ ପଦ୍ମପୁରାଣ ସୃଷ୍ଟି ଖଣ୍ଡ ଅ ୪୮, ଭବିଷ୍ୟ ପୁ ଉତ୍ତର ଅ ୧୫୬ ୧୬.୨୦ ଇତ୍ୟାଦି)

କେବଳ ଗାଈ ସେବାରେ (ପୂଜା) ସଂପୂର୍ଣ୍ଣ ଦେବୀ ଦେବତା ମାନଙ୍କ ସେବା-ପୂଜା ସ୍ୱାଭାବିକ ରୂପରେ ସଂପନ୍ନ ହୋଇଥାଏ ।

ପିତୃ ପୂଜା- ଜୀବନର ପରିସମାପ୍ତି ମୃତ୍ୟୁରେ ହୋଇଥାଏ । ଏହି ଧ୍ରୁବ ସତ୍ୟକୁ ସମସ୍ତେ ସ୍ୱୀକାର କରିଅଛନ୍ତି । ଏହା ମଧ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ଜୀବାତ୍ମା ଏତେ ସ୍ୱଚ୍ଛ ଯେ  ଏହା ଯେବେ ଶରୀରରୁ ବାହାରିଯାଏ ତାକୁ କେହି ମଧ ଚର୍ମ ଚକ୍ଷୁରେ ଦେଖି ନପାରନ୍ତି ।

ଶାସ୍ତ୍ର ପୁରାଣ ମାନଙ୍କରେ ମୃତ୍ୟୁର ସ୍ୱରୂପ, ମରଣାସନ୍ନ ବ୍ୟକ୍ତିର ଅବସ୍ଥା ଏବଂ ତାର କଲ୍ୟାଣ ନିମିତ୍ତ ଅନ୍ତିମ ସମୟରେ କରାଯାଉଥିବା କୃତ୍ୟ ତଥା ବିବିଧ ପ୍ରକାରଦାନ ଆଦି ନିରୂପିତ ହୋଇଅଛି, ଏହା ସହିତ ମୃତ୍ୟୁପରେ ଔର୍ଦ୍ଧ୍ୱଦୈହିକ ସଂସ୍କାର ପିଣ୍ଡଦାନ (ଦଶଗାତ୍ର ବିଧି ନିରୂପଣ) ଏକାଦଶାହ, ସପିଣ୍ଡିକରଣ, ଅଶୌଚ ଆଦି ନିର୍ଣ୍ଣୟ ତର୍ପଣ, ଶ୍ରାଦ୍ଧ, କର୍ମବିପାକ, ପାପର ପ୍ରାୟଶ୍ଚିତ୍ତ ବିଧାନ ବର୍ଣ୍ଣିତ । ପାରଲୌକିକ ଜୀବନରେ କିପରି ସୁଖ -ସମୃଦ୍ଧି ଏବଂ ଶାନ୍ତିମୟ ହୋଇପାରିବ, ତଥା ମୃତ୍ୟୁପରେ ତାର ଉଦ୍ଧାର ନିମିତ୍ତ ପୁତ୍ର, ପୌତ୍ରାଦି (କ୍ରମେ) କଣ କର୍ତ୍ତବ୍ୟ ଏହା ଜାଣିବା ପ୍ରୟୋଜନ ।

ପୁଂ ନାମ ନରକାତ୍ ତ୍ରାୟତେ ଇତି ପୁତ୍ରଃ । ନରକରୁ  ଯେ ତ୍ରାଣ (ରକ୍ଷା) କରିଥାଏ, ସେହି ପୁତ୍ର । ସାଧାରଣ ଭାବରେ ମନୁଷ୍ୟ ଜୀବନରେ ପାପ ଓ ପୂଣ୍ୟ ଦୁଇଟି ହୋଇଥାଏ । ପୁଣ୍ୟର ଫଳ ସ୍ୱର୍ଗ ଏବଂ ପାପର ଫଳନରକ । ନରକରେ ପାପୀକୁ ବହୁ ଘୋର ଯାତନା ରୋଗ କରିବାକୁ ହୋଇଥାଏ ।ସ୍ୱର୍ଗ ନରକ ଭୋଗ ପରେ ଜୀବ ପୁନଃ ନିଜର କର୍ମ ଅନୁସାରେ ୮୪ଲକ୍ଷ ଯୋନିରେ ଭ୍ରମଣ କରୁଥାଏ । ପୁଣାତ୍ମା ମନୁଷ୍ୟ, ମନୁଷ୍ୟ ଯୋନି ବା ଦେବଯୋନି ପ୍ରାପ୍ତ ହୋଇଥାଏ । ପାପାତ୍ମା ପଶୁ, ପକ୍ଷୀ, କୀଟ, ପତଙ୍ଗ ଆଦି ତୀର୍ଯ୍ୟକ ଯୋନି ପ୍ରାପ୍ତ ହୁଏ । ଏଣୁ ଶାସ୍ତ୍ର ଅନୁସାରେ ପୁତ୍ର, ପୋତ୍ରାଦି ନିଜର ପିତାମାତା ତଥା ପୂର୍ବଜଙ୍କ ନିମିତ୍ତ ଶ୍ରଦ୍ଧା ପୂର୍ବକ ଶାସ୍ତ୍ର ବିହିତ କର୍ମ କରିବା ଦ୍ୱାରା ସେମାନଙ୍କର ପରଲୋକ ଅଥବା ଅନ୍ୟ ଯୋନିରେ ମଧ ସୁଖ ପ୍ରାପ୍ତ ହୋଇପାରିବ ।

ଏଣୁ ଭାରତୀୟ ସଂସ୍କୃତିରେ ତଥା ସନାତନ ଧର୍ମରେ ପିତୃଋଣରୁ ମୁକ୍ତ ହେବା ନିମିତ୍ତ ମୁକ୍ତ ହେବା ପାଇଁ ନିଜର ମାତା ପିତା ପରିବାରର ମୃତ ପ୍ରାଣୀମାନଙ୍କର ନିମିତ୍ତ ଶ୍ରାଦ୍ଧ କରିବାର ଅନିବାର୍ଯ୍ୟ ଆବଶ୍ୟକତା ସୂଚିତ ହୋଇଅଛି । ପିତୃ କାର୍ଯ୍ୟରେ ବାକ୍ୟର ଶୁଦ୍ଧତା

ତଥା କ୍ରିୟାର ଶୁଦ୍ଧତା ମୁଖ୍ୟଭାବେ ଆବଶ୍ୟକ । ଶ୍ରାଦ୍ଧର କ୍ରିୟା ଅତ୍ୟନ୍ତ ସୂକ୍ଷ୍ମ ହୋଇଥାଏ । ଏଣୁ ଏହାକୁ ସଂପନ୍ନ କରିବାରେ ଅତ୍ୟଧିକ ସାବଧାନୀର ଆବଶ୍ୟକତା ରହିଛି । ପିତୃ କାର୍ଯ୍ୟକୁ ଦେବ କାର୍ଯ୍ୟ ଅପେକ୍ଷା ଅଧିକ ସାବଧାନ ଓ ତତ୍ପରତାର ସହ କରିବା ବିଧେୟ ।

ଦେବକାର୍ଯ୍ୟ ପୂର୍ବରୁ ପିତୃକାର୍ଯ୍ୟ କରିବା ଉଚିତ୍ । (ହେମାଦ୍ରିରେ ବାୟୁ, ବ୍ରହ୍ମ ବୈବର୍ତ୍ତର ବଚନ) ଶ୍ରାଦ୍ଧରୁ ବଳି ଆଉ କୌଣସି କଲ୍ୟାଣକାରୀ କର୍ମ ନାହିଁ । ଏଣୁ ପ୍ରଯତ୍ନ ପୂର୍ବକ ଶ୍ରାଦ୍ଧ କରିବା ଉଚିତ୍ । ଶ୍ରାଦ୍ଧରେ କେବଳ ନିଜର ତଥା ପିତରଙ୍କ ସଂତୃପ୍ତି ହୁଏ ନାହିଁ । ତାହା ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ସମସ୍ତ ପ୍ରାଣୀଙ୍କୁ ତୃପ୍ତ କରିଥାଏ । ଏହା ମଧ୍ୟ ଲିଖିତ ହୋଇଛି ଯେ ବିଧି ପୂର୍ବକ ଶ୍ରାଦ୍ଧ କରୁଥିବା ବ୍ୟକ୍ତି ସଂପୂର୍ଣ୍ଣ ପାପରୁ ମୁକ୍ତ ହୋଇ ଜନ୍ମ ମରଣର ଚକ୍ରରୁ ମୁକ୍ତ ପାଇଯାଇଥାଏ ।

ଯୋଽନେନ ବିଧିନା ଶ୍ରାଦ୍ଧଂ କୁର୍ଯ୍ୟାଦ୍ ବୈ ଶାନ୍ତ ମାନସଃ ।<br>
ବ୍ୟପତେ କଲ୍ମଷୋ ନିତ୍ୟଂ ଯାତି ନା ବର୍ତ୍ତତେ ପୁନଃ ॥

(ହେମାଦ୍ରିରେ କୂର୍ମ ପୁରାଣର ବଚନ)

ବହୁ ଜନ୍ମର ତପସ୍ୟା ଓ ପୁଣ୍ୟ ଫଳର ପ୍ରଭାବ ହେତୁ ଜୀବ ମାନବଜନ୍ମ ପ୍ରାପ୍ତ ହୋଇଥାଏ । ଏଣୁ ସାଧାରଣ ଇତର ଜୀବ ପ୍ରାୟ ଆହାର ବିହାର ସଂତାନ ସଂଭବରେ ଏହି ମହାମୂଲ୍ୟ ଜୀବନ ସୀମିତ ନରହି ଶାସ୍ତ୍ର ବଚନ ଅନୁସାରେ ସୁଗଠିତ କରିବାର ପ୍ରୟାଶ ପ୍ରତିପଦକ୍ଷେପରେ ହେବା ଉଚିତ୍ । ଫଳସ୍ୱରୂପ ସ୍ୱୟଂ ଶାନ୍ତି ସନ୍ତୋଷରେ ଜୀବନ ନିର୍ବାହ କରିବା ସହିତ ପରିବାର, ପଡୋଶୀ ତଥା ସମାଜର ଅଶେଷ କଲ୍ୟାଣ ହୋଇଥାଏ । ପୁନଃ ପରଲୋକରେ ଜୀବର କ୍ରମୋନ୍ନତି ହୋଇ ଆବାଗମ ଚକ୍ରରୁ ମୁକ୍ତି ପାଇବା ସ୍ୱାଭାବିକ ଓ ସହଜ ହୋଇଥାଏ । ଅତି ସଂକ୍ଷେପରେ ଏହାର ବିଚାର କରାଯାଇଛି । ଏ ସଂବଧରେ ବ୍ୟାପକ ଆଲୋଚନାର ମଧ୍ୟ ସ୍ୱତନ୍ତ୍ର ଭାବେ ଅନୁଶୀଳନ କରାଯାଇପାରେ ।

---

ଏବଂ ବିଧାନତଃ ଶ୍ରାଦ୍ଧଂ କୁର୍ଯ୍ୟାତ୍ ସ୍ୱବିଭବୋଚିତମ୍ । ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତଂ ଜଗତ୍ ପ୍ରୀଣାତି ମାନବଃ (ବ୍ରହ୍ମ ପୁରାଣ)

# ବିବାହ ଏକ ଦାର୍ଶନିକ ଦୃଷ୍ଟି

ପ୍ରାଚୀନ ଭାରତୀୟ ବାଙ୍‌ମୟରେ ଅମୂଲ୍ୟ ଏବଂ ଅପରିମିତ ସତ୍ୟ ସଂଧାନୀ ମୁନିଋଷି ଗଣ ବିବାହ ସଂସ୍କାରର ଦାର୍ଶନିକ ତଥା ପ୍ରୟୋଜନୀୟ ତତ୍ତ୍ୱ ସଂପର୍କରେ ମୂଲ୍ୟବୋଧର ଅବତାରଣା କରିଅଛନ୍ତି । ସମଗ୍ର ବିଶ୍ୱରେ କେବଳ ଭାରତ, ଆମ ବିଚାରରେ ଯେଉଁଠି ଧର୍ମ ତଥା ଦର୍ଶନ ପ୍ରତିଟି ମୁହୂର୍ତ୍ତରେ ଆମକୁ ଅନୁଶାସିତ କରି ରଖିଅଛି । ମନୁଷ୍ୟର ମୂଲ୍ୟାୟନ ନିର୍ଦ୍ଧାରଣ କରୁଅଛି । ମୁଖ୍ୟତଃ ଧାର୍ମିକ ଓ ଦାର୍ଶନିକ ଦୃଷ୍ଟି କୋଣରୁ ସମଗ୍ର ପୃଥିବୀରେ ଭାରତ ବ୍ୟତୀତ ଅନ୍ୟ କୌଣସି ଦେଶରେ ଏହା ଦେଖାଯାଏ ନାହିଁ । କେବଳ ଭାରତରେ ହିଁ ଧର୍ମ ଅର୍ଥ କାମ ମୋକ୍ଷ ମଧ୍ୟରେ ସମନ୍ୱୟ ଦେଖାଯାଏ ।

ଏହି ପରିପ୍ରେକ୍ଷୀରେ ଏଥିରେ ବିସ୍ମିତ ହେବାର ନାହିଁ ଯେ, ଏପରିକି କାମ (sex)କୁ ମଧ୍ୟ ପବିତ୍ର ଭାବେ ଗ୍ରହଣ କରାଯାଇଛି । ଏହାକୁ ଧର୍ମର ବିରୋଧି ନୁହେଁ । 'ଧର୍ମୋ ବିରୁଦ୍ଧା ଭୂତେଷୁ କାମୋଽସ୍ମି ଭରତର୍ଷଭ' ବକ୍ଷ୍ୟମାଣ ଆଲୋଚନାରେ ଆମେ ବିବାହର ଆଧାତ୍ମିକ ଦୃଷ୍ଟିକୋଣ ପ୍ରାଚୀନ ଭାରତୀୟ ମୁନି-ଋଷି ମାନଙ୍କ ଉକ୍ତି ଆଧାରରେ ପ୍ରତିପାଦିତ କରିବାର ପ୍ରୟାସ କରିବା ।

ସଂସ୍କାର

ବୈଦିକ ଧର୍ମାନୁମୋଦିତ ଷୋଡଶ ସଂସ୍କାର ମଧ୍ୟରୁ ବିବାହ ଏକ ଗୁରୁତ୍ୱପୂର୍ଣ୍ଣ ସଂସ୍କାର । ଏଠାରେ ସୂଚନାଯୋଗ୍ୟ ଯେ ଇଂରାଜୀ marriage ମ୍ୟାରେଜ ଶବ୍ଦ ସଂସ୍କୃତ ବିବାହର ସମାର୍ଥବୋଧକ ହୋଇ ନପାରେ । କର୍ମମୀମାଂସାଦର୍ଶନର ରଚୟିତା ଭରଦ୍ୱାଜ କହନ୍ତି ନାରୀମାନଙ୍କ ପାଇଁ ଏହା ଏକ ସ୍ୱତନ୍ତ୍ର ଗୁରୁତ୍ୱପୂର୍ଣ୍ଣ ସଂସ୍କାର । ନାରୀଣାମୁଦ୍ୱାହୋ ବିଶେଷଃ । (ସଂସ୍କାର ପାଦ,) । ଋଷିମାନଙ୍କ ମତରେ ଜଣେ ନାରୀ ପୁଷ୍ପବତୀ ହେବା ପୂର୍ବରୁ ବିବାହ କରିବା ଉଚିତ୍ । ଏହାର କାରଣ ବ୍ୟାଖାନ

କରିବାକୁ ଯାଇ କହିଛନ୍ତି (ପ୍ରାଗୃତୁ ପ୍ରବୃତ୍ତେ) ସଂଧିଭାବାତ୍ (୪୨) ପୁଷ୍ପବତୀ ବୟସ ପୂର୍ବରୁ ବାଳ ଏବଂ ଯୌବନର ସଂଧି କ୍ଷଣରେ ବିବାହ ସଂସ୍କାର ସର୍ବାପେକ୍ଷା ପ୍ରଭାବଶାଳୀ ହୋଇଥାଏ । ସୁତରାଂ ପୁଷ୍ପବତୀ ହେବା ପୂର୍ବରୁ ବିବାହ କରଣୀୟ ।

ପୁରୁଷମାନଙ୍କ ପାଇଁ ଷୋଡଶ ସଂସ୍କାର ପ୍ରୟୋଜନ ପୁରୁଷାଣାଂ ତୁ ସର୍ବେ । ପାରିବାରିକ ଜୀବନର ମୁଖ୍ୟ କଥା ହେଉଛି ଭାବ ନିୟନ୍ତ୍ରଣ ଯଥା ଜୀବନର ଏହି ସମୟ ଗୋଟିଏ କ୍ଷେତ୍ର ଯେଉଁଠାରେ ଆମେ ନିଜକୁ ଆମ ମନ ଓ ଭାବକୁ ନିୟନ୍ତ୍ରଣ କରିବା ପାଇଁ ପ୍ରଶିକ୍ଷିତ ହେବା । ସଂଯମ ପ୍ରଧାନଂ ଗାହେସ୍ଥମ୍ । ଋଷି ବାସ୍ତବରେ ଏଠାରେ କହିବାକୁ ଋହାନ୍ତି ଗୋଟିଏ ଭାବ ସଂବେଗ ତାତ୍ତ୍ୱିକ ଦାର୍ଶନିକ ଦୃଷ୍ଟିରୁ ସୀମା ଅତିକ୍ରମ କରିବା ଉଚିତ ନୁହେଁ । ଆମେ ଏଠାରେ କାଳିଦାସଙ୍କ ଉକ୍ତି ଆମର ସଂବେଗ କାରଣକୁ ଆମର ମନ ଗ୍ରହଣ କରିପାରୁନାହିଁ । ସେ ଜଣେ ନାୟକ 'ବିକାରହେତୌ ସତି ବିକ୍ରିୟନ୍ତେ ଯେଷାଂ ନ ଚେତାଂସି ତ ଏବ ଧୀରାଃ' । ଋଷି ଭରଦ୍ୱାଜଙ୍କ ଅନୁସାରେ ଜଣେ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିବା ପୂର୍ବରୁ ଆତ୍ମ ସଂଯମୀ ହେବା ଦରକାର । ଏହି ଦୃଷ୍ଟିରୁ ଆମେ ଦେଖିବା ସନ୍ତାନ ଉତ୍ପାଦନ ଏପରିକି ବିବାହର କେବଳ ଉଦ୍ଦେଶ୍ୟ ନୁହେଁ ।

**ପୁରୁଷ ଏବଂ ନାରୀ**

ଆମ ଶାସ୍ତ୍ର କହେ ପ୍ରତ୍ୟେକ ପୁରୁଷ ହେଉଛି ମୂଳ ପୁରୁଷ ଏବଂ ପ୍ରତ୍ୟେକ ନାରୀ ପ୍ରକୃତି, ଭରଦ୍ୱାଜ ମଧ ତାଙ୍କ ସୂତ୍ରରେ ସେହି ସମାନ କଥା କହିଛନ୍ତି । ପ୍ରକୃତିତ୍ୱନ୍ନାର୍ଯ୍ୟା ଇତ୍ୟାଦି ଦୁର୍ଗା ସପ୍ତସତୀରେ କୁହାଯାଇଛି ସମସ୍ତ ନାରୀ ଦେବୀ ଦୁର୍ଗାଙ୍କର ପ୍ରକାଶମାନ ରୂପ 'ବିଦ୍ୟାଃ ସମସ୍ତାସ୍ତବ ଦେବୀ ଭେଦାଃ ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ' ଏହି ପ୍ରକୃତି ହିଁ ପୃଥିବୀର ସୃଜନଶକ୍ତି ଏହା ସ୍ମରଣ ରଖିବାକୁ ହେବ ।

**ବିଶେଷ ଧର୍ମ**

ନାରୀ ଏବଂ ପୁରୁଷ ଉଭୟଙ୍କ ପାଇଁ କେତେକ ବିଶେଷ ଧର୍ମ ରହିଅଛି । ମନୁଷ୍ୟର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ଯାଗ । କାରଣ ସେହି ଧର୍ମ ତାକୁ ମୁକ୍ତି ମାର୍ଗକୁ ନେଇଥାଏ ।

ଯାଗପ୍ରଧାନୋ ଧର୍ମୋଃ ପୁରୁଷସ୍ୟ କୈବଲ୍ୟୋପଯୋଗିତ୍ୱାତ୍ (ତତ୍ରୈବ)

ଯଜ୍ଞ (ତ୍ୟାଗ) ଦାନ, ଏବଂ ତପ ତିନିଗୋଟି ଧାର୍ମିକ କର୍ତ୍ତବ୍ୟ ସଂସାରରେ ପ୍ରତ୍ୟେକ ବ୍ୟକ୍ତି ଆଚରଣ କରିବା ବିଧେୟ ।

ଯଜ୍ଞଦାନତପଃ କର୍ମ ନତ୍ୟାଜ୍ୟଂ କାର୍ଯ୍ୟମେବତତ୍

ଯଜ୍ଞୋ ଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍ (ଗୀତା ୧୩/୫)

ପୁନଃ ଯଜ୍ଞ ତ୍ରିବିଧ ଯଥା- କର୍ମଯଜ୍ଞ, ଉପାସନା ଯଜ୍ଞ ଏବଂ ଜ୍ଞାନଯଜ୍ଞ । ସୁତରାଂ ଜ୍ଞାନ ମଧ୍ୟ ଯଜ୍ଞର ଏକ ପ୍ରକାର । ଆମେ ଏଠାରେ ଲକ୍ଷ୍ୟକରି ପାରିବା ଯେ ତ୍ରିବିଧ ଗୁରୁତ୍ୱ ପୂର୍ଣ୍ଣ କର୍ତ୍ତବ୍ୟ ମଧ୍ୟରୁ ଜ୍ଞାନ, ଯଜ୍ଞ ସହିତ ନିବିଡ ଭାବେ ସଂବଧାନ୍ୱିତ । ଯାହା ମୁକ୍ତି ପାଇଁ ଏକ ମାତ୍ର ମାର୍ଗ । ଋତେ ଜ୍ଞାନାନ୍ନ ମୁକ୍ତିଃ । ତେଣୁ ଯଜ୍ଞ ମନୁଷ୍ୟର ବିଶେଷ ଧର୍ମ ନିମିତ୍ତ ସ୍ଥିରୀକୃତ ।

ନାରୀର ଧର୍ମ ହେଉଛି 'ତପ' ମାତ୍ର ଏହା ତାକୁ କୈବଲ୍ୟ ପ୍ରଦାନ କରି ପାରେ ନାହିଁ । ତପଃ ପ୍ରଧାନୋ ନାର୍ଯ୍ୟାଃ କୈବଲ୍ୟାନୁ ପଯୋଗିତ୍ୱାତ୍ତ (ତତ୍ରୈବ)

ବର୍ତ୍ତମାନ ପ୍ରଶ୍ନହୁଏ ଧର୍ମ କିପରି ପୁରୁଷକୁ ମୁକ୍ତି (salvation) ଦେଇପାରେ ଏବଂ ନାରୀକୁ ଦେଇପାରେନାହିଁ । ଉତ୍ତର ଅତି ସହଜ । କୈବଲ୍ୟ ହେଉଛି କେବଳତ୍ୱ ଅଥବା (ଏକାନ୍ତ) ଭାବ । ଆମେ କହିଛୁ ଯେ ସୃଷ୍ଟି ଆରମ୍ଭରେ ଜଣେ ସେ ଥିଲେ ଯିଏ ନିଜକୁ ଦୁଇ ଭାଗରେ ବିଭାଜିତ କଲେ ଏବଂ ଏହି ଦୈତ୍ୱ ଭାବ ସମଗ୍ର ସୃଷ୍ଟିର କାରଣ । ପ୍ରତ୍ୟେକ ସୃଷ୍ଟିର ମୂଳରେ ପୁରୁଷ ଏବଂ ନାରୀ ଏହି ଦୁଇଟି ସ୍ୱତନ୍ତ୍ର ତଥା ମୌଳିକ ଉପାଦାନ ନିହିତ ।

ଦ୍ୱିଧା କୃତ୍ୱାତ୍ମନୋ ଦେହ ମର୍ଦ୍ଧେନ ପୁରୁର୍ଷୋଭବତ୍ ।
ଅର୍ଦ୍ଧେନ ନାରୀ ତସ୍ୟାଂ ସ ବିରାଜ ମସୃଜତ୍ ପ୍ରଭୁଃ ॥
ସଇମମେବାତ୍ମାନଂ ଦ୍ୱେଧାପାତୟତ୍ତତଃ ପତିଶ୍ଚପତ୍ନୀ ଚାଭବତାମ୍ ॥
(ବୃହଦାରଣ୍ୟକୋପନିଷଦ୍)

ଦ୍ୱେ ଧାରେ ସ୍ୱତନ୍ତ୍ର ରୂପତ୍ୱାତ୍ ସ୍ତ୍ରୀଧାରା ପୁଂଧାରା ଚେତି ( କ.ମ ଦର୍ଶନ)

ବର୍ତ୍ତମାନ ଆଉଥରେ ଏକତ୍ୱ ବା ଏକୀକରଣ କୈବଲ୍ୟ ପ୍ରାପ୍ତି ପାଇଁ ହେବା ପ୍ରୟୋଜନ । ଏଠାରେ ଆମେ ସୁଚାଇବାକୁ ଚାହୁଁ ଯେ ପତ୍ନୀ ପତିଠାରୁ ପୃଥକ ନୁହେଁ, ଯୋଭର୍ତ୍ତା ସା ସ୍ମୃତାଙ୍ଗନା (ସତ୍ୟ ହେଉଛି ପତି ପତ୍ନୀ କିନ୍ତୁ ଏକ ଏବଂ ଅଭିନ୍ନ) ତେଣୁ ଜଣେ ନାରୀ (ପ୍ରକୃତି ) ନିଶ୍ଚିତ ନିଜକୁ ପୁରୁଷ ସହ ଏକାକାର କରିଦିଏ ସୁତରାଂ ଏଥିରୁ ସ୍ପଷ୍ଟ ଯେ ନାରୀ ମୋକ୍ଷ ପାଇଁ ପୁରୁଷ ଉପରେ ନିର୍ଭର କରିଥାଏ । ଅନ୍ୟ ପକ୍ଷରେ ପୁରୁଷ ଜ୍ଞାନଦ୍ୱାରା ବାସ୍ତବ ସ୍ୱରୂପ ଆତ୍ମଜ୍ଞାନକୁ ପୁନଃ ପ୍ରାପ୍ତି କରି ଥାଏ । ସେ ଅଜ୍ଞାନ ପରିହାର ପୂର୍ବକ ଚେଷ୍ଟିତ ହୋଇ ଜ୍ଞାନ ଆହରଣ କରିଥାଏ ।ତେଣୁ ଆମେ ଦେଖିଲେ ଯେ କିପରି ନାରୀ ଓ ପୁରୁଷଙ୍କ ବିଶେଷ ଧର୍ମ ପରସ୍ପର ଠାରୁ ପୃଥକ । ନାରୀ ନିଜକୁ ଚିହ୍ନଟ କରିବା ପାଇଁ ତପସ ଅପେକ୍ଷା ଅନ୍ୟ କିଛି ଉନ୍ନତ ମାଙ୍ଗଳିକକର ମାର୍ଗ ନାହିଁ । ଏହାଦ୍ୱାରା ସେ ନିଜେ ପୁରୁଷ ହୋଇପାରିବ ।

ଭ୍ରମରକୃତ ପଦ୍ଧତି (କୁମ୍ଭାରିଆ ପୋକ ଆହରଣ) ଅନୁସାରେ ଏହା ସଂଭବ ହେବ । ଏଇଥିପାଇଁ ଆମ ଶାସ୍ତ୍ର ମାନଙ୍କରେ ଜଣେ ନାରୀ ତା ସ୍ୱାମୀର ଭକ୍ତ ହୋଇଥାଏ । ଏଥିରୁ ଜଣାଯାଉଛି ଯେ କେତେକାଂଶରେ ନାରୀର ମୋକ୍ଷ ପ୍ରାପ୍ତି ପୁରୁଷ ଅପେକ୍ଷା ସହଜତର । ଯେ କି ଅସଂଖ୍ୟ ଜନ୍ମ ଏବଂ ବିବିଧ ବୃଦ୍ଧି ମଧ୍ୟ ଦେଇ ଗତି କରିଆସିଛି । ଅପରପକ୍ଷେ ଜଣେ ନାରୀ ଯେ କୌଣସି ଜାତି ବା ସାମାଜିକ ସ୍ଥିତିର ହୋଇଥାଉ ମୋକ୍ଷ ପ୍ରାପ୍ତି କରିଥାଏ । କେବଳ ତା ସ୍ୱାମୀ ପ୍ରତି ଗଭୀର ଭକ୍ତି ମାଧ୍ୟମରେ । ଏହା ମଧ୍ୟ ସୂଚିତ ହୋଇଛି ଯେ ଜଣେ ନାରୀ ତା ସତୀତ୍ୱ ପ୍ରଭାବରେ ବସ୍ତୁତଃ ନିଜ ସ୍ୱାମୀକୁ ସ୍ୱର୍ଗକୁ ଯିବାକୁ ସହାୟତା କରିଥାଏ ।

ବ୍ୟାଳଗ୍ରାହୋ ଯଥାବ୍ୟାଳଂ ବଳାଦୁଦ୍ଧରତେବିଳାତ୍ ।
ଏବ ମୁଦ୍ଧୃତ୍ୟ ଭର୍ତ୍ତାରଂ ତେନୈବ ସହ ମୋଦତେ ॥

ଏତିକିରେ ଆମେ ନାରୀ ପୁରୁଷର ବିଶେଷଧର୍ମ ଚର୍ଚ୍ଚାକୁ ସୀମିତ ରଖିବା ।

## ବିବାହ ଏବଂ ମୋକ୍ଷ

ବର୍ତ୍ତମାନ ଆମେ ଦେଖିବା ବିବାହ କିପରି ମୋକ୍ଷର ମାର୍ଗ ହୋଇଅଛି । ପୂର୍ବ ପାରାଗ୍ରାଫ୍‌ରେ ଆମେ ଏ ସମ୍ବନ୍ଧରେ ସୂଚିତ କରିଅଛୁ । କିନ୍ତୁ ଭରଦ୍ୱାଜ ତାକୁ ବୋଧଗମ୍ୟ କରିବା ପାଇଁ କେତେକ ବୈଜ୍ଞାନିକ ପରିଭାଷା ମାଧ୍ୟମରେ ଚେଷ୍ଟା କରିଛନ୍ତି । ଏହା ପୂର୍ବରୁ ଚର୍ଚ୍ଚିତ ହୋଇଅଛି ଯେ ସମଗ୍ର ବିଶ୍ୱ ପୁରୁଷ ଏବଂ ନାରୀ ଧାରାକୁ ନେଇ ଗଠିତ ହୋଇଅଛି । ନାରୀ ଅଂଗରେ ଥିବାଜୀବ, ପୁରୁଷ ଅଂଗର ଜୀବ ସହ ଏକାକାର ହୋଇଯାଏ ତାପରେ ପୂର୍ବବର୍ତ୍ତୀ ଆତ୍ମା ଜ୍ଞାନ ଆହରଣ କରିବା ପାଇଁ ଉପଯୁକ୍ତ ହୋଇଥାଏ ଏବଂ ତଦ୍ୱାରା ପୁନଃ ମୁକ୍ତି । ସ୍ତ୍ରୀ ଧାରା ପୁଂଧାରାମୟୀ କୈବଲ୍ୟାକାରିଣୀ । ଋଷି ସେହି ପରିପ୍ରେକ୍ଷୀରେ ସମାନ ଧରଣର ବୋଧ ବକ୍ତବ୍ୟ ଉପସ୍ଥାପିତ କରିଅଛନ୍ତି- ଶକ୍ତିଦ୍ୱିବିଧା ଆକର୍ଷଣ ବିକର୍ଷଣଭେଦାତ୍ । (ବିଶ୍ୱ ସଂଘଟନ ଦୁଇଗୋଟି ଶକ୍ତିର କାରଣରୁ ସୃଷ୍ଟି ଆକର୍ଷଣ ଏବଂ ବିକର୍ଷଣ) ଏହି ଦୁଇ ଚୁମ୍ବକୀୟ ଶକ୍ତି ବିଶ୍ୱ ପରିଚାଳନା କରୁଅଛନ୍ତି । ଏପରିକି ପରମାଣବିକ ମନ ଏହି ଦୁଇ ଶକ୍ତିଦ୍ୱାରା ସଂଘଟିତ । ପୁରାଣର ଉକ୍ତି ଦେଖନ୍ତୁ -

---

ଏଥିରୁ ଜଣାଯାଏ ଋଷି କହୁଛନ୍ତି ଯେ ନାରୀ ନିଜକୁ ପୁରୁଷ ନକରିପାରିବା ପର୍ଯ୍ୟନ୍ତ ମୋକ୍ଷ ପାଇପାରିବ ନାହିଁ । ଅତଏବ ପୁରୁଷ କେବଳ ମୋକ୍ଷପ୍ରାପ୍ତି କରିଥାଏ ।

ସମ୍ବନ୍ଧେତେ୨ଥ ଶକ୍ତି ଦ୍ୱେ ଆକର୍ଷଣ ବିକର୍ଷଣେ ।
ଦିବୌକସୋ ରାଗମୂଳା ଶକ୍ତି ରାକର୍ଷଣାତ୍ମିକା ॥
ଭବ ଦଭିର ବଗନ୍ତବ୍ୟା ସମୁଦ୍‌ଭୂତା ରଜୋଗୁଣାତ୍ ।
ବିକର୍ଷଣାଖ୍ୟା ଯା ଶକ୍ତିର ପରା ଦ୍ୱେଷ ମୂଳିକା ॥
ଅବଧାର୍ଯ୍ୟା ଭବଦ୍‌ଭିଃ ସା ସମୁଦ୍‌ଭୂତା ତମୋଗୁଣାତ୍ ॥

ଆବେଗ ଓ ରାଗ (ଅନୁରାଗ) ମନର ଆକର୍ଷଣ ଶକ୍ତି ହୋଇଥାଏ । ଘୃଣା ବା ଦ୍ୱେଷ ହେଉଛି ବିକର୍ଷଣର ଶକ୍ତି । ଏ ଦୁଇ ମଧ୍ୟରୁ ପୁରୁଷ ବିକର୍ଷଣ ଶକ୍ତିର ଧାରକ ଏବଂ ଜଣେ ନାରୀ ଆକର୍ଷଣ ଶକ୍ତିଧାରିଣୀ । ତତ୍ରାକର୍ଷଣଂନାର୍ଯ୍ୟା ବିକର୍ଷଣଂପୁଂସ(ଧର୍ମପାଦ ୫୮) ବାସ୍ତବରେ ପୁରୁଷ ବିଘଟନ ଏବଂ ନାରୀ ହେଉଛି ସୃଜନଶକ୍ତି ।

ନିଃଶ୍ରେୟସଂ ତତ୍ ସମନ୍ୱୟେ ଯେତେବେଳେ ଏହି ଦୁଇଶକ୍ତି ସମାନ ଚୁମ୍ବକୀୟ ବଳୟ ମଧ୍ୟରେ ପରସ୍ପରକୁ ଭେଟିଥାନ୍ତି ପରବର୍ତ୍ତୀ ପରିଣାମତଃ ସତ୍ୱ ଗୁଣର ଉଦୟ ହୋଇଥାଏ । ଯେଉଁଠାରେ ଆକର୍ଷଣ କିମ୍ବା ବିକର୍ଷଣର ଶକ୍ତି ନଥାଏ । ଯାହାକୁ ଆମେ ପୂର୍ଣ୍ଣ ଜ୍ଞାନ ବା ଆଶୀର୍ବାଦ କହିପାରିବା । ଯେଉଁ ସ୍ଥିତିରେ ରଜଗୁଣ ଓ ତମଗୁଣର ଅଭାବ ହୋଇଥାଏ । ସତ୍ୱ ଗୁଣ ହେଉଛି ସ୍ୱଭାବରେ ଏହିପରି ।

ସମତା ଯା ଦ୍ୱୟୋର୍ଯତ୍ର ଶକ୍ତ୍ୟୋଃ ସଂଜାୟତେ ଶୁଭା ।
ତତ୍ରୈବ ସତ୍ୱସଂଯୁଷ୍ଟ ଜ୍ଞାନାନନ୍ଦ ସ୍ଥିତିର୍ଭବେତ୍ ॥

ଏବେ ଆମେ କହିପାରିବା ଏପରିକି ଜଣେ ନାରୀ କେବଳ ସତୀତ୍ୱ ବଳରେ ମୋକ୍ଷ ପଦ ଲାଭ କରିପାରିବ ନାହିଁ । ସମସ୍ତ ବେଦ କହନ୍ତି ଯେ ଜ୍ଞାନ ବିନା ମୁକ୍ତି ନାହିଁ । ଏଥିପାଇଁ ଋଷି ଏକ ତତ୍‌କାଳ ଉତ୍ତର ଦେଇ ଅଛନ୍ତି ଏହି ଦୁଇ ସୂତ୍ର ମାଧ୍ୟମରେ ।

(୧) ଏକତତ୍ତ୍ୱ ତପୋଭ୍ୟାଂ ସତୀଲୋକ ଲାଭଃ ।

(୨) ପତିମୟତ୍ୱାତ୍ ପୁରୁଷ ତ୍ୱମ୍ ।

ଦୁଇଟି ଉତ୍ତର ଏଠାରେ ଦିଆଯାଇଛି । ସତୀତ୍ୱ ଦ୍ୱାରା ଜଣେ ନାରୀ ସତ୍ୟ ଲୋକକୁ ଯାଇପାରିବ । ଯେଉଁଠି ସେ ସହଜରେ ଜ୍ଞାନାର୍ଜନ କରିପାରିବ । ତଦ୍ୱାରା ସେ ମୋକ୍ଷଲାଭ କରିପାରିବ । ଦ୍ୱିତୀୟତଃ ଜଣେ ଅନୁରକ୍ତା, ପତିଗତପ୍ରାଣା ପତ୍ନୀ, ତା ସ୍ୱାମୀକୁ ଏପରିକି ତା ମୃତ୍ୟୁ ଶଯ୍ୟାରେ ସ୍ମରଣ କରି ପାରିବ ଏବଂ ତା ପରଜନ୍ମରେ ସେ ଜଣେ

---

ଏଥିରୁ ଜଣାଯାଉଛି ଯେ ଋଷି ଏହା କହିବା ପାଇଁ ଚାହୁଁଛନ୍ତି ଯେ ନାରୀ ନିଜକୁ ପୁରୁଷ ନକଲା ପର୍ଯ୍ୟନ୍ତ ମୁକ୍ତି ପାଇପାରିବ ନାହିଁ । ସୂଚନା ଯୋଗ୍ୟ ଯେ ପୁରୁଷ କେବଳ ମୁକ୍ତି ସୋପାନରେ ଅଧିଷ୍ଠିତ ହୋଇପାରିଥାଏ ।

ପୁରୁଷ ହେବ ଯିଏ ଅତି ସହଜରେ ଜ୍ଞାନାର୍ଜନ କରିପାରିବ । ତା ପୂର୍ବ ଜନ୍ମର ସୁକୃତ ସଂଯୋଗରୁ ସେହି ଜ୍ଞାନ ଲାଭ କରି ମୋକ୍ଷ ପଦର ଅଧିକାରୀ ହୋଇପାରିବ । ଯାହାକୁ ଆମେ ମୃତ୍ୟୁଶଯ୍ୟାରେ ଚିନ୍ତା କରିବା ପରଜନ୍ମରେ ଆମେ ତାହାହିଁ ହେବା । ଏହା ଏକ ସୁପରିଜ୍ଞାତ ମନସ୍ତାତ୍ତ୍ୱିକ ତତ୍ତ୍ୱ ।

ଯଂ ଯଂ ବାପି ସ୍ମରଭାବଂ ତ୍ୟଜତ୍ୟତେ କଳେବରମ୍ ।

ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବ ଭାବିତଃ ॥ (ଗୀତା ୮।୬)

ତଦେବ ସକ୍ତଃ ସହକର୍ମଣୌତି ଲିଙ୍ଗଂ ମନୋ ଯତ୍ର ନିଷକ୍ତ ମସ୍ୟ । (ବୃହଦାରଣ୍ୟେକୋପନିଷଧ) ସର୍ବୋପରି ଏ ସମସ୍ତ କେବଳ ବ୍ୟାଖ୍ୟାନ୍ ପର୍ଯ୍ୟାୟର । ଜଣେ ସତୀ ନାରୀ ପାଇଁ ତାଙ୍କ ସ୍ୱାମୀ ଜଣେ ଅସ୍ଥି ମେଦ ଧାରୀ ନୁହଁନ୍ତି । ସେ ଈଶ୍ୱରଙ୍କ ଅବତାର ଏପରିକି ତା ମୃତ୍ୟୁ ଶଯ୍ୟାରେ ତାଙ୍କୁ ସ୍ମରଣର ଅବକାଶ ରହିଛି । ସେ ତାଙ୍କ ସହ ଏକତ୍ୱ ହେଲା ପରେ ଈଶ୍ୱରଙ୍କୁ ସ୍ମରଣ କରିପାରିବ ।

ଏଠାରେ ସୂଚନାଯୋଗ୍ୟ ଯେ ଜଣେ ନାରୀ ଯଦି ତାର ସକଳ ଉଦ୍ୟମ ସତ୍ତ୍ୱେ ନିଜ ସତୀତ୍ୱରକ୍ଷା କରିବାରେ ବିଫଳ ହୁଏ, ସେ ପରଜନ୍ମରେ ଅତିକମ୍‌ରେ ଲାଭାନ୍ୱିତ ହେବ । ଯୋଗାଭ୍ୟାସ ଓ ପୂର୍ବଜନ୍ମର ସ୍ମୃତି ହେତୁ ଏବଂ ସତକର୍ମର ଫଳ କାରଣରୁ ।

ଭ୍ରଷ୍ଟାପି ଯୋଗିନୀ ଶ୍ରେୟୋଭାକ୍ (କ.ମ. ଦର୍ଶନ)

ନହି କଲ୍ୟାଣ କୃତ୍ କଶ୍ଚିଦ୍ ଦୁର୍ଗତି ତାତଗଚ୍ଛତି (ଗୀତା)

କିନ୍ତୁ ପୁନଃ କେବଳ ପ୍ରେମ ଦ୍ୱାରା ମୋକ୍ଷ ଲାଭ ଯୋଗ ଅପେକ୍ଷା ସହଜ । ଏ ସମସ୍ତ ତତ୍ତ୍ୱ ନିର୍ବୋଧ ଏବଂ ହାସ୍ୟାସ୍ପଦ ମନେ ହୋଇପାରେ । କିନ୍ତୁ ଆମେ ଏହାଦ୍ୱାରା ଯେଉଁ ଆଦେଶ ପ୍ରାପ୍ତ ହେଲୁ, ତାହା ପ୍ରାଚୀନ ଭାରତୀୟ ଋଷିମାନଙ୍କ ବିଚାର ଆଧାରରେ ପର୍ଯ୍ୟବେସିତ । ବିବାହ କିପରି ଅଧ୍ୟାତ୍ମ ସଂଯୁକ୍ତ ତାହା ଆମ ପୂର୍ବସୂରୀଙ୍କ ଦ୍ୱାରା ପ୍ରତିପାଦିତ । ସୁତରାଂ ଏହା କେବଳ ସାମାଜିକ ପ୍ରଥା ଭାବେ ତାଙ୍କ ଦ୍ୱାରା ଗୃହୀତ ହୋଇନାହିଁ ।



# ହିନ୍ଦୁ ବିବାହ ସଂସ୍କାର ଓ ଏହାର ସ୍ୱରୂପ

ଭାରତୀୟ ହିନ୍ଦୁମାନଙ୍କର ବିବାହ ବିଧାନ ଅତ୍ୟନ୍ତ ପ୍ରାଚୀନ, ପବିତ୍ର ଏବଂ ବିଲକ୍ଷଣ । ଅନ୍ୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ପ୍ରଚଳିତ ବିବାହ କେବଳ ଭୌତିକ ଦୃଷ୍ଟିକୋଣ ସମନ୍ୱିତ । ଅର୍ଥ କାମ ପରାୟଣତା ତାଙ୍କର ଆଦର୍ଶ । ଭୋଗ ହେଉଛି ସେମାନଙ୍କର ଲକ୍ଷ୍ୟ । କିନ୍ତୁ ବିବାହ ଏକ ଧାର୍ମିକ ସଂସ୍କାର । ଧର୍ମ ଧାରକ ତତ୍ତ୍ୱ, ସଂସ୍କାର ଶୋଧକ ଏବଂ ଗୁଣଧାରକ । ସଂସ୍କାର ଦୁଇ ପ୍ରକାର ହୋଇଥାଏ ମଳାପକର୍ଷଣ ଏବଂ ଗୁଣାତିଶୟର ଆଧାନ । । ସ୍ତ୍ରୀ ପୁରୁଷଙ୍କ ଅନ୍ତଃ କରଣର ମଳିନତା ବା ମଳିନ ଭାବନାକୁ ନିରାକରଣ କରି ଏଥିରେ ସତୀତ୍ୱ , ସଂଜମ, ବିଶୁଦ୍ଧ ଅନୁରାଗ ବିବାହ ସଂସ୍କାରର ଉଦ୍ଦେଶ୍ୟ, ଯଦିଓ ପ୍ରଜା ଉତ୍ପାଦନ ଉଦ୍ଦେଶ୍ୟରେ କାମ ଭାବନା ଏଥିରେ ମଧ ହୋଇଥାଏ । ତଥାପି ଏହା ଧର୍ମ ବିରୁଦ୍ଧ ନୁହେଁ । ଭାରତୀୟ ରାଜନୀତିରେ ଏହିକ୍ରମ ସୂଚିତ ହୋଇଛି ଯେ ଧର୍ମରୁ ଅର୍ଥ, ଅର୍ଥରୁ କାମ ତଥା କାମରୁ ସୁଖର ଉଦୟ ହୋଇଥାଏ । ଯେ ଧର୍ମ ଏବଂ ଅର୍ଥର ତ୍ୟାଗ କରି କେବଳ କାମ ପରାୟଣ ହୋଇଥାଏ ସେ ଆପଣାର ହାନି ହିଁ କରିଥାଏ । ମହାଭାରତରେ ଭଗବାନ ବ୍ୟାସ ହାତ ଉଠାଇ ଦୃଢ ସ୍ୱରରେ ଘୋଷଣା କରିଛନ୍ତି କି ଧର୍ମରୁ ଅର୍ଥ ଏବଂ କାମ ସୁଖର ଉପଲବ୍ଧି ହୋଇଥାଏ । ଏହାର ସେବନ ଲୋକେ କାହିଁକି କରିବେ ନାହିଁ । ପବିତ୍ର ସଂତତିର ସୃଷ୍ଟି ନିମିତ୍ତ ସ୍ତ୍ରୀ ପୁରୁଷଙ୍କର ପବିତ୍ର ଆଚାର ବିଚାରର ରକ୍ଷା ତଥା ଧର୍ମାନୁକୁଳ ବିବାହ ପଦ୍ଧତିର ପରିପାଳନ ଅତ୍ୟନ୍ତ ଆବଶ୍ୟକ । ଏକ ପତ୍ନୀ ବ୍ରତ ତଥା ପତିବ୍ରତ ଭାରତୀୟ ବିବାହ ପଦ୍ଧତିର ପବିତ୍ର ଦାନ । ଭାରତୀୟ ନାରୀ ଯାହାକୁ ମନରେ ବରଣ କରିନିଏ, ତାକୁ କୌଣସି ଅବସ୍ଥାରେ ତ୍ୟାଗ ନକରିବାର ଦୃଢ ସଂକଳ୍ପ ନେଇଥାଏ । ସେ ମନରେ ମଧ ପରପୁରୁଷର ଚିନ୍ତନ ଗର୍ହିତ ଧରାଯାଇଥାଏ । ହିନ୍ଦୁମାନଙ୍କର ବିବାହ ଏକ ମହାନ ଧର୍ମ କୃତ୍ୟ , ଏହାରଲକ୍ଷ୍ୟ ଇନ୍ଦ୍ରିୟ ସୁଖ ଭୋଗ ନାହିଁ, ଧାର୍ମିକ ପୁତ୍ର ଉତ୍ପନ୍ନ କରି ଦେବଯଜ୍ଞ,

ପିତୃଯଜ୍ଞର ପାବନ ପରମ୍ପରାକୁ ପ୍ରବାହିତ କରି ରଖିବା ।

ବିବାହର ଅଷ୍ଟବିଧ ଶ୍ରେଣୀ ସଂପର୍କରେ ମହର୍ଷି ମନୁ ସୂଚିତ କରି ଅଛନ୍ତି ।

ବ୍ରାହ୍ମୋ ଦୈବସ୍ତ ଥୈବାର୍ଷଃ ପ୍ରାଜାପତ୍ୟ ସ୍ତଥାଽସୁରଃ
ଗାନ୍ଧର୍ବୋ ରାକ୍ଷସଶ୍ଚୈବ ପୈଶାଚ ଶ୍ଚାଷ୍ଟମୋଽଧମ ।(ମନୁ ୩।୨୧)

(୧) ବ୍ରାହ୍ମ (୨) ଦୈବ, (୩) ଆର୍ଷ (୪) ପ୍ରାଜାପତ୍ୟ (୫) ଅସୁର, (୬) ଗାନ୍ଧର୍ବ (୭) ରାକ୍ଷସ, (୮) ପୈଶାଚ

(୧) ବ୍ରାହ୍ମ - ବିଦ୍ୟାଯୁକ୍ତ, ସଦାଚାର ସଂପନ୍ନ ପୁରୁଷକୁ ସତ୍‌କାର କରି କନ୍ୟାର ସମ୍ମତି କ୍ରମେ ନିମନ୍ତ୍ରଣ କରି ବସ୍ତ୍ରାଦି ଆଚ୍ଛାଦନ କରି କନ୍ୟାଦାନ କରିବାକୁ ବ୍ରାହ୍ମ ବିବାହ କୁହାଯାଏ ।

(୨) ଦୈବ- ବିସ୍ତୃତ ଯଜ୍ଞରେ ବଡ ବଡ ଋତ୍ୱିକ ମାନଙ୍କୁ ନିମନ୍ତ୍ରଣ କରି ଓ ସେମାନଙ୍କ ମଧ୍ୟରୁ ଯୋଗ୍ୟ ବିଦ୍ୱାନଙ୍କ ହାତରେ କନ୍ୟାକୁ ଅଳଂକୃତ କରି ଦାନ କରିବାକୁ ଦୈବ ବିବାହ କୁହାଯାଏ ।

(୩) ଆର୍ଷ ବିବାହ- ଯଜ୍ଞ କାର୍ଯ୍ୟ ପାଇଁ ଏକ ବା ଦୁଇଯୋଡା ଗାଈ, ବଳଦ ବରଠାରୁ ନେଇ ବିଧାନକରି ଧର୍ମ ପୂର୍ବକ କନ୍ୟାଦାନ କରିବାକୁ ଆର୍ଷ ବିବାହ କୁହାଯାଏ ।

(୪) ପ୍ରାଜାପତ୍ୟ ବିବାହ -ବର କନ୍ୟାଙ୍କୁ ଯଜ୍ଞ ଶାଳାରେ ସତ୍‌କାର କରି ତୁମେ ଉଭୟ ଗୃହସ୍ଥାଶ୍ରମ ଧର୍ମ ଯଥୋଚିତ ପାଳନ କର । ଏହିପରି ଉପଦେଶ ଶୁଣାଇ ପ୍ରସନ୍ନତା ପୂର୍ବକ କନ୍ୟାଦାନ କରିବାକୁ ପ୍ରାଜାପତ୍ୟ ବିବାହ କୁହାଯାଏ ।

(୫) ଆସୁର ବିବାହ- ବରପକ୍ଷର ଲୋକଙ୍କୁ ଓ କନ୍ୟାକୁ ଯଥାଶକ୍ତି ଧନଦେଇ ଇଚ୍ଛାପୂର୍ବକ କନ୍ୟାଦାନକୁ ଆସୁର ବିବାହ କୁହାଯାଏ ।

(୬) ଗାନ୍ଧର୍ବ ବିବାହ- ବର କନ୍ୟା ଉଭୟଙ୍କର ପରସ୍ପର ଅନୁରାଗରୁ ମିଳନ ହେବା ଓ ମନେ ମନେ ସେମାନେ ପରସ୍ପରକୁ ପତିପତ୍ନୀ ମାନିନେବା କାମ ସଂଭୂତ ବିବାହକୁ  ଗାନ୍ଧର୍ବ ବିବାହ କୁହାଯାଏ ।

(୭) ହବନ ଛେଦନ ଓ ଗୃହରେ ପ୍ରବେଶ କରି ଏବଂ ଗାଳି ଦେଇ କ୍ରନ୍ଦନ କରୁଥିବା ଭୟଭୀତ କମ୍ପମାନ କନ୍ୟାକୁ ଗୃହରୁ ବଳାତ୍‌କାର ହରଣ କରି ବିବାହ କରିବାକୁ ରାକ୍ଷସ ବିବାହ କୁହାଯାଏ ।

---

୧ ଧର୍ମାଦର୍ଥୋଽର୍ଥତଃ କାମଃ କାମାତ୍ ସୁଖଫଳୋଦୟଃ । ଆତ୍ମାନଂ ହନ୍ତି ତୌହିତ୍ୱାଯୁକ୍ତ୍ୟା ଯୋ ନ ସେବତେ (କାମନ୍ଦକ)

(୨) ଧର୍ମାଦର୍ଥଶ୍ଚ କାମଶ୍ଚ ସ କିମର୍ଥଂ ନ ସେବ୍ୟ ତେ ॥ (ମହାଭାରତ ସ୍ୱର୍ଗାରୋହଣ ୫।୬୨)

(୮) ପୈଶାଚ ବିବାହ- ନିଦରେ ଶୋଇଥିବା ବା ନିଶା ସେବନ କରି ଉନ୍ମତ୍ତ ହୋଇଥିବା କନ୍ୟା ନିକଟକୁ ଗୋପନରେ ଯାଇ ଦୂଷିତ କରିବା, ଏହି ଅଷ୍ଟମ ପ୍ରକାର ବିବାହ ସମସ୍ତ ମଧ୍ୟରେ ନୀଚ ଓ ଅତିଦୁଷ୍ଟ ପୈଶାଚ ବିବାହ ।

ବ୍ରାହ୍ମ, ଦୈବ, ଆର୍ଷ ଓ ପ୍ରାଜାପତ୍ୟ ଏହି ଚାରି ପ୍ରକାର ବିବାହରେ ହିଁ ଯେଉଁ ସଂତାନ ଜନ୍ମ ହୁଅନ୍ତି, ସେମାନେ ବ୍ରହ୍ମ ତେଜ ଯୁକ୍ତ, ଶିଷ୍ଟ ଓ ଅତ୍ୟୁତ୍ତମ ହୁଅନ୍ତି । ଅସୁର, ଗାନ୍ଧର୍ବ ରାକ୍ଷସ ଓ ପୈଶାଚ ଏ ସମସ୍ତ ଉତ୍ପନ୍ନ ସଂତାନ ନୃଶଂସ, ମିଥ୍ୟାବାଦୀ, ବେଦବିଦ୍ୱେଷୀ ହୋଇଥାନ୍ତି ।

ବିବାହ କାଳ- ହିନ୍ଦୁ ଶାସ୍ତ୍ର ଅନୁସାରେ ଦ୍ୱିଜ ବାଳକ ଉପନୟନ ପରେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ମନ୍ତ୍ର ବ୍ରାହ୍ମଣାତ୍ମକ ବେଦ ଅଧ୍ୟୟନ ପୂର୍ଣ୍ଣ କରିଥାନ୍ତ । ପୁନଃ ଗୁରୁଦକ୍ଷିଣା ପୂର୍ଣ୍ଣ କରନ୍ତି । ଗୁରୁଦେବଙ୍କ ଆଜ୍ଞାରେ ସେ ସମାବର୍ତ୍ତନ ସଂସ୍କାର କରାନ୍ତି, ସ୍ନାତକ ହୋଇ ଗୃହକୁ ବାହୁଡି ଆସନ୍ତି । ଏହିପରି ଅବିପ୍ଳୁତ (ଅଖଣ୍ଡିତ) ବ୍ରହ୍ମଚର୍ଯ୍ୟ ସଂପନ୍ନ ସ୍ନାତକ ବିବାହ ଯୋଗ୍ୟ ଭାବେ ଗ୍ରହଣୀୟ । ଅଧ୍ୟୟନ ଓ ବ୍ରତର ପୂର୍ଣ୍ଣ କରିବା ନିମିତ୍ତ ସ୍ନାତକର ଅବସ୍ଥା ପ୍ରାୟ କୋଡିଏରୁ ପଚିଶ ବର୍ଷ ପର୍ଯ୍ୟନ୍ତ ହୋଇଯାଇଥାଏ । ଏହା ପୁରୁଷ ପାଇଁ ବିବାହର ଉଚିତ ସମୟ୍ ଭାବେ ଗ୍ରହଣୀୟ ।

ଯୋଗ୍ୟତା - ବର ଏବଂ କନ୍ୟା ସମସ୍ତ ଦୃଷ୍ଟିରୁ ଏକ ଅନ୍ୟର ଉପଯୁକ୍ତ ହେବା ଦରକାର । ବର ରୂପବାନ୍ ଏବଂ ସୁନ୍ଦର ହେଉ, ସୁସ୍ଥ ହେଉ ଉତ୍ତମ କୁଳ ସଂଭୂତ ହେଉ, ସେ ଏତିକି ସଂପଦ ସଂପନ୍ନ ହେଉ କି ପତ୍ନୀର ଭରଣପୋଷଣ ଉତ୍ତମ ରୂପେ କରିପାରୁଥିବ । କନ୍ୟାର ମଧ୍ୟ ରୂପ, ଗୁଣ, କୁଳ ଆଦିର ପରୀକ୍ଷା କରାଯାଉଥିଲା । ପୁରୁଷର ପୁରୁଷତ୍ୱ ଏବଂ ସ୍ତ୍ରୀର ସ୍ତ୍ରୀତ୍ୱକୁ ମଧ୍ୟ ବିଶ୍ୱସ୍ତ ରୂପେ ଜାଣିବା ପ୍ରୟୋଜନ । ସ୍ତ୍ରୀ ଉତ୍ତମ ଲକ୍ଷଣ ସଂପନ୍ନ ହୋଇ ତାର ବାହ୍ୟ ଏବଂ ଆନ୍ତରିକ ଦୁଇଲକ୍ଷଣ ଉପରେ ବିଚାର କରାଯାଉଥିଲା ।

କନ୍ୟା ଅନନ୍ୟ ପୂର୍ବିକା ହେବା ବିଧେୟ । ତାର ଅନ୍ୟ କାହାକୁ ବାଗ୍‌ଦାନ କରି ନଥିବା ଉଚିତ୍ । ସେ କାନ୍ତିମତୀ, ଅସପିଣ୍ଡା ଏବଂ ଯବୀୟସୀ ହୋଇଥିବ । ମାତାଙ୍କ ଠାରୁ ପାଞ୍ଚ ପୁରୁଷ ଏବଂ ପିତାଙ୍କ ଠାରୁ ପାଞ୍ଚ ପୁରୁଷ ମଧ୍ୟରେ ଜନ୍ମିତ କନ୍ୟାକୁ ସପିଣ୍ଡା କୁହାଯାଏ । ଯବୀୟସୀର ଅର୍ଥ ଛୋଟ ଅବସ୍ଥା ସଂପନ୍ନ । ଏହାର ଉଚ୍ଚତା ମଧ୍ୟ ବରଠାରୁ ଉଚ୍ଚା ହେବା ଅନୁଚିତ୍ । ସେ ବ୍ୟାଧିଗ୍ରସ୍ତ ହୋଇନଥିବେ । ତାର ଏକ ବା ଏକାଧିକ ଭାଇ ହେବା ଉଚିତ୍ । ବର କନ୍ୟାଙ୍କର ଗୋତ୍ର ପ୍ରବର ପୃଥକ ହେବା ଉଚିତ୍ । ଜ୍ୟୋତିଷ ଶାସ୍ତ୍ର ଆଧାରରେ ଜନ୍ମ କୁଣ୍ଡଳିର ମେଳ ମଧ୍ୟ ହେବା ପ୍ରୟୋଜନ । ଏଥିରେ

ସୌଭାଗ୍ୟ ଓ ସଂତାନ ଯୋଗ କିପରି ରହିଛି । ଏହା ବିଚାର କରିବା ବିଧି । ଗଣ, ଯୋନି, ଗ୍ରହ, ରାଶି, ବର୍ଗ, ବର୍ଣ୍ଣ, ତାରା, ଓ କୂଟ ଆଦିର ମଧ୍ୟ ଦାମ୍ପତ୍ୟ ଜୀବନ ଉପରେ ଗଭୀର ପ୍ରଭାବ ରହିଛି । ଏଣୁ ଏହାର ବିଚାର କରିବା ପ୍ରୟୋଜନ । କନ୍ୟା ପରି ବର ମଧ୍ୟ ଆବଶ୍ୟକ ଗୁଣ, ଲକ୍ଷଣ ଯୁକ୍ତ ଏବଂ ଦୋଷ ରହିତ **ହେବା ଆବଶ୍ୟ**କ । ସେ ନିଜ ବର୍ଣ୍ଣର ତଥା ବେଦ ଶାସ୍ତ୍ର ଜ୍ଞାତା ହେବା ବିଧେୟ । ତାର ପୁରୁଷତ୍ୱ ର ମଧ୍ୟ ଯତ୍ନ ପୂର୍ବକ ପରୀକ୍ଷା କରାଯିବା ଉଚିତ୍ । ସେ ତରୁଣ, ବୁଦ୍ଧିମାନ ଏବଂ ଜନପ୍ରିୟ ହେବା ଉଚିତ୍ ।

କନ୍ୟାଦାତା- ପିତା, ପିତାମହ, ଭାଇ ନିଜକୁଳର କୌଣସି ପୁରୁଷ ତଥା ମାତା ଏମାନେ କନ୍ୟାଦାନର ଅଧିକାରୀ ଏହା କଥିତ ହୋଇଛି । ଏଥି ମଧ୍ୟରୁ ପୂର୍ବକ୍ରମରେ ଶ୍ରେଷ୍ଠତା ରହିଛି । ପୂର୍ବର ଅଭାବରେ ପରର ଅଧିକାର ହୋଇଥାଏ । ଦାତାଙ୍କ ଅଭାବରେ କନ୍ୟା ସ୍ୱୟଂ ବର ଚୟନ କରିଥାଏ । ଏଥି ମଧ୍ୟରୁ ଆଦ୍ୟକ୍ରମରେ ପ୍ରାଥମିକତା ରହିଛି । ପୂର୍ବର ଅଭାବରେ ପରର ଅଧିକାର ହୋଇଥାଏ । ଏଣୁ ଯାହାକୁ ବାକ୍‌ଦାନ କରାଯାଇଥାଏ, ତାହାକୁ କନ୍ୟା ଦେବା ବିଧେୟ । ରଜୋଦର୍ଶନ ପରେ ମଧ୍ୟ କନ୍ୟା ଦାନରେ ବିଳମ୍ବ କରିଲେ କନ୍ୟା ତିନିବର୍ଷ ପର୍ଯ୍ୟନ୍ତ ପ୍ରତୀକ୍ଷା ପରେ ସ୍ୱୟଂ ବର ଚୟନର ଅଧିକାରିଣୀ ହୋଇଥାଏ ।

ପବିତ୍ରତା- ଯେ ପତି ଜୀବିତ ବା ମୃତ ପରେ ମଧ୍ୟ ଅନ୍ୟପୁରୁଷର ସ୍ୱୀକାର କରେନାହିଁ, ସେହିଁ ପତିବ୍ରତା । ସେ ଇହ ଲୋକରେ ଯଶସ୍ୱୀ ହୋଇଥାଏ ଏବଂ ପରଲୋକରେ ଉମାଙ୍କର ସହଚରୀ ହୋଇ ଆନନ୍ଦ ଗାମିନୀ ହୋଇଥାଏ । ଯଦି ଆଜ୍ଞାକାରିଣୀ, କୁଶଳ, ପୁତ୍ର ଜନନୀ ଏବଂ ପ୍ରିୟ ବାଦିନୀ ପତ୍ନୀକୁ ତ୍ୟାଗକରି କେହି ଭାର୍ଯ୍ୟାନ୍ତର ଗ୍ରହଣ କରେ ତେବେ ନିଜ ସଂପତ୍ତିର ଏକ ତୃତୀୟାଂଶ ସେହି ସ୍ତ୍ରୀକୁ ଦେବାକୁ ହେବ । ସେ ଯଦି ନିର୍ଦ୍ଧନ ତେବେ ସେହି ପ୍ରଥମା ସ୍ତ୍ରୀକୁ ଆଜୀବନ ଭରଣପୋଷଣ ଭାର ସାଦର ବହନ କରିବାକୁ ହେବ । ଏଥିପାଇଁ ରାଷ୍ଟ୍ର ନିୟମ ବିଶେଷ ଲାଗୁ ହୋଇଥାଏ ।

ସ୍ତ୍ରୀ ଧର୍ମ ସ୍ତ୍ରୀଙ୍କ ରକ୍ଷା- ସ୍ତ୍ରୀ ସଦା ପତିଙ୍କ ଆଜ୍ଞା ପାଳନ କରିବା ଉଚିତ୍ । ତାହାହିଁ ତାଙ୍କର ପରମ ଧର୍ମ । ବିବାହର ପ୍ରୟୋଜନ ହେଉଛି ବଂଶ ପରମ୍ପରାର ବିଚ୍ଛେଦରୁ ରକ୍ଷା ତଥା ପତ୍ନୀଙ୍କ ସହିତ ସତ୍‌ଧର୍ମାନୁଷ୍ଠାନ ଦ୍ୱାରା ଅନ୍ତଃକରଣର ଶୁଦ୍ଧି ବା ସ୍ୱର୍ଗାଦି ଉତ୍ତମ ଲୋକ ପ୍ରାପ୍ତ କରିବା । ଅତଃ ସ୍ତ୍ରୀର ସେବନ ତଥା ସଂରକ୍ଷଣ ପତିର ପରମ କର୍ତ୍ତବ୍ୟ ।

ଋତୁକାଳର ରାତ୍ରି - ସ୍ତ୍ରୀ ସହିତ ସଂପର୍କ ସ୍ଥାପିତ କରିବା ପାଇଁ ଷୋଳ ରାତ୍ରି ଋତୁକାଳ ସଂବଧିନୀ ସ୍ୱୀକାର କରାଯାଇଛି । ଏଥିମଧ୍ୟରୁ ପ୍ରଥମ ଚାରିଦିନ ସର୍ବଥା ବର୍ଜନୀୟ । ଅବଶିଷ୍ଟ ବାର ରାତ୍ରି ମଧ୍ୟରୁ ଯାହା ଯୁଗ୍ମ ରାତ୍ରି, ତହିଁରେ ପୁତ୍ରାର୍ଥୀ ସହବାସ କରିବା ବିଧେୟ । ପର୍ବ ଦିନମାନ ବର୍ଜନୀୟ । ମାସରେ ଗୋଟିଏ ରାତ୍ରିରେ ଥରେ ସଂପର୍କ ସ୍ଥାପିତ କରିବା ବିଧି । ଏପରି କରିବା ପୁରୁଷ ବ୍ରହ୍ମଚାରୀବତ୍ ହିଁ ବୁଝିବାକୁ ହୋଇଥାଏ । ଆଧାନରେ ମଘା ଓ ମୂଳା ନକ୍ଷତ୍ର ବର୍ଜିତା ସେହି ସମୟରେ ଚନ୍ଦ୍ରବଳ ଠିକ୍ ରହିବା ଉଚିତ୍ ।

**ନାରୀମାନଙ୍କର ସମାଦର, ସଂରକ୍ଷଣ ଏବଂ ଆଚରଣ-**

ପତି, ଭ୍ରାତା, ପିତା, ବଂଧୁବାଂଧବ, ଶାଶୁ-ଶ୍ୱଶୁର, ଦେବର ତଥା କୁଟୁମ୍ବଲୋକେ ଭୂଷଣ, ଭୋଜନ ଏବଂ ବସ୍ତ୍ରଦ୍ୱାରା ନାରୀକୁ ସଦା ସମ୍ମାନ କରିବା ଉଚିତ୍ । ନାରୀକୁ ଗୃହ ବ୍ୟବସ୍ଥାରେ ନିଯୁକ୍ତ ହେବା ଉଚିତ୍ । ଘରର ପ୍ରତ୍ୟେକ ବସ୍ତୁକୁ ସମ୍ଭାଳି ବ୍ୟବସ୍ଥିତ ଭାବେ ରଖିବା ଉଚିତ୍ । ନାରୀ ସଦା କାର୍ଯ୍ୟଦକ୍ଷ ଓ ପ୍ରସନ୍ନ ରହିବା ଦରକାର । ଅଯଥା ବ୍ୟୟକାରୀ ନହୁଅନ୍ତୁ । ଶାଶୁ ଶ୍ୱଶୁରଙ୍କୁ ପ୍ରଣାମ ଏବଂ ପତି ସେବାରେସଦା ତତ୍ପର ରହୁ । ପତି ଦୂରସ୍ଥ ହୋଇଥିଲେ ସେ କ୍ରୀଡା, ଶୃଂଗ୍ାରଧାରଣ, ସାମାଜିକ ଉତ୍ସବର ଦର୍ଶନ, ହାସ-ପରିହାସ ଏବ ଅନ୍ୟଘରକୁ ଯିବା ଆଦିକାର୍ଯ୍ୟ କରିବା ଅବିଧି । ନାରୀ କେବେ ସ୍ୱତନ୍ତ୍ର ରହିବା ଉଚିତ୍ ନୁହେଁ । ସେ ପିତା, ପତି ବା ପୁତ୍ରଙ୍କ ହେପାଜତରେ ରହିବା ଉଚିତ୍ । କେହି ନଥିଲେ କୁଟୁମ୍ବଙ୍କ ସଂରକ୍ଷଣରେ ରହିବେ । ସେ ଏକାକୀ ବୁଲିବା ଠିକ୍ ନୁହେଁ । ଅନ୍ୟଥା ତାର ନିନ୍ଦା ହୋଇଥାଏ । ସେ ସଦା ପତିଙ୍କ ପ୍ରିୟ ତଥା ହିତରେ ଲାଗିରହନ୍ତି । ସଦାଚାରୀ ତଥା ଜିତେନ୍ଦ୍ରିୟ ହୁଅନ୍ତୁ । ଏପରି କରିବା ଦ୍ୱାରା ତାକୁ ଇହ ଲୋକରେ କୀର୍ତ୍ତି ଓ ପରଲୋକରେ ଉତ୍ତମଗତି ପ୍ରାପ୍ତି ହୋଇଥାଏ ।

ହିନ୍ଦୁ ବିବାହର ବିଶେଷତା - ହିନ୍ଦୁ ବିବାହରେ ଦେବତା ତଥା ପିତରଙ୍କୁ ପୂଜନ କରି ତାଙ୍କ ଆଶୀର୍ବାଦ ପ୍ରାପ୍ତ କରାଯାଇଥାଏ । ମାତୃଗଣଙ୍କ ପୂଜା ଏବଂ ବନ୍ଦନା କରାଯାଇଥାଏ । ବିବାହ ନିମନ୍ତେ ଆସିଥିବା ବରକୁ ବିଷ୍ଣୁଭାବେ ମାନି ସର୍ବାଧିକ ପୂଜନୀୟ କୁହାଯାଇଛି। ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ବିଷ୍ଟର, ମଧୁପର୍କ ତଥା ଗୋଦାନ ଦ୍ୱାରା ତାଙ୍କୁ ସତ୍କାର କରାଯାଇଥାଏ । ସର୍ବାଦୌ ମଧୁପର୍କ ଦ୍ୱାରା ତାଙ୍କୁ ପୂଜା କରାଯାଏ । ଏହାପରେ ତାଙ୍କୁ କନ୍ୟାଦାନ କରାଯାଇଥାଏ । ଏହାକୁ ମହାଦାନ କୁହାଯାଏ । ଏଥିରେ ଯଜମାନଙ୍କୁ ରାଜାବରୁଣଙ୍କ ଉପାଧି ଦିଆଯାଏ । ବର ସାକ୍ଷାତ୍ ନାରାୟଣ ଏବଂ କନ୍ୟା ଲକ୍ଷ୍ମୀସ୍ୱରୂପା । ଭଗବାନଙ୍କୁ ଲକ୍ଷ୍ମୀ ପ୍ରଦାନ କରିବାଦ୍ୱାରା ଯେଉଁ ପୁଣ୍ୟ

ହୋଇଥାଏ, ତାହାହିଁ କନ୍ୟା ପିତାଙ୍କ ଉପଲବ୍ଧି ହୋଇଥାଏ । କନ୍ୟା ପ୍ରତିଗ୍ରହ ପରେ ବର ଅଗ୍ନି ଦେବଙ୍କୁ ପ୍ରଦକ୍ଷିଣ କରି ବଧୂଙ୍କୁ ସ୍ୱୀକାର କରିଥାଏ ଏବଂ କହିଥାଏ ଦେବୀ, ତୁମର ଦୃଷ୍ଟି ସୌମ୍ୟ ହେଉ, ତୁମେ ପତିହିତୈଷୀ ହୁଅ, ତୁମ ମନ ପ୍ରସନ୍ନ ଏବଂ ସଦ୍‌ଭାବରେ ପୂର୍ଣ୍ଣ ହେଉ, ତୁମେ କାନ୍ତି ମୟୀ ତଥା ତେଜସ୍ୱୀ ହୁଅ । ପୁତ୍ରର ଜନନୀ ହୁଅ । ଆସ୍ତିକ ଭାବଯୁକ୍ତ ତଥା ସୁଖଦାୟୀ ହୋଇକରି ରୁହ । ଆମ ଘରର ପଶୁମାନଙ୍କ ପାଇଁ ସୁଖଦାୟୀ ହୁଅ ।

ପୁନଃ, ବିବାହରେ ଅଗ୍ନି (ଯୋଜକ) ସ୍ଥାପନ ପୂର୍ବକ ହୋମ ହୋଇଥାଏ । ଏହି ହୋମରେ ବୈଦିକ ମନ୍ତ୍ରଦ୍ୱାରା ଦାମ୍ପତ୍ୟ ଜୀବନର ସୁଖମୟ ସଫଳ ତଥା ଧର୍ମ ଏବଂ ଯଶ ସମନ୍ୱିତ ପ୍ରାର୍ଥନା କରାଯାଇଥାଏ । ନାରୀର ସାଂଗୁଷ୍ଠ ଦକ୍ଷିଣ ହସ୍ତକୁ ଗ୍ରହଣ କରି ବର ଗାର୍ହସ୍ଥ ଧର୍ମ ନିର୍ବାହର ପ୍ରତିଜ୍ଞା ତଥା ଆଜୀବନ ସାଥୀରେ ରହି ପରସ୍ପର ସହଯୋଗ ଉଦ୍‌ଘୋଷ କରିଥାଏ । ଲାଜା ହୋମରେ ବଧୂ ପତି କୁଳ ଏବଂ ପିତୃକୁଳ -ଦୁଇଟିର ମଙ୍ଗଳ କାମନା କରିଥାଏ ।ଶିଳାରୋହଣ ଦ୍ୱାରା ପତି ନିଜର ପତ୍ନୀକୁ ଅବିଚଳ ସୌଭାଗ୍ୟ ପ୍ରଦାନର କାମନା କରିଥାଏ । ପରିକ୍ରମାରେ ଅଗ୍ନି ଦେବଙ୍କ ଠାରୁ ଶୁଭ ଆଶୀର୍ବାଦ ପ୍ରାର୍ଥନା କରାଯାଇଥାଏ । ଏହି ସମୟରେ ଉତ୍ତମ ପବିତ୍ରତାଙ୍କ ଗାଥାମୟ ଗାନ କରିବାର ବିଧି ରହିଅଛି । ଏଥିରୁ ସ୍ତ୍ରୀ ଧର୍ମ ନିର୍ବାହ ପ୍ରେରଣା ପ୍ରାପ୍ତ ହୋଇଥାଏ । ସପ୍ତପଦୀରେ ପତିପତ୍ନୀଙ୍କର ସଖ୍ୟ ସଂବଧ ସ୍ଥାପିତ ହୋଇଥାଏ । ଏହାଦ୍ୱାରା ବରବଧୂ ଦୁହେଁ ପରସ୍ପର ପ୍ରତି ଅନୁକୂଳ ଚ଼ଲିବାର ପ୍ରତିଜ୍ଞା କରିଥାନ୍ତି । ଧ୍ରୁବ ତଥା ଅରୁନ୍ଧତିଙ୍କ ଦର୍ଶନର ମଧ୍ୟ ବିଧାନ ରହିଛି । ଏହା ଫଳରେ ଆଜୀବନ ସଂବଧର ସୁଦୃଢତା ସଂକଳ୍ପ ହୋଇଥାଏ । ନାରୀକୁ ଏକ ପତି ବ୍ରତର ପ୍ରେରଣା ମିଳିଥାଏ ।

ଋଗ୍‌ବେଦର ଦଶମ ମଣ୍ଡଳ ୮୫ ସୂକ୍ତରେ ସୂର୍ଯ୍ୟାଙ୍କ ବିବାହର ଉଲ୍ଲେଖ ରହିଅଛି । ବେଦ ହେଉଛି ଯଜ୍ଞପ୍ରଧାନ । ଯଜ୍ଞରେ ପତ୍ନୀଙ୍କ ସନ୍ନିଧାନ ଅପେକ୍ଷିତ ଶ୍ରୀଷ୍ଟତେ ଲକ୍ଷ୍ମୀଷ୍ଚ ପତ୍ନ୍ୟୌ, ଇତ୍ୟାଦି ମନ୍ତ୍ର ପତିପତ୍ନୀଙ୍କ ସଂବଧର ଅନାଦି ସିଦ୍ଧତା ପ୍ରକଟ କରିଥାଏ ।

ଋଗ୍‌ବେଦରେ ପାଞ୍ଚଗୋଟି ସୂକ୍ତ ବଧୂସୂର୍ଯ୍ୟା ନିଜର ପତି ସୋମଦେବଙ୍କ ସ୍ତବନ କରିଅଛନ୍ତି । ସୂର୍ଯ୍ୟା ପତି ଗୃହକୁ ଯିବା ସମୟରେ ତାଙ୍କ ପାଇଁ ରଥ ଏବଂ ଶୃଂଗାର ସାମଗ୍ରୀର ମଧ୍ୟ ବିସ୍ତୃତ ବର୍ଣ୍ଣନା ମିଳିଥାଏ । କନ୍ୟାର ପ୍ରସନ୍ନତା ପାଇଁ ପ୍ରଦତ୍ତ ଉପହାରରୁ ବହୁତ ନାମ ଦିଆଯାଇଛି । ହିରଣ୍ୟବର୍ଣ୍ଣ ସୁନ୍ଦର ରଥଚକ୍ରର ମଧ୍ୟ ଉଲ୍ଲେଖ ରହିଛି । ବିଦା ହେବା କଥା କୁଶଳରେ ପତି ଗୃହରେ ପହଞ୍ଚିବା ପାଇଁ ପ୍ରାର୍ଥନା କରାଯାଉଛି । ସେଠାରେ ସେ ଗୃହ ସ୍ୱାମୀ ହୋଇକରି ରହିବେ ଏହି ଶୁଭେଚ୍ଛା ପ୍ରକଟ କରାଯାଇଛି । ନିଜର

ବ୍ୟବହାରରେ ବଧୂ ସମସ୍ତ ଗୃହ ପରିଜନଙ୍କ ମନକୁ ବଶୀଭୂତ କରିଦେବ ତାଙ୍କର ପ୍ରିୟ ମନୋରଥ ପୂର୍ଣ୍ଣ ହେଉ । ସେ ଗୃହସ୍ଥ ଧର୍ମ ପାଳନ ପାଇଁ ସଜାଗ ରହନ୍ତୁ । ଦମ୍ପତି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଏକ ଅପର ନିମିତ୍ତ ସମ୍ମୁଖ ଏବଂ ଅନୁକୂଳ ରହନ୍ତୁ ଇତ୍ୟାଦି ସଦ୍‌ଭାବନା ବ୍ୟକ୍ତ କରାଯାଇଥାଏ ।

ଗୋଟିଏ ମନ୍ତ୍ରରେ କୁହାଯାଇଛି ବଧୂ ; ତୁମେ ମଳିନ ବସ୍ତ୍ର ତ୍ୟାଗ କରିଦିଅ । ବ୍ରାହ୍ମଣଙ୍କୁ ଧନଦାନ କର । ମଳିନ ବସ୍ତ୍ରରେ କୃତ୍ୟାର ପ୍ରବେଶ ହୋଇଥାଏ । ବଧୂର ମଳିନ ବସ୍ତ୍ର, ପାଲଟା ବସ୍ତ୍ର ସ୍ପର୍ଶରେ ପତି ଶ୍ରୀହୀନ ହୋଇଥାଏ । ଘରେ (ବରଘରେ) ପହଞ୍ଚିବା ପରେ ଗୁରୁଜନଙ୍କୁ ଆମନ୍ତ୍ରଣ କରାଯାଇ କୁହାଯାଏ ଏହି ସୁମଙ୍ଗଳା ବଧୂ ଘରକୁ ଆସିଅଛି । ଆଶୀର୍ବାଦ ପାଇଁ ଗୁରୁଜନ ଏଠାକୁ ଆସନ୍ତି । ଏହାକୁ ଦେଖନ୍ତୁ ଏହାକୁ ସୌଭାଗ୍ୟ ସୂଚକ ବରଦାନ କରିଯାଆନ୍ତୁ ।

ଶ୍ୱଶୁର କୁଳର ଲୋକେ ବଧୂକୁ ତ୍ୟାଗ ପୂର୍ବକ ଆଶୀର୍ବାଦ ଦେଇଥାନ୍ତି । ତୁମେ ସୁଖରେ ଏହି ଜଗତରେ ରୁହ । ତୁମର କେବେ ବିୟୋଗ ନହେଉ । ପୂର୍ଣ୍ଣ ଆୟୁ ଉପଭୋଗ କର । ନିଜ ଘର ପୁତ୍ର, ପୌତ୍ର ସହ ଆନନ୍ଦରେ ରୁହ । ପ୍ରଜାପତି ତୁମକୁ ସଂତାନ ପ୍ରଦାନ କରନ୍ତୁ । ଅର୍ଯ୍ୟମା ସେହି ସଂତାନ ମାନଙ୍କୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଜୀବିତ ରଖନ୍ତୁ । ବହୂ ! ତୁମେ ଦୋଷ ଦୁର୍ଗୁଣକୁ ଦୂରରେ ରଖି ପତିଙ୍କ ନିକଟରେ ରୁହ । ଆମର ଦ୍ୱିପଦ (ମନୁଷ୍ୟ) ଏବଂ ଚତୁଷ୍ପଦ ପଶୁ ସମସ୍ତଙ୍କ ପାଇଁ କଲ୍ୟାଣକାରୀ ହୁଅ । ତୁମେ ଶାଶୁ, ଶ୍ୱଶୁର, ଦେବର, ନଣନ୍ଦ ସମସ୍ତଙ୍କ ହୃଦୟର ସାମ୍ରାଜ୍ଞୀ ହୁଅ । ଏହା ବୈଦିକ କାଳର ଉଦ୍‌ଗାର ।

ବେଦ ନିର୍ଦ୍ଦେଶିତ ଇଷ୍ଟସାଧନର କର୍ମକୁ ଧର୍ମ କୁହାଯାଏ । ହିନ୍ଦୁ ବିବାହ ପଦ୍ଧତି ପୂର୍ଣ୍ଣତଃ ବୈଦିକ ହେବା କାରଣରୁ ଧର୍ମମୟ । ଧର୍ମର ଫଳ ହେଉଛି ଅଭ୍ୟୁଦୟ ଏବଂ ନିଶ୍ରେୟସ୍ । ଏଣୁ ପ୍ରତ୍ୟେକ ହିନ୍ଦୁଙ୍କୁ ବିବାହର ଧାର୍ମିକ ପକ୍ଷ ଉପରେ ଅଧିକ ଯୋର୍ ଦେବା ଉଚିତ୍ । ସଂପ୍ରତି ଯେଉଁ ବାହ୍ୟ ଆଡମ୍ବରର ବାହୁଲ୍ୟ, ଭୋଗବାଦୀ ଦୃଷ୍ଟିକୋଣ ସର୍ବସ୍ୱରୁ ବିରତ ହୋଇ ବୈବାହିକ ପବିତ୍ର କୃତ୍ୟର ପାଳନରେ ସତେ ସଂଲଗ୍ନ ରହିବା ଉଚିତ୍ । ଏହାଦ୍ୱାରା ଦେଶ, ଜାତି, ସମାଜ, ଗୃହ ପରିବାରର ମଙ୍ଗଳ ହେବ ।



# ସେବା ଧର୍ମ

ସେବା ଶବ୍ଦ ସେବ୍ ଧାତୁରୁ ନିଷପନ୍ନ । ସେବତେ ଇତି ସେବା । ଅର୍ଥାତ୍ ସେବା କରିବା, ଅନୁଶାସନରେ ରହିବା । ସେବା ହେଉଛି ଧର୍ମ । ସେବା କର୍ମ, ସେବା ହିଁ କର୍ମ । ଏହି ସକର୍ମକ ଧାତୁ ସେ୍ବ ଉପଭୋଗେ, ଆରାଧନେ, ଆଶ୍ରୟେ ପରିଚର୍ଯ୍ୟାଯାଞ୍ଚେ +ଅଙ୍+ଟାପ= ସେବା ଶବ୍ଦର ବ୍ୟୁତପତ୍ତି । ସେବା କରିବା ସେବାରେ ଉପସ୍ଥିତ ରହିବା, ଦେଖା ଚାହାଁ କରିବା, ପର୍ଯ୍ୟବେକ୍ଷଣ କରିବା, କିଂକର ହୋଇ ରହିବା, ସମ୍ମାନ କରିବା ଆଦର ଦେବା, ପୂଜା କରିବା, ଆଜ୍ଞା ମାନିବା, ଅନୁକରଣ କରିବା, ଅନୁସରଣ କରିବା, ପଛରେ ଚାଲିବା, ଉପଭୋଗରେ ଦେବା, ଉପଭୋଗ କରିବା, ଅନୁରାଗ କରିବା, ଅନୁଷ୍ଠାନ କରିବା, ସାହାରା ନେବା, ସାହାରା ଦେବା, ଆଶ୍ରିତ ରହିବା, ଆଶ୍ରୟ ଦେବା, ସାହଚର୍ଯ୍ୟ କରିବା, ବାରମ୍ବାର ଯିବା ଆସିବା କରିବା, ପହରାଦେବା, ରକ୍ଷଣ କରିବା, ରକ୍ଷାକରିବା, ସୁରକ୍ଷା ପାଇବା, ସାଥୀରେ ଲାଗିରହିବା ସେବା ଶବ୍ଦର ଭାବ । ସେବା କରିବା ଲୋକଙ୍କୁ ସେବକ କୁହାଯାଏ । ସେବାର ପ୍ରକ୍ରିୟାକୁ ସେବନ କହନ୍ତି ।

ଦେବ, ବିପ୍ର, ମାତା-ପିତା, ଗୁରୁ, ବୃଦ୍ଧ ପ୍ରାଜ୍ଞ, ଗୋ, ସନ୍ଥ, ଅଭାବଗ୍ରସ୍ତ ଆତୁର, ରୋଗୀ ଓ ପ୍ରକୃତି । ଏମାନଙ୍କ ମଧ୍ୟରୁ ଯେଉଁଠି, ଯେବେ, ଯେପରି ଯଥା ସଂଭବ ଯେତେ ସହଜ ସୁଲଭ ହେବ, ତାଙ୍କୁ ହିଁ ସେବା କର ।

(୧) ଦେବସେବା- ସୁକୃତି ଉତ୍ପାଦକ, ସମୃଦ୍ଧି ସୁଯଶ ସହିତ ମାନସିକ ଶାନ୍ତି ପାଇଁ ଦେବପୂଜା କରିବା ଉଚିତ୍ । ଦେବ ପୂଜାରୁ ଦିବ୍ୟତା, ଉଦାରତା, ସରଳତା, ନିଷ୍କପଟତା ଆଦି ଗୁଣ ସ୍ୱତଃ ଆସିଥାଏ । ପୂର୍ବଜନ୍ମର ପାପ ନିସ୍ତାରଣ ମଧ୍ୟ ହୋଇଯାଇଥାଏ ।

(୨) ବିପ୍ରପୂଜା- ବେଦର ବିବିଧ ଶାଖା ସହିତ ଉପନିଷଦ, ଆରଣ୍ୟକ, ପୁରାଣ, ଉପପୁରାଣ, ଇତିହାସ ସ୍ମୃତିର ଜ୍ଞାନବିଜ୍ଞାନର ଆରାଧନା କରି ଯଥା ସଂଭବ ନିଜର

ଜୀବନ ବିତାଉଥିବା ବିପ୍ରଙ୍କ ସେବା କରିବା ଦ୍ୱାରା ଅଶ୍ରୁତପୂର୍ବ ଓ ଅଦୃଷ୍ଟପୂର୍ବ ଦିବ୍ୟ ଅନୁଭୂତି ଦ୍ୱାରା ଉଦ୍‌ଘାଟିତ ହେବାର ସଂଭାବନା ନିର୍ମିତ ହୋଇଥାଏ ।

ତତ୍ତ୍ୱତଃ ଜଗତର ନାଶବାଦର ବୋଧ ହୋଇଯିବା ଦ୍ୱାରା ନିର୍ଭୟତା ଆସିଥାଏ । ଭଗବାନ୍ ଶ୍ରୀ ରାମ କହିଛନ୍ତି-

କବଚ ଅଭେଦ ବିପ୍ର ଗୁରୁପୂଜା । ଏହି ସମ ବିଜୟ ଉପାୟନଦୁଜା ।

(ରା.ଚ.ମା ୬।୮୦।୧୦)

ବିପ୍ର ଷ୍ଚା ସୌ ଗୁରୁଷ୍ଚ ଇତି ବିପ୍ରଗୁରୁଃ ଅର୍ଥାତ୍ ବେଦଜ୍ଞ ବ୍ରାହ୍ମଣ ହେଉଛନ୍ତି ଗୁରୁ । ସେହି ଗୁରୁଦେବଙ୍କର ସେବା କରି ତାଙ୍କ କୃପା ଆଶୀର୍ବାଦ ଦ୍ୱାରା ସୁରକ୍ଷିତ ହେବା ବିନା ସଂସାର ସାଗରରେ ବିଜୟଶ୍ରୀ ପ୍ରାପ୍ତି ହେବା ଦୁଷ୍କର ।

ମାତା ପିତାଙ୍କ ସେବା- ସଂସାର ସ୍ତରରେ ବିଘର କରିଲେ ତ ମାତା ପିତା ପ୍ରତ୍ୟକ୍ଷ ଦେବତା । ଆମର ଅସ୍ତିତ୍ୱ ମୂଳରେ ମାତା -ପିତା, ଆମ ନାମ ରୂପ ମୂଳରେ ମାତାପିତା ଆମ ଜାତି -କୁଳ ପରମ୍ପରାର ମୂଳରେ ମାତା -ପିତା । ତେଣୁ ଋଷି କଣ୍ଠ ବାକ୍ୟ ହେଉଛି

ତ୍ୱମେବ ମାତାଚ ପିତା ତ୍ୱମେବ

ଏହିପରି କହି ନିତ୍ୟ ସ୍ତୁତି କରିଥାନ୍ତି ।

ମାତା ପିତାଙ୍କର ଆଜ୍ଞା ପାଳନ କରିବା, ନିଃସ୍ୱାର୍ଥଭାବରେ ଭଗବତ୍ ବୁଦ୍ଧି କରି ପ୍ରାଣପଣେ ସେବା କରିବା, ନିତ୍ୟ ଦମନ କରିବା ପ୍ରାତକାଳରୁ ଉଠିବା ପରେ ତାଙ୍କ ପାଦରେ ଶିର ରଖି ପ୍ରଣାମ କରିବା ଦ୍ୱାରା ଆମ ଦୁର୍ଭାଗ୍ୟ ଲିପି ତୁଟିଯାଇଥାଏ । ମାତା ପିତାଙ୍କ ପ୍ରସନ୍ନତା ନିମିତ୍ତ ଯେ ବଂଚିଥାଏ ବସ୍ତୁତଃ ସେ ହିଁ ସୁପୁତ୍ର । ଭଗବାନ ଶ୍ରୀରାମ ନିତ୍ୟ ପ୍ରଣାମ କରୁଥିଲେ ।

ପ୍ରାତକାଳ ଉଠି କୈ ରଘୁନାଥା । ମାତୁ ପିତା ଗୁରୁ ନାବ ହିଁ ମାଥା ।

( ରା.ଚ.ମା ୧।୦୫।୦୭)

ମାତାପିତାଙ୍କ ସେବା କରିବାର ସୌଭାଗ୍ୟ ବିନା ପୂର୍ବ ପୁଣ୍ୟଫଳରେ ସଂଭବ ନୁହେଁ । ମାତାପିତା ଜେଜେମା ଜେଜେବାପା ଅନ୍ୟ କୁଳ ପୁରୁଷ ରୋଗୀ ନହେଲେ ମଧ୍ୟ ତାଙ୍କୁ ସେବା କରିବା ଅଥବା ତାଙ୍କୁ ଖୁସି କରିବା ଦ୍ୱାରା  ବାସ୍ତବରେ ଆମେ କର୍ତ୍ତବ୍ୟ ସଂପାଦନର ତୃପ୍ତି ଲାଭ କରିବା ସହ ପାରଲୌକିକ ଦୃଷ୍ଟିରୁ ପୁଣ୍ୟାର୍ଜନ ହୋଇଥାଏ ।

ମହାଭାରତର ଯୁଧିଷ୍ଠିର ଯକ୍ଷ ସଂବାଦରେ ଯକ୍ଷ ପଚାରିଥିବା ପ୍ରଶ୍ନ ଯକ୍ଷ-

କିଂସ୍ୱିଦ୍ ଗୁରୁତର ଭୂମେଃ କିଂସ୍ୱି ଦୁଚ୍ଚତରଂ ଚ ଖାତ୍ ।

କ ସ୍ୱି ଛିଘ୍ର ତରଂ ବାୟୋଃ କିସ୍ୱିଦ୍ ବହୁ ତରଂ ତୃଣାତ୍ ।

(ମହାଭାରତ ବନପର୍ବ ୩୧୩।୫୯)

ଅର୍ଥାତ୍ ଭୂମିଠାରୁ ଓଜନିଆ କିଏ ? ଆକାଶରୁ ଉଚ୍ଚା କିଏ ? ବାୟୁଠାରୁ ବେଗଗାମୀ କଣ ? (ବା କାହାର) ଘାସ ଠାରୁ ବିସ୍ତାରିତ ହେଉଥିବା ବସ୍ତୁ କଣ ?

ଯୁଧିଷ୍ଠିର- ମାତା ଗୁରତରା ଭୂମେ ଖାତ୍ ପିତୋଚ୍ଚରସ୍ତଥା

ମନଃ ଶୀଘ୍ରତରଂ ବାତା ଚିନ୍ତା ବହୁତରୀ ତୃଣାତ୍ ॥

ଅର୍ଥାତ୍ ଭୂମିଠାରୁ ବଡ ହେଉଛି ମାତା । ଆକାଶଠାରୁ ଉଚ୍ଚସ୍ଥାନ ପିତାଙ୍କର । ବାୟୁଠାରୁ ଶୀଘ୍ର ଗତି ମନର । ଘାସ ଠାରୁ ଅଧିକ ପ୍ରସାରିତ ହେବା ହେଉଛି ଚିନ୍ତା । ଶିବପୁରାଣରେ ଗଣେଶ କାର୍ତ୍ତିକେୟଙ୍କ ବ୍ରହ୍ମାଣ୍ଡ ପରିକ୍ରମା ପ୍ରତିଯୋଗିତା ଏବଂ ଗଣେଶଙ୍କର ପିତାମାତାଙ୍କୁ ପରିକ୍ରମା କରି ବିଜୟୀ ଘୋଷିତ ହେଲେ । ଏଥିରୁ ଜଣାଯାଏ ଯେ ପିତାମାତା ଏ ସଂପୂର୍ଣ୍ଣ ସୃଷ୍ଟିଠାରୁ ମଧ ଗରୀୟାନ୍ । ତାଙ୍କ ସେବା ଠାରୁ ବଡ ଅନ୍ୟ କୌଣସି ଧର୍ମ ନାହିଁ ।

ଭଗବାନ କହନ୍ତି- ଯେ ଏକବର୍ଷ, ଏକମାସ, ଏକପକ୍ଷ, ଏକ ସପ୍ତାହ ଅଥବା ଏକ ଦିନ ମଧ ମାତା ପିତାଙ୍କୁ ଭକ୍ତି କରନ୍ତି ସେ ମୋ ଧାମକୁ ପ୍ରାପ୍ତ ହୁଅନ୍ତି । (ପଦ୍ମପୁରାଣ, ସୃଷ୍ଟିଖଣ୍ଡ ୫୭।୨୦୮)

ଗୁରୁସେବା- ଶ୍ରୀ ଗୁରୁଦେବଙ୍କର ସେବା କରିବା କେବଳ ପୁସ୍ତକ ଗତ ଜ୍ଞାନ ନୁହେଁ । ଅପିତୁ ଜୀବନ ବଞ୍ଚିବାର କଳା ସହିତ ପରମାତ୍ମା ପ୍ରାପ୍ତିର ମାର୍ଗ ମଧ ପ୍ରଶସ୍ତ ହୋଇଥାଏ । ଗୁରୁଙ୍କ ସହାୟତା ବିନା ପୁସ୍ତକ ଗତ ଜ୍ଞାନ ଭବସାଗର ପାରିହେବା ପାଇଁ ସମର୍ଥ ନୁହେଁ । ଗୁରୁଙ୍କ କୃପାରୁ ବିଦ୍ୟା ଫଳବତୀ ହୋଇଥାଏ । ଏଣୁ ଗୁରୁଙ୍କ ସେବା ନିଷ୍କପଟ ଓ ନିରହଂକାର ଭାବେ କରାଯିବା ଉଚିତ୍ ।

ଗୁରୁ ପଦ ପଙ୍କଜ ସେବା ତୀସରି ଭଗତି ଅମାନ । (ରା.ଚ.ମା ୩.୩୫)

ପ୍ରାଜ୍ଞସେବା- ସଦାଚାର, ସଚ୍ଚରିତ୍ରତା, ନୀତିଯୁକ୍ତ-ବକ୍ତୃତା ତଥା ଆତ୍ମୋପନାର ଦିବ୍ୟାଲୋକର ଅଲୌକିକ ରାଗ-ଦ୍ୱେଷ ରହିତ ପ୍ରବୃଦ୍ଧ ଜନ ନିଜର କୃତି ପ୍ରକୃତି ଉପସ୍ଥିତିରେ ସମାଜକୁ ଦିଗ୍‌ଦର୍ଶନ ଦେଇଥାନ୍ତି । ତାଙ୍କ ସଂଗତିରେ ଆମକୁ ଇହକାଳରୁ

ପରକାଳ ଯାତ୍ରାର ମାର୍ଗ ଦର୍ଶନ ପ୍ରାପ୍ତ ହୋଇଥାଏ । ଅତଃ ଏହି ବିଭୂତି ମାନଙ୍କୁ ସେବା ବିନା ସ୍ୱାର୍ଥରେ କରିବା ଉଚିତ୍ ।

ଗୋ ସେବା- ଆଧିଭୌତିକ ତଥା ଆଧାତ୍ମିକ ଦ୍ୱିବିଧ ଫଳ ପ୍ରତ୍ୟକ୍ଷ ଭାବରେ ଗୋମାତା ସେବାରୁ ପ୍ରାପ୍ତ ହୋଇଥାଏ ।

ଗୋଭିଃ- ଗୋ ସେବାୟା (କୃପୟା) ବିନ୍ଦତି ଯଃ ସଃ ଗୋବିନ୍ଦଃ ।

ଅର୍ଥାତ୍ ଗୋ ସେବା ଜନ୍ୟ ଗୋ କୃପାରେ ଗୋବିନ୍ଦ ଭଗବାନ୍ ପ୍ରାପ୍ତ ହୋଇଥାନ୍ତି ।

ଗୋ ପାଳନେ ଲଭ୍ୟତେ ଯଃ ସ ଗୋପାଳଃ ।

ଗୋ ସେବା ଦ୍ୱାରା ଭଗବତ୍ ପ୍ରାପ୍ତି ସୁନିଶ୍ଚିତ । ଗୋ ସେବା ଦ୍ୱାରା ନୀରୋଗତା ପ୍ରାପ୍ତି ହୋଇଥାଏ । "ଧେନୁ ପରମ ପବିତ୍ର ଓ ପାପନାଶକାରୀ ଗୋରୁଙ୍କୁ ପରିକ୍ରମା କରିବା ଦରକାର । ସେ ସମସ୍ତଙ୍କ ପାଇଁ ବନ୍ଦନୀୟା । ଗାଭୀ ମଙ୍ଗଳର ସ୍ଥାନ, ଦିବ୍ୟ ହୋଇଥାଏ । ସ୍ୱୟଂ ବ୍ରହ୍ମା ତାଙ୍କୁ ଦିବ୍ୟ ଗୁଣରେ ବିଭୂଷିତ କରିଅଛନ୍ତି । ଯାହାର ଗୋବରରେ ବ୍ରାହ୍ମଣଙ୍କ ଗୃହାଙ୍ଗନ ଏବଂ ଦେବ ମନ୍ଦିର ମଧ ଶୁଦ୍ଧ ହୋଇଥାଏ । ଗାଈର ମୂତ୍ର, ଗୋବର, ଦୁଧ ଓ ଦହି ତଥା ଘିଅ ଏହି ପାଞ୍ଚ ବସ୍ତୁ ବଡ ପବିତ୍ର ଓ ସଂପୂର୍ଣ୍ଣ ଜଗତକୁ ପବିତ୍ର କରିଥାଏ । ମୋ ଆଗରେ ଗାଈ ରହନ୍ତୁ, ପଛରେ ଗାଈ ରହନ୍ତୁ, ଗାଈ ମୋ ହୃଦୟରେ ରହନ୍ତୁ ମୁଁ ଗାଈଙ୍କ ମଧରେ ନିବାସ କରେ ।" (ଆପସ୍ତମ୍ବ ସ୍ମୃତି, ସ୍କନ୍ଦ ପୁରାଣ ସେବାଖଣ୍ଡ ୧୩।୬୫)ରେ ।

ଗୋଷ୍ଠୁ ଅର୍ଥ ବଦ୍ଧମ୍ - ଗୋ ସେବାଦ୍ୱାରା ଆର୍ଥିକ ସମୃଦ୍ଧି ହୋଇଥାଏ । ଗୋସେବା ଦ୍ୱାରା ଆତ୍ମ ଶାନ୍ତି ପ୍ରାପ୍ତ ହୋଇଥାଏ । ଯେଉଁ ଆତ୍ମଶାନ୍ତିର ସଂଧାନରେ ଯୋଗୀ ସନ୍ଥମାନେ ନଦୀ ତଟ, ବଣ, ପର୍ବତ, ସାଗର ବେଳା ହିମାଳୟର ହିମ ପରିବେଶରେ ନିବାସ କରିଥାନ୍ତି । ଅଶାନ୍ତିକୁ ଦୂର କରି ଶାନ୍ତି କାମୀ ହୋଇଥାନ୍ତି । ତାହା ଗୋସେବାରୁ ହିଁ ପ୍ରାପ୍ତ ହୋଇଥାଏ ।

କିମଧିକମ୍- ମନରେ , ବଚନରେ କର୍ମରେ ନିଷ୍କପଟ ଭାବରେ କରାଯାଇଥିବା ଗୋସେବା ରୁ ଏତେ ମିଳିଥାଏ ଯେ ଯାହା ଅନ୍ୟତ୍ର ସଂଭବ ନୁହେଁ ।

ଅଭାବଗ୍ରସ୍ତ ବ୍ୟକ୍ତି ତଥା ରୋଗୀର ସେବା- ଶ୍ରୀମନ୍ନାରାୟଣ ବିବିଧ ନାମ ରୂପ ଧାରଣ କରି ସଂସାର ରୂପରେ ଉଦ୍‌ଭାସିତ ହୋଇଥାନ୍ତି । ସେ ଅଭାବଗ୍ରସ୍ତ ପ୍ରାଣୀଙ୍କ ରୂପରେ ସମର୍ଥ ସଂପନ୍ନ ସୁସ୍ଥ ମନୁଷ୍ୟକୁ ପରୀକ୍ଷା କରିଥାନ୍ତି କି ତା ଠାରେ ଜୀବମାତ୍ର ପ୍ରତି ଦୟା, କରୁଣା, ପ୍ରୀତିର ଭାବ ରହିଛି କି ନାହିଁ । ଯଦି ମନୁଷ୍ୟ ଠାରେ ମାନବତାକୁ

ଦ୍ୟୋତିତ କରୁଥିବା ଗୁଣ ନଦେଖନ୍ତ, ତେବେ ଭଗବାନ୍ ଆମକୁ ଅନୁତୀର୍ଣ୍ଣ ବିଘ୍ନର କରି ଅନ୍ଧକାରାଛନ୍ନ ତୀର୍ଯ୍ୟକ ଯୋନିରେ (ପଶୁ/ପକ୍ଷୀ) ପକାଇ ଦିଅନ୍ତି । ଅତଃ ଅନ୍ନ, ବସ୍ତ୍ର, ଗୃହ, ଶିକ୍ଷାଦି ଦ୍ୱାରା ଅଭାବଗ୍ରସ୍ତ ପ୍ରାଣୀଙ୍କ ସେବାକୁ ଭଗବତ୍ ସେବା ଭାବେ ମାନି କାର୍ଯ୍ୟ କରାଗଲେ ଉଭୟ ଲୋକ ସିଦ୍ଧି ପ୍ରାପ୍ତ ହୋଇଥାଏ ।

ସେହିପରି ରୋଗାର୍ତ୍ତ ବ୍ୟକ୍ତି ମଧ୍ୟ ସେବାର ପାତ୍ର । ରୋଗୀ, ଜାତି, କୁଳଶୀଳ, ଶତ୍ରୁମିତ୍ର ସମସ୍ତ ବଳୟରୁ ଉର୍ଦ୍ଧ୍ୱରେ । ଅତଃ ଯଥୋଚିତ ଔଷଧ, ପଥ୍ୟ ନିଷ୍ଠାପୂର୍ବକ ନିସ୍ୱାର୍ଥ ଭାବରେ କରାଯାଇଥିବା ରୋଗୀ ସେବା ଚିତ୍ତକୁ ଅପୂର୍ବ ଆନନ୍ଦ ଦେଇଥାଏ । ସେହି ଆନନ୍ଦ ଅନ୍ୟ କୁତ୍ରାପି ମିଳି ନପାରେ । ରୋଗୀ ବଡ ହୋଇନଥାଏ କି ଛୋଟ,ଅମୀର ନୁହେଁ କି ଗରିବ ନୁହେଁ, ବ୍ରାହ୍ମଣ ନୁହେଁ କି ଶୂଦ୍ର ନୁହେଁ, ସେ କେବଳ ରୋଗୀ ହିଁ ହୋଇଥାଏ । ସୁତରାଂ ତା ମନକୁ ଭଲ ଲାଗିଲା ଭଳି କାର୍ଯ୍ୟ କରିବା ଉଚିତ୍ ତାର ଉପକାର ପାଇଁ କାର୍ଯ୍ୟ କରିବା ମଙ୍ଗଳ ।

ପ୍ରକୃତି ସଂରକ୍ଷଣ-(ସେବା) ପ୍ରକୃତି ସେବା କହିଲେ ବୃକ୍ଷରୋପଣ କରି ଫଟୋ ଉଠାଇ ଖବର କାଗଜରେ ଛାପିବା ନୁହେଁ । ବସ୍ତୁତଃ ପ୍ରକୃତି ସେବା ହେଉଛି ଆତ୍ମସେବା ସ୍ୱର ସେବା ଆମର ନିଜର ସେବା ।

ସଚ୍ଚିଦାନନ୍ଦ ବ୍ରହ୍ମ ଲୀଳା ନିମିତ୍ତ ମୁଁ ବହୁ ନାମରୂପାତ୍ମକ ହେବି । 'ଏକୋଽହଂ ବହୁସ୍ୟାମ୍' । ସର୍ବ ପ୍ରଥମ ପ୍ରକୃତିର ସୃଷ୍ଟି ହେଲା । ଅର୍ଥାତ୍ ବ୍ରହ୍ମଙ୍କ ସର୍ବାଧିକ ସମୀପ, ସର୍ବାଧିକ ପ୍ରିୟ, ସର୍ବାଧିକ ପ୍ରଣତ କେହି ଅଛିତ, ତାହା ହେଉଛି ପ୍ରକୃତି ।

ପ୍ରଣାମ ! ଦୁଃଖ ପ୍ରଦ ରାଗଦ୍ୱେଷ ଜନ୍ୟ ଆଧି (ମାନସିକ କ୍ଳେଶ), ବ୍ୟାଧି (ଶାରୀରିକ କ୍ଳେଶ) ଦ୍ୱାରା ସମସ୍ତ ପ୍ରାଣୀ ଯେବେ ସଂସାରରୁ ବିରତ ହୋଇ ଏକାନ୍ତ ଶାନ୍ତ ପ୍ରକୃତି ମାତାଙ୍କ କୋଳକୁ ଚାଲିଯାଏ, ତେବେ ତାକୁ ଅପୂର୍ବ ଆନନ୍ଦ ମିଳିଥାଏ । ସାଧକ ସିଦ୍ଧଯୋଗୀଙ୍କ ଠାରୁ ଆରମ୍ଭ କରି ବିଷୟାସକ୍ତ ଚିତ୍ତ ବ୍ୟକ୍ତି ମଧ୍ୟ ସେଠାରେ ଶାନ୍ତି ପ୍ରାପ୍ତ କରିଥାନ୍ତି ।

ଧରନ୍ତୁ ସେହି ନିରାକାର ବ୍ରହ୍ମଙ୍କ ସତ୍ତା ପ୍ରମାଣିତ ହୋଇପାରିବ, ପରିଣାମରେ ପ୍ରକୃତିର ଉଦ୍ଭବ ହେଲା ।

ପ୍ରକୃତି କଣ( ୧ ) ପରମାତ୍ମନଃ ପ୍ରଥମା କୃତିଃ ପରମାତ୍ମାଙ୍କର ପ୍ରଥମ କୃତି ( ୨ ) ପରମାତ୍ମନଃ ପ୍ରକୃଷ୍ଟା କୃତିଃ -ପରମାତ୍ମାଙ୍କର ସର୍ବୋତ୍ତମ କୃତି (୩) ପରମାତ୍ମନଃ ପ୍ରିୟତମା କୃତିଃ- ପରମାତ୍ମାଙ୍କର ସର୍ବାଧିକ ପ୍ରିୟ କୃତି (୪) ପରମାତ୍ମନଃ ପ୍ରମାଣିତ

କୃତିଃ ପରମାତ୍ମାଙ୍କ ପରମ ପ୍ରାମାଣିକ କୃତି । ବନ, ପର୍ବତ, ନଦୀ, ସାଗର ଆଦି କୌଣସି କୌଣସି ମନୁଷ୍ୟର ରଚନା ହୋଇନପାରେ ।

(୫) ପରମାତ୍ମନଃ ପ୍ରଜାରୂପା କୃତି- ପରମାତ୍ମାଙ୍କ ପ୍ରଜାରୂପା କୃତି । (୬) ପରମାତ୍ମନଃ ପ୍ରସୂତା କୃତି- ପରମାତ୍ମା ନିଜର ଐକାନ୍ତିକ ଅଂଶରୁ ଯେବେ କିଛି, ରମଣ ଆନନ୍ଦର ଇଛା ହେଲା, ସେ ନିଜର ସଂକଳ୍ପ ଶକ୍ତି ବଳରେ ସାକାର କୃତିକୁ ପ୍ରସ୍ତୁତ କଲେ । (୭) ପରମାତ୍ମନଃ ପ୍ରଣବା କୃତିଃ ପରମାତ୍ମାଙ୍କ ନିତ୍ୟ ନୂତନ କୃତି । (୮) ପରମାତ୍ମନଃ ପ୍ରଣତା କୃତିଃ- ପରମାତ୍ମାଙ୍କ ଏହି କୃତି ଯାହା ସର୍ବଦା ତାଙ୍କ ସେବାରେ ନତ ରହିଥାଏ ।

ବନ ପର୍ବତ ସରିତା ନଭସାଗର ସୂରଜ ଚାଁଦ ସିତାରେ ।

ଲଗେ ପୂଜନେ ମେଁ ପ୍ରଭୁ ତୁମକୋ,ଜୟତି ଜୟତି ଉଚ୍ଚାରେ ॥

(୯) ବ୍ରହ୍ମଣଃ ପ୍ରୟୋଜନ ବତୀ କୃତି- ପରମାତ୍ମାଙ୍କ ଏହି କୃତି ଯାହାର ବିଶେଷ ପ୍ରୟୋଜନ ରହିଅଛି ଯେ ଯେବେ ଜଡ ଜଂଗମାତ୍ମକ ଜଗତ୍ ଜଂଜାଳରେ ଜନ୍ମମରଣ ଜନିତ ଝଞ୍ଜାରେ ବ୍ୟତିବ୍ୟସ୍ତ ସେହି ଜର୍ଜରିତ ଜୀବ ମୋତେ ଖୋଜିବାକୁ ଚାହିଁବେ । ତେବେ ପ୍ରକୃତି ହିଁ ତାର ଆଶ୍ରୟ ସ୍ଥଳ ହେବ । ଏହି ପ୍ରୟୋଜନ ପାଇଁ ପ୍ରକୃତିର ସୃଷ୍ଟି ।

(୧୦) ପରମାତ୍ମନଃ ପ୍ରକୃତିଃ ସ୍ୱଭାବ ଏବ ପ୍ରକୃତି- ପ୍ରକୃତିର ନିର୍ମଳତା ବ୍ରହ୍ମ ନିର୍ମଳତାର ସଂକେତ ବହନ କରେ । ଫଳର ମଧୁରତାରୁ ବୃକ୍ଷର ମହତ୍ତା ବୋଧ ହୋଇଥାଏ । କେଉଁ ବୃକ୍ଷ ଭଲ ଅବା ମନ୍ଦ । ଏହି କଥା କେବଳ ଫଳ, ପୁଷ୍ପ ସୂଚାଇ ଥାନ୍ତି । ନଦୀ ମାନଙ୍କର ଉଦ୍‌ଗମ ସ୍ଥଳରୁ ଏହାର ପବିତ୍ରତା ଜଣା ଯାଇଥାଏ । ଏହାଦ୍ୱାରା ବ୍ରହ୍ମଙ୍କର ନିର୍ମଳତା ଜଣାଯାଇଥାଏ । ମନୁଷ୍ୟର କୁସଂଗ ପରି ପ୍ରକୃତିରେ ପ୍ରଦୂଷଣ ହୋଇଥାଏ ।

ପ୍ରକୃତିର ସେବା ଆପଣାର ସେବା । ଆମେ ସମସ୍ତଙ୍କୁ ସୁସ୍ଥ, ସୁଖମୟ, ଶାନ୍ତିମୟ ସମୃଦ୍ଧିମୟ, ଆନନ୍ଦମୟ ଜୀବନ ନିମିତ୍ତ ବିଶୁଦ୍ଧ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧର ପରମ ଆବଶ୍ୟକତା ରହିଛି । ଅର୍ଥାତ୍ ଆକାଶ, ବାୟୁ, ଅଗ୍ନି, ଜଳ, ପୃଥ୍ୱୀ, ପ୍ରଦୂଷଣ ସହିତ ଅଧିକନ୍ତୁ ପଶୁ, ପକ୍ଷୀ ମତ୍ସ୍ୟ ଆଦି ବୃକ୍ଷଲତା ପାଇଁ ମଧ ଘାତକ ହୋଇଥାଏ । ମନୁଷ୍ୟ ସ୍ୱାର୍ଥବଶ ପ୍ରଗତିର ଅଂଧ ଦୌଡରେ ପ୍ରକୃତିର ପ୍ରଭୂତ କ୍ଷତିସାଧନ କରିଥାଏ । ଯାହାର ଦୁଷ୍ପରିଣାମ ସମଗ୍ର ସଂସାର ଭୋଗ କରୁଅଛି ।

ଆମେ ସ୍ୱୟଂସଜାଗ ହୋଇ ସମାଜକୁ ଜାଗ୍ରତ କରିବା ଉଚିତ । ଯଦ୍ୱାରା ବୃକ୍ଷ, ବନ, ପର୍ବତ ମୂଳ ରୂପେ ସୁରକ୍ଷିତ ରହିବ । ନଦୀ, କୂପ, ତଡାଗ ନଷ୍ଟ ହେବାରୁ

ବଞ୍ଚିଯିବ । ଆମ ପ୍ରଗତିର ଆଧାର ପ୍ରକୃତିର କ୍ଷତି ନକରି ହୋଇପାରିବ । ସରକାରଙ୍କର ଏହା ପ୍ରାଥମିକ ଗୁରୁତ୍ୱ ଦେବାଦ୍ୱାରା ମାନବର ବିଶେଷ କଲ୍ୟାଣ ହେବ । ଭାଗବତ ମହାପୁରାଣରେ ଉଲ୍ଲେଖ ରହିଛି, ପ୍ରକୃତିରେ ଯାହା କିଛି ରହିଛି ସେ ସକଳ ବିରାଟ ପୁରୁଷଙ୍କର ବିରାଟ ସତ୍ତାର ଅଙ୍ଗ ଏବଂ ଉପାଙ୍ଗ ।

ପାତାଳ ମେ ତସ୍ୟ ହି ପାଦ ମୂଳମ୍ । ପାତାଳ ଲୋକ ସେହି ବିରାଟ ପୁରୁଷଙ୍କର ପାଦତଳ ।

ମହୀତଳଂ ତଜ୍ଜଘନମ୍ -ପୃଥିବୀ ତାଙ୍କ ଜଂଘଭାଗ ।

ନଭସ୍ତଳଂ ନାଭି ସରଃ -ନଭ ତାଙ୍କ ନାଭି ପ୍ରଦେଶ । ପୁରୁଷ ସୂକ୍ତରେ ମଧ୍ୟ କୁହାଯାଇଛି ନାଭ୍ୟା ଆସୀତ୍ ଅନ୍ତରୀକ୍ଷମ୍ । ନାଭିରୁ ଅନ୍ତରୀକ୍ଷ ଉପଲକ୍ଷିତ ନଭ ହିଁ କୁହାଯାଇଛି ।

ମୁଖାଦଗ୍ନି ରଜାୟତ- ଅଗ୍ନିର ଉତ୍ପତ୍ତି ମୁଖରୁ ହୋଇଅଛି ।

କୁକ୍ଷୀଃ ସମୁଦ୍ରାଃ- ସାଗର ତାଙ୍କ ଉଦର ।

ନଦ୍ୟୋଽସ୍ୟ ନାଡ୍ୟ- ନଦୀ ଗୁଡ଼ିକ ତାଙ୍କ ନାଡୀତନ୍ତ୍ର ।

ତନୋ ରୁହାଣି ମହୀରୁହାଃ- ବିବିଧ ରୋମ ବୃକ୍ଷ ଜାତି ତାଙ୍କ ଲୋମ ।

ଆଜିର ବିକାଶ ବାଦୀ ପ୍ରତିଯୋଗିତା ମୂଳକ ଦୌଡ଼ରେ ସର୍ବାଧିକ କ୍ଷତି ବୃକ୍ଷ ନଦୀ, ପର୍ବତ ମାନଙ୍କର ହୋଇଅଛି ।

ପିଣ୍ଡ ତଥା ବ୍ରହ୍ମାଣ୍ଡର ଏକତା ଅନୁଭବ କରିବା ହେତୁ ପ୍ରକୃତିରେ ଯେଉଁ ବିଷମତା ତଥା ବିପର୍ଯ୍ୟୟ ଉପସ୍ଥିତ ହେଲାଣି ଏହାର ପ୍ରଭାବରେ ଜଳବାୟୁର ପରିବର୍ତ୍ତନ, ଋତୁଚକ୍ରର ଅନିୟମିତତାର ପ୍ରଭାବରେ ଉଭବ, ପଶୁପକ୍ଷୀ ତଥା ମାନବ ସମାଜ ପୃଥିବୀ ପୃଷ୍ଠରୁ ବିନାଶ ହେବାର ସଂଭାବନା ଅମୂଳକ ହେବ ନାହିଁ । ବୃଷ୍ଟିପାତର ସ୍ୱଳ୍ପତା ଏବଂ ଅପରପକ୍ଷେ ଉତ୍ତାପ ବୃଦ୍ଧିର ପୂର୍ବ ସୂଚନାକୁ ଅମୂଳକ କହି ଏଡାଇ ଦେଇ ହେବ ନାହିଁ ।

ଓଡ଼ିଶାର ସଂଖ୍ୟାଧିକ ନଦୀ ବର୍ଷା ଦିନକୁ ବାଦ ଦେଲେ ଆଠମାସ ଶୁଖିଲା ବାଲୁକାମୟ ମରୁଭୂମି ତୁଲ୍ୟ ହୋଇ ପଡ଼ିରହୁଛି । ଏହା ସହିତ ସ୍ୱାର୍ଥପର ଅର୍ଥଲୋଭୀ ମାନେ ବିଭିନ୍ନ ଆଳରେ ବୃକ୍ଷ ଛେଦନ କରି ନିଜର ପୁଂଜି ବୃଦ୍ଧି କରିବାରେ ଲାଗିଛନ୍ତି । ପୈଶାଚିକ ପ୍ରକୃତିର କିଛି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ସବୁଜ ବନାନୀରେ ଅଗ୍ନି ସଂଯୋଗ କରି

ବୃକ୍ଷ ଲତା ସହିତ ବନ୍ୟ ପଶୁ ପକ୍ଷୀମାନଙ୍କୁ ବିନାଶ କରିବାର କୁପ୍ରକ୍ରିୟା ଅବ୍ୟାହତ ରଖି ମାନବ ସମାଜର ପ୍ରଭୂତ କ୍ଷତି ସାଧନ କରୁଅଛନ୍ତି । କୁହାଯାଇଛି ଧର୍ମୋ ରକ୍ଷତି ରକ୍ଷିତଃ ସେହି ନ୍ୟାୟରେ କୁହାଯାଇପାରେ ପ୍ରକୃତିଃ ରକ୍ଷତି ରକ୍ଷିତାଃ । ବୃକ୍ଷୋ ରକ୍ଷତି ରକ୍ଷିତଃ, ନଦ୍ୟଃ ରକ୍ଷନ୍ତି ରକ୍ଷିତାଃ, ପର୍ବତୋ ରକ୍ଷନ୍ତି ରକ୍ଷିତାଃ ଆମଦ୍ୱାରା ସୁରକ୍ଷିତ ପ୍ରକୃତି (ବନ, ବୃକ୍ଷ, ପର୍ବତ, ନଦୀ) ଆମର ରକ୍ଷା କରିବେ, ଆସନ୍ତୁ ଆମ ଜୀବନର ରକ୍ଷା ନିମିତ୍ତ, ଅନାଗତ ବଂଶଧର ମାନଙ୍କ ନିମିତ୍ତ ସୁଖମୟ ସୁରକ୍ଷିତ ବାତାବରଣ ଦେବାପାଇଁ ପ୍ରକୃତି ମାତାର ସେବାରେ ଜୀବନକୁ ଅର୍ପଣ କରିବା । ସତ୍ତା ସମର୍ପଣ ତେବେ ହୋଇପାରିବ, ଯେବେ ଆପଣଙ୍କ ମନରେ ସେବ୍ୟ ପ୍ରତି ଅତୁଟ ଶ୍ରଦ୍ଧା ରହିବ । ସେହି ଶ୍ରଦ୍ଧା ପରିପକ୍ୱ ହୋଇ ବିଶ୍ୱାସରେ ପରିଣତ ହେବ । ବିଶ୍ୱାସ ନିର୍ଭର କରେ ଆପଣଙ୍କ ଜନ୍ମାନ୍ତର ସଂସ୍କାର ଉପରେ । କୁଳ ପରମ୍ପରା ଉପରେ, ପାରିବାରିକ ବାତାବରଣ ଉପରେ, ପରିବେଶ ଉପର ସନ୍ଥ କୃପା ଉପରେ । ଏ ସକଳ ମୂଳରେ ଈଶ୍ୱରୀୟ କୃପା । ଭଗବାନଙ୍କ କୃପା ପ୍ରାପ୍ତ କରିବା ନିମିତ୍ତ ଶାସ୍ତ୍ରାନୁମୋଦିତ ଜୀବନଯାତ୍ରା ସମାହିତ କରି ସ୍ୱୟଂକୁ ପାତ୍ରତାରେ ଯୋଗ୍ୟ କରିବା । ଯଦ୍ୟପି ସେବା ଧର୍ମ କଠୋର ସେବାଧର୍ମ ପରମ ଗହନ -ସେବାଧର୍ମଃ ପରମ ଗହନୋ ଯୋଗୀନାମପ୍ୟଗମ୍ୟ । ତେବେ ବି ତନୁ, ମନକୁ ଶୁଦ୍ଧ କରିବା ପାଇଁ ସେବାଠାରୁ ବଳି ଅନ୍ୟ କୌଣସି ସହଜ ମାର୍ଗ ନାହିଁ । ଶୁଦ୍ଧ ମନରେ ଭଗବତ୍ କୃପାସୁଲଭ ହୋଇଥାଏ ।ଅନ୍ୟକୁ କହିବା ଦ୍ୱାରା, ସଭାରେ ଭାଷଣ ଦେବାଦ୍ୱାରା କିମ୍ବା କିଛି ଲେଖିଦେବା ଦ୍ୱାରା ଏହା ସମ୍ଭବ ନୁହେଁ । ବିଶେଷ ଲକ୍ଷ୍ୟଣୀୟ ଯେ ସେବା ପୂର୍ବରୁ ସେବା କରିବା ସମୟରେ ଅଥବା ପରେ କୌଣସି ସ୍ୱାର୍ଥ ବା ଅହଂକାର ଯେପରି ସ୍ଥାନ ନପାଏ । ସେବ୍ୟଙ୍କ ପ୍ରସନ୍ନତା ହିଁ ମୋର ଜୀବନର ଲକ୍ଷ୍ୟ ହେଉ । ଏହା ହିଁ ଭଗବତ୍ କୃପା ।

ସ୍ୱସ୍ତି ମାତ୍ର ଉତ ପିତ୍ରେ ନୋ ଅସ୍ତୁ
ସ୍ୱସ୍ତି ଗୋଭ୍ୟୋ ଜଗତେ ପୁରୁଷେଭ୍ୟଃ ।
ବିଶ୍ୱଂ ସୁଭୂତଂ ସୁବିଦତ୍ରଂ ନୋ
ଅସ୍ତଜ୍ୟୋଗେବ ଦୃଶେମ ସୂର୍ଯ୍ୟମ୍ । (ଅଥର୍ବ ୧।୩୧।୪)

ଆମ ମାତା ପିତାଙ୍କର କଲ୍ୟାଣ ହେଉ । ଧେନୁ, ସଂପୂର୍ଣ୍ଣ ସଂସ୍କାର ଓ ସମସ୍ତ ସୁଦୃଢ ପରା ଶୁଭଜ୍ଞାନରେ ଯୁକ୍ତ ହେଉ । ତଥା ଚିରନ୍ତନ କାଳ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କୁ ଦେଖୁଥାଉଁ ।



# ପରିଣତ ବୟସରେ ଶାନ୍ତି ଓ ସନ୍ତୋଷ ପ୍ରାପ୍ତି

ଜୀବନରେ ବାଲ୍ୟ, କୈଶୋର, ଯୌବନ, ପୌଢ ପରେ ବାର୍ଦ୍ଧକ୍ୟ ଆସି ଉପଗତ ହୋଇଥାଏ । ଏହା ଏକ ସ୍ୱାଭାବିକ ଓ ଜୈବିକ ପ୍ରକ୍ରିୟା । ଅପମୃତ୍ୟୁ ବ୍ୟତୀତ ସମସ୍ତଙ୍କୁ ଏହି ସ୍ତର ବା ସୋପାନ ଅତିକ୍ରମ କରିବାକୁ ହିଁ ହୋଇଥାଏ । ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବତ୍ ଗୀତାରେ 'ଦେହେ ନସ୍ମିନ୍ ଯଥା ଦେହେ କୌମାରଂ ଯୌବନ ଜରା' ବୋଲି କହି ଏଥିପ୍ରତି ଶୋଚନା ନକରିବାକୁ ସୂଚାଇଛନ୍ତି ।

ସରକାରୀ, ବେସରକାରୀ, କମ୍ପାନୀ ଆଦି କ୍ଷେତ୍ରରେ କର୍ମରତ ବ୍ୟକ୍ତିମାନେ ଏକ ନିର୍ଦ୍ଦିଷ୍ଟ ବୟସ ହେବାପରେ ଅବସର ନେବାର ନିୟମ ରହିଛି । ଶରୀର ବଡ ବିଚିତ୍ର ଯନ୍ତ୍ର, ହୁଏତ କେହି ସେହି ବୟସରେ ପହଞ୍ଚିବା ପୂର୍ବରୁ ଶାରୀରିକ ଓ ମାନସିକ କ୍ଷେତ୍ରରେ ଦୁର୍ବଳ ହୋଇ ଯାଆନ୍ତି । ଏହାର ବହୁବିଧ କାରଣ ରହିଛି ଶରୀର ସୁଦର୍ଶନ, ସୁସ୍ଥ ଦେଖାଯାଉଥିଲେ ମଧ୍ୟ ନାନା ପ୍ରକାର ଜଟିଳ ବ୍ୟାଧିର ଶିକାର ହୋଇଥାଇପାରନ୍ତି । ନତୁବା ଶରୀର ରୁଗ୍ଣ ଦେଖାଯାଉଛି ଏବଂ ସେ ମନରେ ମଧ୍ୟ ଭାଙ୍ଗି ପଡିଛନ୍ତି । କେହିବା ସୁସ୍ଥ ଶରୀରରେ ମନରେ ଦୃଢ ଅଛନ୍ତି ଅନ୍ୟ କେହି ମନରେ ସବଳ ଅଥଚ ଶରୀର ଶକ୍ତିହୀନ ହୋଇଯାଇଛି ।

ଦୃଶ୍ୟମାନ ସମଗ୍ର ଜଗତ (ଅଦୃଶ୍ୟମାନ ମଧ୍ୟ) ପ୍ରତିକ୍ଷଣରେ ବଦଳିଯାଉଛି ଯାହା ଆମ ଆଖିକୁ ଧରା ଦେଉନାହିଁ । ଜୀବନ କାଳରେ ମାନବ ଜୀବନର ମହତ୍ତ୍ୱକୁ ବସ୍ତୁତଃ ବୁଝନ୍ତି କେତେ ଜଣ ? କାମ, କ୍ରୋଧ, ଲୋଭ ମୋହ ଲୋକ ବାସନା, ଶାସ୍ତ୍ରବାସନା ଏବଂ ଦେହ ବାସନାରୁ ମୁକ୍ତ ହେବା ପାଇଁ କେତେ ଚିନ୍ତା କରନ୍ତି ତଥାକଥିତ ଶିକ୍ଷିତ ମାନେ ? ଦେହରେ ବହୁମୂଲ୍ୟ ପୋଷାକ, ଉତ୍ତୁଙ୍ଗ ପ୍ରାସାଦରେ ନିବାସ, ଦାମୀଯାନ, ଏସକଳ ପ୍ରାଚୁର୍ଯ୍ୟ ସତ୍ତ୍ୱେ ମନ ସେହି ଲୋଭ ମୋହ ଜାଲରେ ଛନ୍ଦି ହୋଇ ଛଟପଟ ହେଉଛି । କୌଣସି ମତେ ତହିଁରୁ ମୁକୁଳିପାରୁ ନାହିଁ, ମୁକୁଳିବାର ପ୍ରୟାସ ମଧ୍ୟ ହେଉଥିବାର ଦେଖାଯାଉନାହିଁ ।

ଯେଉଁ ପାଠ ଗୁଡାକ ପଢି ବିଶ୍ୱବିଦ୍ୟାଳୟ ଉପାଧି ମାନସେପ୍ରାପ୍ତ ହୋଇଛି, ତହିଁରେ ଏଥିରୁ ମୁକ୍ତ ହେବାର ଉପାୟ କୁତ୍ରାପି ନାହିଁ । ଅପରପକ୍ଷେ ସେ ସମସ୍ତ ମନ ମଧ୍ୟରେ ପ୍ରଚଣ୍ଡ ଅଂହକାରକୁ ସ୍ଥାପିତ କରି ଉପସ୍ଥିତ ସଂପଦ ପଦ, ପଦବୀ, ଦରମା ଉପୁରି ଇତ୍ୟାଦିର ସେବନରେ ତାକୁ ପରିପୁଷ୍ଟ କରି ଆପଣାକୁ ଏକ ସ୍ୱତନ୍ତ୍ର ବର୍ଗର ଏଲିଟ୍ କ୍ଲାସ ବୋଲି ଧରିବସିଛି । ଏହା ଯେ ମୂଳରୁ ଏକ ଉକ୍ରଟ ଭ୍ରମ ଏଥିରେ ସନ୍ଦେହ କାହିଁ ? କିନ୍ତୁ ଏହି ତତ୍ତ୍ୱଟିକୁ କେହି ସୁଝଉନାହାନ୍ତି କିମ୍ବା ଖୁବ୍ କମ୍ କ୍ଷେତ୍ରରେ ଚର୍ଚ୍ଚା ହେଉଛି ଯାହା ଶୁଣିଲେ ମଧ୍ୟ ତାହା ଉପର ମନରେ ରହି ସମୟାନ୍ତରେ ଭାସିଯାଉଛି । ମନର ଗଭୀର ସ୍ତରକୁ ଯାଇ ପ୍ରଭାବିତ କରିପାରୁନାହିଁ । ବ୍ୟକ୍ତିର ପୂର୍ବ ଗଠିତ ବ୍ୟକ୍ତିତ୍ୱକୁ ପରିବର୍ତ୍ତିତ କରିବାକୁ ସକ୍ଷମ ହୋଇପାରୁନାହିଁ । ମନୋଭୂମି ପ୍ରସ୍ତୁତ ହୋଇନଥିଲେ ଯେତେ ଉନ୍ନତ ଉତ୍କୃଷ୍ଟ ବିହନ ମଧ୍ୟ ଅଂକୁରୋଦଗମ୍ ହେବାର ସଂଭାବନା ନାହିଁ । ତେଣୁ ପ୍ରଥମେ ମନକୁ କର୍ଷଣ କରି ଅନୁକୂଳ ଅବସ୍ଥାକୁ ଆସିଲେ ପୂର୍ବରୁ ବାରମ୍ବାର ଶୁଣିଥିବା କଥା ମଧ୍ୟ ନୂତନ ବୋଧ ହେବ ଏବଂ ତାହା ମନର ମର୍ମ ସ୍ଥଳରେ ପ୍ରବେଶ କରି ସଂପୂର୍ଣ୍ଣ ବ୍ୟକ୍ତିତ୍ୱକୁ ପରିବର୍ତ୍ତନ କରି ଦେଇପାରିବ । ଏଇ କଥାଟିକୁ ଶ୍ରୀମଦ୍ ଭଗବତ୍ ଗୀତାରେ ଅଭ୍ୟାସ ଏବଂ ବୈରାଗ୍ୟ ବୋଲି ସୂଚିତ ହୋଇଛି ।

କୌଣସି ମିଶିଯାଇଥିବା ଦୃଶ୍ୟ ବସ୍ତୁରୁ ଅନାବଶ୍ୟକକୁ ବାଦ୍ କରିଦେଲେ ସେହି ପ୍ରକାର ଶୁଦ୍ଧ ବସ୍ତୁ ଅବଶେଷରେ ମିଳିଥାଏ । ସେହିପରି ଅଶୁଦ୍ଧ ମନରେ କେଉଁ ଅନାବଶ୍ୟକ ମିଶ୍ରିତ ତତ୍ତ୍ୱ ମିଶିଛି, ରହିଛି ତାହାକୁ ପ୍ରଥମେ ଜାଣିବା ଦରକାର । ତାପରେ ତାର ଶୋଧନ କରାଯିବାର ଉପାୟ ଗ୍ରହଣୀୟ । ପୁନଶ୍ଚ ଦୈବୀ ସଦ୍‌ଗୁଣକୁ ସ୍ଥାପିତ କରାଯିବାର ପ୍ରୟାସ ବାଞ୍ଛନୀୟ ।

ମନ ଯେତେ ଆବିଳ ହେବ, ସେହି ପରିମାଣରେ ଅସ୍ଥିର ହେବ ଏବଂ ତାର ପରିଣତିରେ ଆମେ ଅସ୍ତବ୍ୟସ୍ତ ହୋଇ ଶାନ୍ତି ସନ୍ତୋଷରୁ ଦୂରକୁ ଚାଲିଯିବ । ସକଳ ସାଂସାରିକ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଆମେ ଦୁଃଖୀଟିଏ ହୋଇ ରହିଯିବା । ତେବେ ଏ ସଂପର୍କରେ କେତେଗୋଟି ବିଧାନ ଆଲୋଚନା କରାଯାଉଛି ।

ଶୈଶବ, କୈଶୋର, ଯୌବନ ତଥା ପୌଢର ସଂଚିତ ଅନୁଭୂତି, ଅନୁଭବ, ଦୁଃଖ, ବିଷାଦ ଭଲ ମନ୍ଦ ଅଭ୍ୟାସ, ପାରିବାରିକ, ସାମାଜିକ, ବୃତ୍ତିଗତ କ୍ଷେତ୍ରରେ ହୋଇଥିବା ଓ ହେଉଥିବା ସୁଦୀର୍ଘ ଅନୁଭୂତିରେ ଅବରୁଦ୍ଧ ଭାରାକ୍ରାନ୍ତ ହୋଇ ଯାଇଛି ମନ । ତେଣୁ ଈଶ୍ୱରାଭିମୁଖୀ ହେବାକୁ, ସ୍ଥିର ହେବାକୁ, ଏକାଗ୍ର ହେବାକୁ, ଅବିଚଳ ହେବାକୁ ସକ୍ଷମ ହୋଇପାରୁନାହିଁ । ସେଥିପାଇଁ ପ୍ରୟାସୀ ହେଲା ମାତ୍ରେ ମନ କୁଆଡେ

ନା କୁଆଡେ ଦୌଡି ଯାଉଛି । ସେ ଦିଗରୁ ଦୀର୍ଘଦିନ ତଳେ ଘଟି ଯାଇଥିବା ଛୋଟ ଛୋଟ ଘଟଣା, କୌତୁକ, ସ୍ୱଳ୍ପ ସମୟ ନିମିତ୍ତ କାହା ସହ ସାକ୍ଷାତ ପ୍ରଭୃତି ତହିଁରୁ ବାଦ୍ ପଡୁନାହିଁ । ବଂଧୁ ପରିଜନଙ୍କ ପ୍ରସଙ୍ଗ ତ ଅତି ସାଧାରଣ କଥା । ଅଶାନ୍ତ, ବିକ୍ଷୁବଧ୍ ଆନ୍ଦୋଳିତ ମନର କ୍ରିୟାକୁ ଲକ୍ଷ୍ୟ କରନ୍ତୁ । ସଦା ବହିର୍ମୁଖୀ ମନର ଗତିକୁ ଦେଖି ନିଅନ୍ତୁ । ସଂସାରର ନିୟତ ଯାତ୍ରାକୁ ଦ୍ରଷ୍ଟା, ସାକ୍ଷୀ ଭାବନେଇ ଦେଖନ୍ତୁ । ତଟସ୍ଥ ବୃତ୍ତି ନେଇ ପ୍ରବହମାନ ଜଳସ୍ରୋତକୁ ଦେଖିଲା ପରି ପରିବାରକୁ , ପରିଜନଙ୍କୁ ତଥା ସମାଜକୁ ଲକ୍ଷ୍ୟ କରନ୍ତୁ । ନିଜେ ସ୍ଥିର ହୋଇ ଘଟିଯାଉଥିବା, ପ୍ରବାହିତ ହୋଇଯାଉଥିବା ସଦା ବେଗଗାମୀ ଗତିଶୀଳ ଚତୁର୍ପାର୍ଶ୍ୱକୁ ଲକ୍ଷ୍ୟ କରନ୍ତୁ । 'ଗଲେଣି ତୋ ସଂଗତୁ ଯେତେକ ଜନ' କଥାର ମାର୍ମିକ ବିଚାର କରନ୍ତୁ । ବିଗତ ଦିନ ମାନଙ୍କରେ କରିଥିବା ଭଲ-ମନ୍ଦ, ନିନ୍ଦ୍ୟ- ପ୍ରଶଂସା କଲ୍ୟାଣ ଅକଲ୍ୟାଣ ଇତ୍ୟାଦି କାର୍ଯ୍ୟମାନ ମନ ମଧ୍ୟରେ ଉଙ୍କି ମାରୁଛି । ସେ ଆତ୍ମପ୍ରଶଂସା ଆତ୍ମସନ୍ତୋଷ ଅଥବା ଆତ୍ମ ପ୍ରଚାର ଉଦ୍ଦେଶ୍ୟରେ ଅନ୍ୟ ଠାରେ ପ୍ରକାଶ କରିଥାଏ ।

ସଂସାର ପରିବର୍ତ୍ତନଶୀଳ ପ୍ରତିମୁହୂର୍ତ୍ତରେ ଆମ ଜ୍ଞାନଗୋଚରରେ ଧରି ହେଉନଥିବା ଦୃଶ୍ୟ ଅଦୃଶ୍ୟ ଜଗତ ବଦଳି ବଦଳି ଯାଉଛି । ଆମେ ପୂର୍ବ ସ୍ଥିତିରୁ ଅବ୍ୟାହତି ନେଇଥିଲେ ମଧ୍ୟ ମନ ସିଂହାସନରୁ ତାକୁ ସମୂଳେ ଓପାଡି ଫୋପାଡି ଦେଇପାରିନାହୁଁ । ସେଇଥିପାଇଁ ତ ଭୂତପୂର୍ବ ଲଗାଇ ତାପରେ ଆମ ନାଁକୁ କହୁଥାଉଁ । କିଛି ନହେଲେ ତାହାଦ୍ୱାରା ଯେଉଁ ଭ୍ରମାତ୍ମକ ସାନ୍ତ୍ୱନା ମିଳୁଛି ଅନ୍ତତଃ ତାହିଁ ମିଳୁଥାଉ । ସେତିକିରେ ମନ ବୁଝିଯାଉ ଯେ ମୁଁ ସାଧାରଣସ୍ତରର ନୁହେଁ, ସେମାନଙ୍କଠାରୁ କିଛି ପାହାଚ ଉପରର ମଣିଷ । ଏହି ରିକ୍ତ ଅଭିମାନ ପାଇଁ ସେ ଅନେକ ସମୟରେ ପରୋକ୍ଷ ପୀଡା ପାଉଛି । ଅପରପକ୍ଷେ ସାଧାରଣ ଆନନ୍ଦ ବା ସଂତୋଷ ମଧ୍ୟ ତାକୁ ଅପ୍ରାପ୍ୟ ହେଉଛି । ଫଳତଃ ପରିଣାମରେ ଦୁଃଖକୁ ଅସଂତୋଷକୁ ଅପୂର୍ଣ୍ଣତାକୁ ଗଣ୍ଠିଲି କରି ବୋହିଚାଲିଛି ଅବଶିଷ୍ଟ ଜୀବନ । ସୁତରାଂ ଶରୀର ଶକ୍ତିହୀନ ଓ ବ୍ୟାଧିଗ୍ରସ୍ତ ହେବା ସହିତ ରୁଗ୍ଣ ମନ ନେଇ, ଭାରାକ୍ରାନ୍ତ ହୋଇ କୌଣସି ମତେ ଚାଲିବାକୁ ହେଉଛି । ପରିବର୍ତ୍ତନ ନହେବାର ପ୍ରମୁଖ କେତୋଟି କାରଣ ରହିଛି ।

(୧) ଏହି ଅଭିମାନ ଧରି ବସିଅଛୁ କି ମୋଠାରେ କିଛି ହେଲେ ଦୋଷ ନାହିଁ କିମ୍ବା ଆମର ଦୋଷ ହିଁ ଆମର ଗୁଣ, ଆମର ବିଶେଷତା, ଆମର ପର୍ସନାଲିଟି ।

(୨) ଏହି ଅଭିମାନ ଧରି ରହୁଛୁ ଯେ ଆମର କୌଣସି ପରିବର୍ତ୍ତନ ହୋଇନପାରେ ।

(୩) ବାସ୍ତବ ପକ୍ଷେ ଆମେ ନିଜେ ପରିବର୍ତ୍ତିତ ହେବାପାଇଁ ପ୍ରଯତ୍ନଶୀଳ ହୋଇନାହୁଁ ।

(୪) ସ୍ୱୟଂ ପରିବର୍ତ୍ତିତ ହୋଇଗଲେ ଅବଶିଷ୍ଟ ଜୀବନ କିଛି ସୁଖମୟ ହୋଇପାରନ୍ତା ।

(୫) ପ୍ରବୀଣ, ଅଭିଜ୍ଞତା, ବିଚାର, କର୍ମ କୁଶଳତା, ସମାଜ କଲ୍ୟାଣରେ ବିନିଯୋଗ ହୋଇପାରିଲେ ତହିଁରେ ସଂପୃକ୍ତ ହୋଇଥିବା ସ୍ୱୟଂ ଆପଣ ଅଶେଷ ସନ୍ତୋଷ ପ୍ରାପ୍ତ କରିପାରନ୍ତେ । ଫଳରେ ଯାତ୍ରା ପଥ ସରସ ଓ ସୁଗମ ହୋଇପାରିବ ।

ଧରନ୍ତୁ ଆପଣ ଘରେ କିମ୍ବା ଅଫିସର ପ୍ରମୁଖ ଦାୟିତ୍ୱ ତୁଲାଉଛନ୍ତି । ସୁତରାଂ ଆପଣଙ୍କୁ ସର୍ବଦା ଗମ୍ଭୀର, କୁଷୁଣ୍ଡା ମୁହାଁ, ସ୍ୱଳ୍ପଭାଷୀ ହେବାକୁ ହେବ ହିଁ ହେବ । କିନ୍ତୁ ଆପଣଙ୍କ ସ୍ୱଭାବତଃ ତାହା ନୁହେଁ । ହାସ୍ୟ ମୁଖ ଦେଖିବାକୁ ବା ନିଜେ ଉତ୍‌ଫୁଲ୍ଲ ରହିବାକୁ ନ ଚାହେଁ କିଏ ? କିନ୍ତୁ ମୋତେ ତ ପଦବୀର ମର୍ଯ୍ୟାଦା ରକ୍ଷା କରିବାକୁ ହେବ । ତେଣୁ ମନ ଯେଉଁ ସ୍ଥିତିରେ ଥାଉ ବାହାରେ କଠୋରତାର ଅଭିନୟ କରିବାକୁ ହୋଇଥାଏ । ସେହି ଅଭ୍ୟାସ ଅବସର ସମୟରେ ମଧ୍ୟ ଗ୍ରାସ କରିଯାଏ । ସେତେବେଳକୁ (ସାଧାରଣତଃ) ଅଫିସ ନଥାଏ, ଦାୟିତ୍ୱ ନଥାଏ, ଗାମ୍ଭୀର୍ଯ୍ୟର ପ୍ରୟୋଜନ ନଥାଏ କିନ୍ତୁ ରିକ୍ତ ଅଭିମାନ ମନ ଉପରେ ସବାର ହୋଇ ସ୍ୱାଭାବିକତା, ସରସତା, ସ୍ୱଚ୍ଛନ୍ଦତାକୁ ନଷ୍ଟ କରି ମାନସିକ ଜ୍ୱଳା ଦେଇଚାଲିଥାଏ ।

କ୍ଷେତ୍ରକ୍ଷେତ୍ରଜ୍ଞ ବିଚାର ମନରେ ଆଣନ୍ତୁ । କ୍ଷେତ୍ର ଅନୁସାରେ ଆପଣ କ୍ଷେତ୍ରଜ୍ଞ ହେବା ବିଧେୟ । ତତ୍‌କ୍ଷେତ୍ର ପାଇଁ ଯେଉଁ ଭୂମିକା ଥିଲା ବର୍ତ୍ତମାନ ସ୍ଥିତିରେ ତାହା ନିଷ୍ପ୍ରୟୋଜନ । ଏହା ଭଲଭାବେ ବିଚାର କରନ୍ତୁ । (ଭଗବତ ଗୀତା ୧୩ଶ ଅଧ୍ୟାୟ ଅନୁସଂଧେୟ) ତାହା ହେଲେ ତ ଆପଣ ନିଜର ବୌଦ୍ଧିକତା, ବିଚକ୍ଷଣତା, କୁଶଳତାକୁ ପ୍ରତିଷ୍ଠିତ କରିପାରିବେ । ଏବଂ ତଦ୍ୱାରା ଅତି କମ୍‌ରେ ଆପଣ ଆତ୍ମ ପ୍ରତାରଣାରୁ ମୁକ୍ତ ରହିପାରିବେ । ବୃଥା ଖୋଳପା ମଧ୍ୟରୁ ପଦାକୁ ବାହାରିଆସିଲେ ସରଳ ହୋଇଯିବେ, ଆଉ ସରଳତା ଦ୍ୱାରା, ଶାନ୍ତି ସଂତୋଷର ରାଜମାର୍ଗରେ ଉପସ୍ଥିତ ହେବା ସହଜ ହୋଇଯିବ ।

ପ୍ରଥମ ବିନ୍ଦୁ ହେଉଛି ଖାଦ୍ୟ ସଂଜମ । ଖାଦ୍ୟର ଅସଂଜମ ବହୁ ବ୍ୟାଧିର ମୂଳ କାରଣ । ଖାଦ୍ୟ -ପାନୀୟର ସଂଜମ ନ ରହିଲେ ବାର୍ଦ୍ଧକ୍ୟର ବହୁ ପୂର୍ବରୁ ଶରୀର ବ୍ୟାଧି କବଳିତ ହୋଇଥାଏ । ଏହି ଅବସ୍ଥାରେ ଅନେକ ବୃଦ୍ଧାବସ୍ଥାରେ ପହଞ୍ଚିବା

ପୂର୍ବରୁ କାଳ କବଳିତ ହୋଇଥାନ୍ତି । ଯେଉଁମାନେ କାଳ କବଳରୁ ମୁକ୍ତ ହୋଇ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପହଞ୍ଚି ଯାଆନ୍ତି, ସେମାନଙ୍କ ପାଇଁ ଏହି ଅବସ୍ଥା ହେତୁ କଷ୍ଟକର ହୋଇପଡେ ସୁଖରେ ରହିପାରନ୍ତି ନାହିଁ । ଏଥିପାଇଁ ଖାଦ୍ୟ ସଂଜମ ସଂପର୍କରେ ଅନ୍ତତଃ ଯୁବାବସ୍ଥାରୁ ସଚେତନ ହେବା ଉଚିତ୍ । ଖାଦ୍ୟ ପୁନଃ ଭୌଗୋଳିକ ସ୍ଥିତିକୁ ନେଇ ହୋଇଥାଏ । ଯାହା ପାକସ୍ଥଳୀ ସବଳ ଥିଲାବେଳେ ଅତ୍ୟନ୍ତ ସହଜରେ ତୁମେ କରିପାରୁଥିଲେ । ସେହି ଅଭ୍ୟାସକୁ ବାର୍ଦ୍ଧକ୍ୟରେ ମଧ୍ୟ ଅବ୍ୟାହତ ରଖିବା ଅନୁଚିତ୍ । ଗରିଷ୍ଠ ଖାଦ୍ୟ ପରିହାର କରି ଯଥା ସଂଭବ ଲଘୁ ତଥା ସହଜରେ ହଜମ ହେଉଥିବା ଖାଦ୍ୟ ଗ୍ରହଣ କରିବା ଉଚିତ ହେବ । ଆମିଷ, ତେଲ ମସଲାଯୁକ୍ତ ଖାଦ୍ୟ ଏବଂ ଟକଳା ଖାଦ୍ୟ ପରିହାର କରନ୍ତୁ । ବୁଝିନିଅନ୍ତୁ ଯେ ଖାଦ୍ୟ ଖାଇବା ଜିହ୍ୱା ଲାଳସା ପରିତୃପ୍ତି ପାଇଁ ନୁହେଁ, ଅଧିକନ୍ତୁ ତାହା କ୍ଷୁଧା ନିବାରଣ ଏବଂ ଶରୀର କାର୍ଯ୍ୟକ୍ଷମ ହେବାକୁ ଶକ୍ତିଯୋଗାଣକାରୀ ଇନ୍ଧନ । ସେହି ଦୃଷ୍ଟିରୁ ଅଭ୍ୟସ୍ତ ଖାଦ୍ୟରୁ କେତେକର ତ୍ୟାଗ ଏବଂ କେତେକ ନୂତନ ଖାଦ୍ୟ ଚୟନ କରି ଗ୍ରହଣ କରନ୍ତୁ । ଭୋଜି ଇତ୍ୟାଦିକୁ ଯାଆନ୍ତୁ ନାହିଁ । ବାଧ୍ୟରେ ଗଲେ ସେଠାରେ ରନ୍ଧାଖାଦ୍ୟ ଖାଆନ୍ତୁ ନାହିଁ ।

ଖାଦ୍ୟ ଖାଇବାକୁ ଅଧିକ ସମୟ ଦିଅନ୍ତୁ । ଅର୍ଥାତ୍ ଖାଦ୍ୟକୁ ଚୋବାଇ କରି ପାଟିରେ ପିଠୋଉ ପରି ହେଲେ ଢୋକନ୍ତୁ । ପାଟିରେ ପୂରାଇଲେ ମାତ୍ରେ ଏକଳ, ସେକଳ କରି ବ୍ୟସ୍ତତା ମଧ୍ୟରେ ଗିଳି ପକାନ୍ତୁ ନାହିଁ । ଧୈର୍ଯ୍ୟର ସହ ଚୋବାନ୍ତୁ ଏବଂ ସେହି ସମୟରେ ଭାବନ୍ତୁ ଯେ ମୁଁ ଏହାକୁ ଖାଉଛି । ଏହା ମୋର କ୍ଷୁଧା ନିବାରଣ କରିବ ଓ ଶରୀର କାର୍ଯ୍ୟକ୍ଷମ ହେବ । ଏହା ମୋର ହିତକାରୀ ହେବ । ଖାଇବା ସମୟରେ ନିଜବୃତ୍ତି, ଅନ୍ୟ କାହା କଥା କିମ୍ବା ଟି.ଭି ଶୁଣିବା ଇତ୍ୟାଦି ଅନୁଚିତ (କେବଳ ଖାଦ୍ୟ ସଂବଧରେ ସ୍ୱତନ୍ତ୍ର ଆଲୋଚନା କରାଯାଇପାରେ)

ବର୍ତ୍ତମାନ ସ୍ଥିତିରେ ଧାନ, ଗହମ, ଡାଲି ଜାତୀୟ ମୁଗ, ବିରି, ପନିପରିବା ସବୁଥିରେ ରାସାୟନିକ ସାର ଓ କୀଟନାଶକର ପ୍ରୟୋଗ ସେବନ ଦ୍ୱାରା ପରିପାକ କ୍ରିୟାସହ ଅନ୍ୟ ବହୁ ବ୍ୟାଧି ସୃଷ୍ଟି ହୋଇଛି । ରୋଗ ସୃଷ୍ଟି ହେବାପରେ ଏଲୋପ୍ୟାଥିକ୍ ଔଷଧ ସେବନ ଫଳରେ ଗୋଟିଏ ରୋଗର ନିରାକରଣ କରୁ କରୁ ଅନ୍ୟ ଦୀର୍ଘ ସ୍ଥାୟୀ ରୋଗମାନ ସୃଷ୍ଟି କରିଥାଏ ।

ବୃଥା ଅହମିକା- ମୁଁ ଏପରି ବଡଲୋକ ଏପରି ଦାମୀ ଖାଦ୍ୟ ନଖାଇଲେ ଲୋକେ କଣ ଭାବିବେ । ପୁଣି ଅପରପକ୍ଷେ ମୁଁ ଏପରି ଖାଦ୍ୟ ଖାଉଛି ଅନ୍ୟମାନଙ୍କଠାରୁ ମୁଁ ସ୍ୱତନ୍ତ୍ର ଶ୍ରେଣୀର । ମୋ ସହ ଅନ୍ୟମାନେ ତୁଳନୀୟ ନୁହଁନ୍ତି । ସିଧାକଥାରେ ମୁଁ

ଭି.ଆଇ.ପି ବର୍ଗର । ଏ ମାନେତ ନୀଚ, ହୀନ, ବର୍ବର, ଦୁର୍ବଳ । ଏଣୁ ମୁଁ ଉନ୍ନତ ଶ୍ରେଣୀର ଏଥିରେ ସନ୍ଦେହ କାହିଁ ? ଏପରି ଭାବନା ଓ ଖାଦ୍ୟ ଗ୍ରହଣ, ବ୍ୟାଧିର ଅନ୍ୟ ଏକ କାରଣ ।

ଶରୀର ଶ୍ରମରୁ ଦୂରେଇ ରହିବା- ଏହା ଭାରତୀୟ ବିଚାର ନୁହେଁ । ସୁଖୀ କିଏ ? ଯଦି ପଚରାଯାଏ ତାର ସାଧାରଣ ଉତ୍ତର ହେବ ଯେ ଶରୀର ଶ୍ରମ ନକରନ୍ତି । ଯେ ଚେୟାର ଉପରେ ବସିରହି ଅର୍ଥ ଉପାର୍ଜନର କୌଶଳ ଜାଣିଛନ୍ତି ସେହିଁ ସୁଖୀ । ଏଇ 'ବାବୁ'-ମନୋଭାବ ହିଁ ପରବର୍ତ୍ତୀ ଜୀବନରେ ବ୍ୟାଧିକୁ ନିମନ୍ତ୍ରିତ କରି ଦୁଃଖଶୋକରେ ଜୀବନର ଅନ୍ତ କରିଥାଏ । ସୁତରାଂ ସାମର୍ଥ୍ୟ ଅନୁସାରେ ଶରୀର ଶ୍ରମ କରିବା ଦ୍ୱାରା ଶାରୀରିକ ଦୃଷ୍ଟିରୁ ସୁସ୍ଥ ରହିବା ସହ ମାନସିକ ଶାନ୍ତି ପ୍ରାପ୍ତି ହୋଇଥାଏ ।

ଆବେଗ ପ୍ରଶମନ- ଶ୍ରୀକୃଷ୍ଣ ଗୀତାରେ 'ଅନୁଦ୍‌ବେଗକରଂବାକ୍ୟ'ର ନିର୍ଦ୍ଦେଶ ଦେଇ ଅଛନ୍ତି । ଆପଣ ଯେତେ ସୁସ୍ଥ ବା ଯେଉଁ ସ୍ଥାନରେ ଥାଆନ୍ତୁ କୌଣସି ଉଦ୍‌ବେଗ ପୂର୍ଣ୍ଣ ବାକ୍ୟ ଶ୍ରବଣ ମାତ୍ରକେ ଆପଣ ବିବ୍ରତ ହୋଇ ପଡିବେ । ପାରିପାର୍ଶ୍ୱିକ ଯେତେ ସୁଖ-ସୁବିଧା ସବୁ କ୍ଷଣକ ମଧ୍ୟରେ ତୁଚ୍ଛ ବୋଧ ହେବ । ତେଣୁ ଏପରି ଅବସ୍ଥାକୁ ନଆସିବା, ଆବେଗ ସଂବେଗକୁ ପ୍ରଶମିତ କରିବାର ସାଧନା ପ୍ରତ୍ୟେକ ଅବସ୍ଥାରେ (ବୟସରେ) ଆବଶ୍ୟକ । କିନ୍ତୁ ବୃଦ୍ଧାବସ୍ଥାରେ ଏହାର ମହତ୍ତ୍ୱ ସର୍ବାଧିକ । ଏହାର ଅଭାବରେ ବ୍ୟକ୍ତିର ସ୍ୱଭାବ ଚିଡଚିଡା ହୋଇଯାଏ ଏବଂ ଚିଡଚିଡା ସ୍ୱଭାବ ଅନ୍ୟ ପାଇଁ ନୁହେଁ ନିଜକୁ ମଧ୍ୟ ଦୁଃଖଦାୟୀ ହୋଇଥାଏ । ବୃଦ୍ଧାବସ୍ଥାରେ ନିଜର ବୃତ୍ତିକୁ ଶାନ୍ତ ରଖନ୍ତୁ, ବ୍ୟବହାର ମଧୁର ରଖନ୍ତୁ । କଥାବାର୍ତ୍ତାରେ ଉତ୍ତେଜନା, ଆକ୍ରୋଶ ନକରନ୍ତୁ । ଏହାଦ୍ୱାରା ଆପଣ ମାନସିକ ଶାନ୍ତି ପାଇବେ ଏବଂ ପ୍ରାର୍ଥନା, ଜପ,ଧ୍ୟାନ ଆଦି କରିବାରେ ସକ୍ଷମ ହୋଇପାରିବେ । ଏହି ଅବସ୍ଥାରେ ପରିବାର, ପଡୋଶୀ ତଥା ଆଗନ୍ତୁକ, ବଂଧୁମାନେ ଆପଣଙ୍କ ପ୍ରତି ମାଧୁର୍ଯ୍ୟ ପୂର୍ଣ୍ଣ ବିଚାର ରଖିବେ । ସେମାନେ ଆପଣଙ୍କୁ ପଜିଟିଭ୍ ଏନର୍ଜି ରେଡିଏଟ୍ କରିବେ । ଫଳରେ ଆପଣ ଉଭୟ ଦିଗରୁ ବାହ୍ୟ ଓ ଆଭ୍ୟନ୍ତରରୁ ଶାନ୍ତି ସଂତୋଷ ଲାଭ କରି ସୁଖୀ ହୋଇପାରିବେ । ଆଦେଶାତ୍ମକ ଭାଷାରୁ ନିବୃତ୍ତ ରୁହନ୍ତୁ । ଦ୍ୱିତୀୟ ପ୍ରସଂଗ ହେଲା ଭାଷା ବିବେକ । ଭାଷା ସ୍ୱୟଂ ଏକ ପୂର୍ଣ୍ଣ ବିଜ୍ଞାନ । ଜଣେ ଭାଷା ପ୍ରୟୋଗ କରି, ନିଜର ଅବିବେକିତା ଦ୍ୱାରା ତା ସମ୍ମୁଖରେ ଥିବା ବ୍ୟକ୍ତିକୁ ଉତ୍ତେଜିତ କରି ଅଶାନ୍ତ କରିଦିଏ । ଅନ୍ୟ ଏକ ବ୍ୟକ୍ତି ନିଜ ବିବେକ ପୂର୍ଣ୍ଣ ଭାଷାରେ ଉତ୍ତେଜିତ, ବିକ୍ଷୁବ୍‌ଧ ବ୍ୟକ୍ତିକୁ ଶାନ୍ତ କରିଦେଇଥାଏ । ବୃଦ୍ଧ ବ୍ୟକ୍ତି ନିଜର ବିବେକାନୁମୋଦିକ ଆଦେଶାତ୍ମକ ଭାଷାରୁ ନିବୃତ୍ତ ରହିବା କଲ୍ୟାଣକର । ଯଦି ପୂର୍ଣ୍ଣ

ଭାବେ ନିୟନ୍ତ୍ରିତ ନହୋଇପାରନ୍ତି, ତେବେ ପ୍ରସନ୍ନାତ୍ମକ ଭାଷା ପ୍ରୟୋଗ କରିବାକୁ ଯଥା ସଂଭବ ଚେଷ୍ଟିତ ହୁଅନ୍ତୁ । ଭାଷା ଅନ୍ୟକୁ ବୁଝେଇଲା ଭଳି ଏବଂ ପ୍ରସନ୍ନାତ୍ମକ ହେବା ଦରକାର ।

ଚତୁର୍ଥ ପ୍ରସଂଗ ହେଉଛି ପ୍ରେକ୍ଷାଧ୍ୟାନର ପ୍ରୟୋଗ- ଆପଣ ଜୀବନ ଯାତ୍ରାରେ ବହୁବିଧ ସ୍ତର ଦେଇ ଗତି କରି ଆସିଛନ୍ତି ।ନିରବରେ କିଛି କାମ ନକରି ବସି ପଡିଲେ ବାଲ୍ୟ ଯୌବନର ତିକ୍ତ ମଧୁର ଅନୁଭବ ସଂଗେ ସଂଗେ ଆପଣଙ୍କ ମନରେ ଉଦ୍‌ଭାସିତ ହୋଇ ଉଠିବ । ଫଳରେ ଶରୀର ସୁସ୍ଥ ଏବଂ ଭଲ ସ୍ଥାନରେ ଥିଲେ ମଧ୍ୟ ମନ ବ୍ୟାକୁଳିତ ହୋଇ ଆପଣଙ୍କୁ ବ୍ୟତିବ୍ୟସ୍ତ କରି ପକାଇବ । ସୁତରାଂ ଏହି ସ୍ଥିତିରୁ ନିଜକୁ ସୁରକ୍ଷିତ କରିବା ନିମିତ୍ତ ସରଳ ଶ୍ୱାସ ଧ୍ୟାନ କରନ୍ତୁ । ଶ୍ୱାସତ ଜନ୍ମ ପୂର୍ବରୁ ଯିବା ଆସିବା କରୁଛି । ଖାଇବା, ପିଇବା ପାଇଁ ଆପଣଙ୍କ ବା ଅନ୍ୟ କାହାରି ଚେଷ୍ଟା ହେଉଛି କିନ୍ତୁ ଶ୍ୱାସ୍ ତ ବିନା ଚେଷ୍ଟାରେ ସ୍ୱାଭାବିକ ଭାବେ ଚାଲୁଛି । କିନ୍ତୁ ଆପଣ ଏବେ ତାର ଗତିକୁ ଲକ୍ଷ୍ୟ କରନ୍ତୁ । ଶ୍ୱାସ ଭିତରକୁ ଯାଉଛି ମନଦ୍ୱାରା ତାକୁ ଦେଖନ୍ତୁ । ପୁଣି ଶ୍ୱାସ ପଦାକୁ ବାହାରିଲା-ଏହାକୁ ମଧ୍ୟ ଦେଖନ୍ତୁ । ସେଥିଲେ ତଲ୍ଲୀନ ହୋଇଯାଆନ୍ତୁ । ଏହାଦ୍ୱାରା ଆପଣ ଅଶେଷ ଆନନ୍ଦ ଲାଭ କରିବେ ଏବଂ ଅନ୍ତସ୍ଥ ଓ ବହିଃ କ୍ରିୟା ଆପଣଙ୍କୁ ବିବ୍ରତ କରିପାରିବ ନାହିଁ ।

ଶକ୍ତିର ଉପଯୋଗ- ଚତୁର୍ଥ ପ୍ରସଂଗ ହେଉଛି ସକ୍ରିୟତା । ସକ୍ରିୟତା ଜୀବନକୁ ଉପଯୋଗୀ କରିବା ନିମିତ୍ତ ମହତ୍ତ୍ୱପୂର୍ଣ୍ଣ ସୂତ୍ର । କଥା ହେଉଛି, ବ୍ୟକ୍ତି ନିଜ ସାମର୍ଥ୍ୟକୁ ଗୋପନ ନକରି ଯେଉଁ କାର୍ଯ୍ୟ ଉପଯୋଗୀ ତାହା କରିବାରେ ଆଳସ୍ୟ ବା କୁଣ୍ଠା କରିବ ନାହିଁ । ନିଷ୍କ୍ରିୟତା ଦ୍ୱାରା ନିଜ ସ୍ୱାସ୍ଥ୍ୟ ଉପରେ ପ୍ରତିକୂଳ ପରିସ୍ଥିତି ହୋଇଥାଏ ଏବଂ ଅନ୍ୟ ପରିବାର ବ୍ୟକ୍ତିଙ୍କ ପାଇଁ ଭାରତୁଲ୍ୟ ହୋଇଥାଏ । ଏହି ସ୍ଥିତି ତାଙ୍କ ଜୀବନରେ ଅଭିଶାପ ହେବା ପାଇଁ ବଡ ନିମିତ୍ତ ହୋଇଥାଏ । ଏଣୁ ବୟସ ସାମର୍ଥ୍ୟ ଅନୁସାରେ କୌଣସି ସତ୍ କାର୍ଯ୍ୟରେ ସଂଲଗ୍ନ ରହିବା ଉଚିତ୍ ।

ଶିଶୁମାନଙ୍କୁ ସୁସଂସ୍କାର ବପନ- ପରିବାର ମଧ୍ୟରେ ଶିଶୁମାନଙ୍କୁ ସୁସଂସ୍କାର ପ୍ରଦାନ କରିବା କାର୍ଯ୍ୟ ଏମାନଙ୍କ ଦ୍ୱାରା ସମାହିତ ହୋଇପାରିଲେ ଆଗାମୀ ବଂଶଧର ଉତ୍ତମବ୍ୟକ୍ତି, ସୁନାଗରିକ ହୋଇପାରିବେ । ସେମାନଙ୍କ ସମୟର ସଦୁପଯୋଗ ହେବ, ପରିବାରର ବଧୂମାନେ ଗୃହକାର୍ଯ୍ୟ ପରିଚାଳନାରେ ସମୟ ପାଇପାରିବେ ଏବଂ ଶିଶୁ ମଧ୍ୟ ସୁସଂସ୍କୃତ ହୋଇପାରିବେ ।

ଭଗବାନ ଶ୍ରୀକୃଷ୍ଣ ଭଗବତ ଗୀତାରେ କାମ, କ୍ରୋଧ ଓ ଲୋଭକୁ ମନୁଷ୍ୟର ସବୁଠାରୁ ବଡ ଶତ୍ରୁ ବୋଲି ନିର୍ଦ୍ଦେଶିତ କରି ଅଛନ୍ତି । ବୃଦ୍ଧାବସ୍ଥାରେ କାମ, କ୍ରୋଧ ସାଧାରଣତଃ ପ୍ରଶମିତ ହୋଇଯାଇଥାଏ । କିନ୍ତୁ ଲୋଭ କ୍ରମଶଃ ଗ୍ରାସ କରି ଚାଲେ । ଆବଶ୍ୟକତା ପାଇଁ ଯେତିକି ପ୍ରୟୋଜନ ତାହା ଲୋଭ ନୁହେଁ । କିନ୍ତୁ ତାହାଠାରୁ ଯେତେବେଶୀ ହେବ, ଜଂଜାଳ ସେତେ ଅଧିକ ହେବ, ଫଳରେ ତଜ୍ଜନିତ ଅଶାନ୍ତି ସୃଷ୍ଟିହୋଇ ମାନସିକ ସନ୍ତୋଷ ବାଧାପ୍ରାପ୍ତ ହେବ ।

ସୁତରାଂ ଆପଣଙ୍କ ନିକଟରେ ଯାହା ଅଛି ବିଚାର କରି ଯାହାର ତହିଁରେ ପ୍ରୟୋଜନ ସେହି ବ୍ୟକ୍ତିଙ୍କୁ ଦିଅନ୍ତୁ । ଦେଖିବେ ଯିଏ ପାଇଲା, ତାର ଆବଶ୍ୟକତା ମେଣ୍ଟିଲା, ସେଥିପାଇଁ ସେ ଖୁସି ହେଲା । କିନ୍ତୁ ଯିଏ ଦେଲା, ତା ମନରେ ଯେଉଁ ଆନନ୍ଦ ତାହା ଅବର୍ଣ୍ଣନୀୟ । ସୁତରାଂ ଦେବାପାଇଁ ଅଭ୍ୟାସ କରନ୍ତୁ ଫଳରେ ଆପଣ ସଦା ଆନନ୍ଦିତ ରହିବେ ।

ସାମାଜିକ ତଥା ବ୍ୟକ୍ତିଗତ ଉତ୍ସବାନୁଷ୍ଠାନରେ ଯଥା ସମ୍ଭବ ନିରହଂକାର ଭାବେ ଅଂଶ ଗ୍ରହଣ କରନ୍ତୁ । ତାହା ଆପଣଙ୍କ ଭିତରୁ ନିଷ୍କ୍ରିୟତା, ଜଡତା, ଅଭିମାନ ଆଦିକୁ ଦୂର କରି ଚିତ୍ତ ଶୋଧନ କରିବାରେ ସହାୟତା ହେବ ଫଳରେ ଆପଣ ଚଳଚଞ୍ଚଳ ରହିବା ସହ ମାନସିକ ସନ୍ତୋଷ ଲାଭ କରିବେ । ବ୍ୟସନ ଓ ନିଶାମୁକ୍ତି ଆପଣଙ୍କ ଜୀବନକୁ ଉଜ୍ଜ୍ୱଳମୟ ସ୍ଥିତିରେ ପହଞ୍ଚାଇଦେବ ଆପଣ ସ୍ୱୟଂ ଅନ୍ୟର ଆଦର୍ଶ ହୋଇଯିବେ ।

ବୃଦ୍ଧାବସ୍ଥାରେ କିପରି ବ୍ୟକ୍ତିର ଜୀବନ ସରସ, ଆନନ୍ଦିତ ତଥା ଉପଯୋଗୀ ହୋଇପାରିବ ସେ ସମ୍ବନ୍ଧରେ କିଛି ଆଲୋଚନା କରାଗଲା । ଏତଦ୍‌ଭିନ୍ନ ବ୍ୟାପକ ଆଲୋଚନାର କ୍ଷେତ୍ର ରହିଛି ଏବଂ ପ୍ରତ୍ୟେକ ବ୍ୟକ୍ତିର କେତେକ ବିଶିଷ୍ଟ ବା ନିର୍ଦ୍ଦିଷ୍ଟ ସମସ୍ୟା ତାକୁ ବ୍ୟସ୍ତ କରିଥାଏ । ସେ ସବୁର ସମାଧାନ ସ୍ୱତନ୍ତ୍ର ଭାବେ ବିଚାରଣୀୟ । କିନ୍ତୁ ସାଧାରଣ ଭାବେ କେତେକ ପାରିବାରିକ ଓ ସାମାଜିକ ବିଷୟ ପ୍ରସଂଗ ପ୍ରତି ଆଧାର କରି ସମାଧାନ ସୂତ୍ର ନିର୍ଣ୍ଣୟ କରାଯାଇଅଛି । ଏହି କେତେକ ସୂତ୍ର ବହୁ ସମସ୍ୟା ନିରାକରଣର ସହାୟକ ହେବା ଆଶା କରିବା ସ୍ୱାଭାବିକ ।



# ସାଧନା ସୋପାନ ସରଣୀ

ଦେଶକାଳର ପ୍ରଭେଦ ସତ୍ତ୍ୱେ କୌଣସି ବ୍ୟକ୍ତି ନିଜର ତ୍ରୁଟିକୁ ପ୍ରକାଶ କରିବାର ସାହସ କରିପାରନ୍ତି ନାହିଁ । ତଜ୍ଜନିତ ବିଫଳତା, ଅକୃତକାର୍ଯ୍ୟତା ଏବଂ କ୍ଷତିର କାରଣ ଯେ ସିଏ ନୁହେଁ, ଅନ୍ୟ କେହି ବ୍ୟକ୍ତି ପରିବେଶ କିମ୍ବାକାଳ, କିଛି ନୋହିଲେ ଭଗବାନଙ୍କୁ ସେଥିପାଇଁ ଦାୟୀ କରି ଶାନ୍ତିରେ ନିଶ୍ୱାସ ମାରିଥାଉଁ । ନିଜର ଦୋଷକୁ ଗ୍ରହଣ କରିବାର ମାନସିକତା ଖୁବ ବିରଳ । ଦୋଷର ଅଭାବ ବା ଅନୁପସ୍ଥିତିକୁ ନିର୍ଦ୍ଦୋଷ କୁହାଯାଇପାରେ, ସେହିପରି ଲୁଗା (ବସ୍ତ୍ର) ଇତ୍ୟାଦିରେ ମଳ ପରିଷ୍କାର ହୋଇଗଲେ ବସ୍ତ୍ର ଶୁଦ୍ଧ ବା ନିର୍ମଳ ହୋଇଯାଏ । ଜଳ କ୍ଷେତ୍ରରେ ମଧ୍ୟ କେତେକ ଉପାୟ ଅବଲମ୍ବନରେ ବିଶୁଦ୍ଧ କରାଯାଇଥାଏ । ଗୃହପାଳିତ ତଥା ବଣ୍ୟ ପଶୁପକ୍ଷୀମାନଙ୍କ ମଧ୍ୟରୁ କେତେକଙ୍କୁ ପ୍ରଶିକ୍ଷଣ, ତାଲିମ ଦ୍ୱାରା ପ୍ରଦର୍ଶନୀୟ କାର୍ଯ୍ୟ କରିପାରିବା ଏବଂ ସେମାନଙ୍କର ମୌଳିକ, ପୂର୍ବାବସ୍ଥାର ସ୍ୱଭାବକୁ ପରିହାର କରିବା ଲକ୍ଷ୍ୟ କରି ହେବ । (ଏ ପ୍ରସଙ୍ଗରେ ଦୁଇଟି ଶୁଆ ଭିନ୍ନ ପରିବେଶରେ କିପରି ଭିନ୍ନ ସ୍ୱଭାବର ହୋଇଉଠିଛନ୍ତି ସେହି ଆଖ୍ୟାନଟି ସ୍ମରଣୀୟ) ।

ଜୀବନଧାରଣ ପାଇଁ କରାଯାଉଥିବା ଦୈନନ୍ଦିନ କାର୍ଯ୍ୟଠାରୁ ଆରମ୍ଭ କରି ଚାକିରୀ, ପ୍ରତିଯୋଗିତା ବା ତତ୍ତୁଲ୍ୟ ନିର୍ଣ୍ଣାୟକ କ୍ଷେତ୍ରରେ ସାଫଲ୍ୟ ବୈଫଲ୍ୟ ଇତ୍ୟାଦି ନିମିତ୍ତ ନିଜକୁ ଖୁବ୍‌କମ ଦାୟୀ କରିଥାନ୍ତି । ନିଜକୁ ଛାଡି କାହାକୁ ନା କାହାକୁ ଦାୟୀ କରିବା ଏକ ମନସ୍ତାତ୍ତ୍ୱିକ ସାନ୍ତ୍ୱନା । ନିଜ ସଂପର୍କରେ ପ୍ରଶଂସା ଶୁଣିବାକୁ ଯେପରି ସୁଖକର ଲାଗେ, ତ୍ରୁଟି ନିନ୍ଦା ଶୁଣିଲେ ସେପରି ଲାଗିନଥାଏ । ଇଏତ ସାଧାରଣ ସ୍ତରର ଅନୁଭବ୍ୟ ବିଷୟ ପ୍ରସଙ୍ଗ । ତିନିଗୁଣ ଏବଂ ପଞ୍ଚ ବିଷୟରେ ଗ୍ରସିତ ମାନବ ସଫଳତାରେ ଉତ୍‌ଫୁଲ୍ଲ ଏବଂ ବିଫଳତାରେ ବିଷଣ୍ଣ ହେବା ଏକ ସାଧାରଣ ମାନସିକ ସ୍ଥିତି ।

ଭଗବତ୍ ଗୀତା ଏ ସଂପର୍କରେ ମାର୍ମିକ ଭାବେ ସୁଝାଇଛନ୍ତି । ଯେ ଶତ୍ରୁଠାରେ ଏବଂ ମିତ୍ରଠାରେ ଓ ମାନ ଅପମାନରେ ସମ ତଥା ଶୀତଉଷ୍ଣ, ଶରୀରର ଅନୁକୂଳ

ଏବଂ ପ୍ରତିକୂଳତା, ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ ସମ ଓ ଆଶକ୍ତି ରହିତ, ଯେ ନିନ୍ଦା ସ୍ତୁତିକୁ ସମାନ ଦେଖନ୍ତି, ଯେ ମନନ ଶୀଳ ଅଟନ୍ତି ସଦା ହିଁ ସନ୍ତୁଷ୍ଟ (ଏବଂ ବାସସ୍ଥାନ ପ୍ରତି ମମତ୍ୱ ଆସକ୍ତିରୁ ରହିତ, ସ୍ଥିରମତି, ଭକ୍ତିମାନ ପୁରୁଷ ମୋରପ୍ରିୟ (ଗୀତା ୧୨।୧୮।୧୯)

ଆପାତତଃ ଉପଯୁକ୍ତ ଗୀତାର ଏହି ଉଦ୍ଧୃତ ଅସଂଭବ କିମ୍ୱା ଆମ (ସଂସାରୀ) ଦ୍ୱାରା ପାଳନୀୟ ନୁହେଁ ଅଥବା ଗୃହତ୍ୟାଗୀ ସନ୍ନ୍ୟାସୀ ମାନଙ୍କ ପାଇଁ ଉକ୍ତ ବଚନ ପ୍ରଯୁକ୍ତ ଏହିପରି ଯୁକ୍ତି ମନରେ ତତ୍‌କ୍ଷଣାତ୍ ଆସିଯିବ । ଏଥିରୁ ଧରିନେବାକୁ ହେବ ଯେ ଗୀତାର ମହତ୍‌ବାଣୀ ଗ୍ରହ୍ଣ କରିବା ପାଇଁ ଆମେ ପ୍ରସ୍ତୁତ ହୋଇପାରିନାହୁଁ । ଅନ୍ୟ ଭାଷାରେ କହିଲେ ସେ ବାଣୀକୁ ନିଜ ସ୍ୱଭାବ, ଆଚରଣରେ ସିଦ୍ଧ କରିବା ନିମିତ୍ତ ଯେଉଁ ମାନସିକତାର ଉତ୍ତରଣ ପ୍ରୟୋଜନ ସେହି ସ୍ତରରେ ଆମେ ପହଞ୍ଚି ପାରିନାହୁଁ । ଅର୍ଥାତ୍ ଆମର ସାଧନା ବା ତନ୍ନିମିତ୍ତ ସଂକଳ୍ପ ଏ ଯାବତ୍ ହୋଇପାରିନାହିଁ । ମନକୁ ସେଥିପାଇଁ ଆମେ ପ୍ରଶିକ୍ଷିତ କରିପାରୁନାହିଁ । ଶରୀରର ବୟସ ଯାହାହେଉ, ମନର ଅବସ୍ଥା ସେହି ଶୈଶବ, ଅବିକଶିତ ବା ଅପ୍ରଶିକ୍ଷିତ, ସାଧନା ବିରହିତ ସ୍ତରରେ ହିଁ ରହିଯାଇଛି ।

ଆମର ଚତୁର୍ପାର୍ଶ୍ୱ ପରିବେଶକୁ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଜାଣିପାରିବା ଯେ ସଂସାର ବଦଳିଯାଉଛି । ମନର ଭାବ ଓ ଇନ୍ଦ୍ରିୟ ଇତ୍ୟାଦି ବଦଳିଯାଇଛନ୍ତି । ଯେତେ ଦୂର ପର୍ଯ୍ୟନ୍ତ ମନ ବୁଦ୍ଧି ସହାୟତାରେ ବୋଧଗମ୍ୟ ଏ ସମସ୍ତ ପରିବର୍ତ୍ତନଶୀଳ । ପ୍ରତିକ୍ଷଣ ପରିବର୍ତ୍ତନ ହୋଇଯାଉଛି । ସକଳ ବସ୍ତୁ ପରିବର୍ତ୍ତନଶୀଳ କିନ୍ତୁ ଏହି ପରିବର୍ତ୍ତନକୁ ଜାଣିଲା ବାଲା ସ୍ୱୟଂ ଅପରିବର୍ତ୍ତନୀୟ । ଜାଣିଲା ବାଲା ଯଦି ବଦଳୁଥାନ୍ତା ତେବେ ଏହି ପରିବର୍ତ୍ତନକୁ ଜାଣନ୍ତା କିପରି ? ଏଥିରୁ ସିଦ୍ଧ ହେଲା, ଯେ ଜାଣିଲା ବାଲା ପରିବର୍ତ୍ତନ ହୁଅନ୍ତି ନାହିଁ । ଏହା ବାସ୍ତବିକ ତତ୍ତ୍ୱ, ନିତ୍ୟ, ସଦା, ସର୍ବତ୍ର ଏବଂ ସମସ୍ତଙ୍କର ହୋଇଥାନ୍ତି । ଏହାକୁ ଆମେ ପରମାତ୍ମା କହିଥାଉଁ ।

ଈଶ୍ୱର ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରରୂଢ଼ାନି ମୟା (ଗୀତା ୧୮।୬୧)

ହେ ଅର୍ଜୁନ ! ଶରୀର ରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା ସମସ୍ତ ପ୍ରାଣୀଙ୍କୁ ଅନ୍ତର୍ଯାମୀ ପରମେଶ୍ୱର ନିଜର ମାୟାଦ୍ୱାରା (ସେମାନଙ୍କ କର୍ମାନୁସାରେ) ଋଳିତ କରାଇ ସମସ୍ତ ପ୍ରାଣୀଙ୍କର ହୃଦୟରେ ନିବାସ କରନ୍ତି ।

ସର୍ବାନ୍ତର୍ଯ୍ୟାମୀ ଶୁଦ୍ଧ, ବୁଦ୍ଧ, ମୁକ୍ତ ନିଜ ହୃଦୟରେ ବିରାଜିତ ହୋଇଥିଲେ ମଧ୍ୟ ତଥାକଥିତ ଡିଗ୍ରୀଧାରୀ ଶିକ୍ଷିତ, ସଂସ୍କାରିତ ମାନେ ତାଙ୍କୁ ଜାଣି ପାରୁନାହାଁନ୍ତି କାହିଁକି ? ଏପରିକି ଯେଉଁମାନେ ତତ୍ ସଂବନ୍ଧିତ ଶାସ୍ତ୍ର ଅଧ୍ୟୟନ କରିଛନ୍ତି ଅଥବା ଯେଉଁମାନେ ହଜାର ହଜାର ଶ୍ରୋତାଙ୍କ ଆଗରେ ଏହି ତତ୍ତ୍ୱକୁ ବ୍ୟାଖାନ କରନ୍ତି, ସେମାନେ ମଧ୍ୟ ଏହା ଜାଣିନଥାନ୍ତି । କେବଳ ସେମାନେ ଶାସ୍ତ୍ରର ବଚନକୁ ନିଜ ଢଙ୍ଗରେ ଶୁଆପରି ବ୍ୟକ୍ତ କରିଥାନ୍ତି ମାତ୍ର । କିନ୍ତୁ ଏ ସମସ୍ତ ବିଷୟ ଥିଓରି ଅପେକ୍ଷା ପ୍ରାକଟିକାଲର ପ୍ରୟୋଜନୀୟତା ଯଥେଷ୍ଟ ଅଧିକ । ଥିଓରି କେବଳ ସୂଚନା କିନ୍ତୁ ତତ୍ ସଂପର୍କୀତ ଅନୁଭୂତି, ସଂସାରର କୌଣସି ବସ୍ତୁ ପ୍ରାପ୍ତିଠାରୁ ଯେ କେତେ ହଜାର କି ଲକ୍ଷେ ଗୁଣଅଧିକା ତାହା ବ୍ୟକ୍ତ କରିହେବନାହିଁ । (ଏ ସଂବଧରେ ପ୍ରାୟ ସମସ୍ତ ମହାପୁରୁଷ ସାଧକମାନଙ୍କ ସମ୍ବନ୍ଧୀତ ବହୁ ଅଲୌକିକ କାହାଣୀ ଆମ ସମାଜରେ ପ୍ରଚଳିତ) ପରମାତ୍ମାଙ୍କ ଉପରେ ତତ୍ତ୍ୱଜ୍ଞ ଜୀବନମୁକ୍ତ ମହାପୁରୁଷଙ୍କର ଯେତିକି ଅଧିକାର ସେହି ଅଧିକାର ସାଧାରଣ ସ୍ତରରେ ଥିବା ବ୍ୟକ୍ତିର ମଧ୍ୟ ରହିଛି । ମହାପୁରୁଷ ତତ୍ତ୍ୱଜ୍ଞ ଏବଂ ସାଧାରଣ ବ୍ୟକ୍ତି ତୁଚ୍ଛ କୁହାଯାଏ କାହିଁକି ? ମହାପୁରୁଷ ତତ୍ତ୍ୱଦିଗକୁ ଧ୍ୟାନ ଦେଇଥାନ୍ତି, ସେଥିପାଇଁ ତାଙ୍କୁ ତତ୍ତ୍ୱଜ୍ଞ କୁହାଯାଏ । ସାଧାରଣ ବ୍ୟକ୍ତି ସତ୍ ତତ୍ତ୍ୱରୁ ବିମୁଖ ହେବା କାରଣରୁ ଏବଂ ସଂସାର ସର୍ବସ୍ୱ ହେବା ହେତୁ ନିଜକୁ ପତିତ ବୋଲି ଭାବିଥାନ୍ତି । ଯଦି ସେ ମଧ୍ୟ ସତ୍ ଦିଗକୁ ଚାଳିତ ହେବାର ପ୍ରୟାସ ଜାରି ରଖନ୍ତି, ତେବେ ଅନନ୍ତ ଜନ୍ମର ପାପ ମଧ୍ୟ ନଷ୍ଟ ହୋଇଯିବ ।

ସନମୁଖ ହୋଇ ଜୀବନ ମୋହିଜବହିଁ ।
ଜନ୍ମ କୋଟି ଅଘ ନାସ ହିଁ ତବ ହିଁ ( ରା.ଚ.ମ ୫।୪୪।୨)

ପରମାତ୍ମ ତତ୍ତ୍ୱ ପ୍ରାପ୍ତି ପାଇଁ ନିରାଶ ହେବା କିମ୍ବା ମୋ ଦ୍ୱାରା ଏହା ଅସଂଭବ ଏପରି ଭାବନା ଆଦୌ ମନରେ ସ୍ଥାନ ଦେବା ଉଚିତ ନୁହେଁ । ବୈଷ୍ଣବୀୟ ବିଚାରରେ ଏହା ଅପରାଧ ଏବଂ ଏହି ଅପରାଧ ସ୍ୱୟଂ ଈଶ୍ୱରଙ୍କ ପ୍ରତି ହୋଇଥାଏ । କାରଣ ଅନନ୍ତ ଜନ୍ମର ପୁଣ୍ୟଫଳ ଏବଂ ଈଶ୍ୱରାଶୀର୍ବାଦ ଫଳରେ ମନୁଷ୍ୟ ଜନ୍ମ ଲାଭ ହୋଇଛି ଏବଂ ସେହି ପରମ ତତ୍ତ୍ୱଙ୍କୁ ଏହି ମନୁଷ୍ୟ ଶରୀରରେ ଜାଣିବା ସହଜ ବା ସଂଭବ ।

ଏଣୁ ମାନବ ଜନ୍ମକଳା । ଯହିଁ ବିଶ୍ରାମ ସର୍ବଲୀଳା ।

କିନ୍ତୁ ମନୁଷ୍ୟ ସଂସାର ପ୍ରତି ମୋହାବିଷ୍ଟ ହୋଇ ତହିଁରେ ଓତପ୍ରୋତଃ ହୋଇଗଲା । ଫଳରେ ପରମତତ୍ତ୍ୱ ଦିଗକୁ ନିଜକୁ ଉନ୍ମୁଖ କରିପାରିଲା ନାହିଁ। ରାଜସ ତାମସ ଗୁଣରେ ଗ୍ରସିତ ହେବାଦ୍ୱାରା ତତ୍ତ୍ୱ ବିମୁଖ କରିବା ସ୍ୱାଭାବିକ ହୋଇଗଲା ।ଅଳୀକ,

ଭଂଗୁର, ପରିବର୍ତ୍ତନଶୀଳ ଏବଂ ବିନାଶଶୀଳକୁ ଶାଶ୍ୱତ ଭାବି ଭ୍ରମରେ ମହାମୂଲ୍ୟ ମାନବ ଜୀବନରେ ଅପଚୟ କରିଚାଲିଲା ।

ଆସୁରୀଂ ଯୋନି ମାପନ୍ନା ମୂଢା ଜନ୍ମନି ଜନ୍ମନି ।

ମାମ ପ୍ରାପ୍ୟୈବ କୌନ୍ତେୟ ତତୋଯାନ୍ତ୍ୟଧମାଂ ଗତିମ୍ ॥(ଗୀତା ୧୬।୨୦)

ହେ ଅର୍ଜୁନ ! ସେହି ମୂଢମାନେ  ମୋତେ ନପାଇ ହିଁ ଜନ୍ମ ଜନ୍ମାନ୍ତରେ ଆସୁରୀ ଯୋନିକୁ ପାଆନ୍ତି । ତାଠାରୁ ବି ନୀଚ ଗତିକୁ ପାଆନ୍ତି ଅର୍ଥାତ୍ ଘୋର ନରକରେ ପଡନ୍ତି । ଏଥିପୂର୍ବରୁ ରଜୋଗୁଣୀ ଏବଂ ତମୋଗୁଣୀ ବ୍ୟକ୍ତି ମାନଙ୍କର ସ୍ୱଭାବ ବଳ, ଦର୍ପ, ଅଭିମାନ, କାମ, କ୍ରୋଧ, ଆତ୍ମପରଭାବ, ଅପରନିନ୍ଦା, ଦ୍ୱେଷ ଇତ୍ୟାଦି କାରଣରୁ ଆସୁରୀ ଯୋନିପ୍ରାପ୍ତ ହୁଅନ୍ତି ଏବଂ ସେମାନେ ବାରମ୍ବାର ମୋଦ୍ୱାରା ଜନ୍ମ ହେବାକୁ ନିକ୍ଷିପ୍ତ ହୋଇଥାନ୍ତି । ମାନବ ଶରୀର ଅନ୍ୟପ୍ରାଣୀମାନଙ୍କ ପରି ଭୋଗଯୋନି ନୁହେଁ । ଏହି ଶରୀରରେ ଆତ୍ମତତ୍ତ୍ୱ ବୋଧ କରିପାରିବା ନିମନ୍ତେ ଶାସ୍ତ୍ର ନିର୍ଦ୍ଦେଶ ରହିଛି । ଏହି ଧାରାରୁ ବିଚ୍ୟୁତ ହୋଇ ସାଂସାରିକ ଭୋଗ କାମନାରେ ନିମଗ୍ନ ହୋଇ ରହିବାକୁ ଆତ୍ମଘାତି କୁହାଯାଇଛି ଯେ କେ ଚାତ୍ମହନୋଜନାଃ (ଇଶୋପନିଷଦ-୩) ଆତ୍ମହତ୍ୟାକାରୀ ଅଧୋଗତିକୁ ପ୍ରାପ୍ତ ହୋଇଥାଏ । ଏଥିରୁ ସ୍ପଷ୍ଟ ହୁଏ କି ମନୁଷ୍ୟ ଜୀବନର ଏକ ପ୍ରମୁଖ ଲକ୍ଷ୍ୟ ଈଶ୍ୱରାନୁଭବ ।

ମନୁଷ୍ୟ ଶରୀର କେବଳ ସଂଗ୍ରହ ଓ ଭୋଗ ନିମନ୍ତେ ହୋଇନାହିଁ ।

ଏହି ତନକର ଫଳ ବିଷୟ ନଭାଇ, ଏହି ତତ୍ତ୍ୱକୁ ନଜାଣି ଯଦି ମାନବ ଶରୀର ଚାଲିଗଲା, ତେବେ ଏ ଜୀବନ ବୃଥା ବା ନିରର୍ଥକ ହୋଇଗଲା । ଏଣୁ ବୁଦ୍ଧିମାନ, ବିଚାରଶୀଳ ବ୍ୟକ୍ତି ଆଜିଠାରୁ ସେହି ମହାନ୍ ତତ୍ତ୍ୱକୁ ଜାଣିବା ନିମିତ୍ତ ପ୍ରସ୍ତୁତ ହୋଇଯାଆନ୍ତୁ ।  ଜିଜ୍ଞାସାର ପ୍ରାବଲ୍ୟ ସୃଷ୍ଟି ହେଲେ ସେହି କ୍ଷଣ ପରମାତ୍ମାପ୍ରାପ୍ତ ହୋଇଯିବେ ।

ଅପି ଚେଦସି ପାପେଭ୍ୟଃ ସର୍ବେଭ୍ୟଃ ପାପକୃତ୍ତମଃ ।

ସର୍ବଂ ଜ୍ଞାନ ପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି । (ଗୀତା ୪।୩୬)

ଯଦି (ତୁମେ) ଅନ୍ୟ ସମସ୍ତ ପାପୀମାନଙ୍କ ଠାରୁ ମଧ୍ୟ ଅଧିକ ପାପ କରିଥିବା ବ୍ୟକ୍ତି ହୋଇଥାଅ, (ତେବେ ମଧ୍ୟ ତୁମେ) ଜ୍ଞାନ ରୂପକ ନୌକାଦ୍ୱାରା ନିଃସନ୍ଦେହରେ ସଂପୂର୍ଣ୍ଣ ପାପ ସମୁଦ୍ରକୁ ପାର ହୋଇଯିବ ।

ସଂସାରର ପାପୀ ମାନଙ୍କୁ ତିନିଭାଗରେ ବିଭକ୍ତ କରାଯାଇପାରେ ପ୍ରଥମତଃ ପାପକୃତ (ପାପୀ), ଦ୍ୱିତୀୟତଃ ପାପକୃତ୍ତର (ପାପୀମାନଙ୍କ ମଧ୍ୟରେ ବଡପାପୀ) ପାପକୃତ୍ତମ

ତୃତୀୟତଃ ପାପୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ପାପୀ । ଯେତେ ବଡ ପାପୀ ହେଉନା କାହିଁକି, ଜ୍ଞାନରୂପୀ ନୌକାରେ ବସି ତୁରନ୍ତ ପାପ ସାଗରରୁ ପାର ହୋଇଯାଏ । ( ଏ ପ୍ରସଙ୍ଗରେ ପଦ୍ମପୁରାଣ ବୈଶାଖ ମହାତ୍ମ୍ୟ ନାରଦ ଅମ୍ବରୀଶ ସଂବାଦ, ଭାଗବତ ଷଷ୍ଠ ସ୍କନ୍ଧ ଅଜାମିଳୋପାଖ୍ୟାନ ।୧।୧ ୫ ଏକାଦଶସ୍କନ୍ଧ ଭଗବତଉଦ୍ଧବ ସଂବାଦ ୧ ୧।୫।୪ ୨ ପ୍ରଭୃତି ଦ୍ରଷ୍ଟବ୍ୟ) ଭଗବତ୍ ଗୀତାର ଅନ୍ୟ କେତେକ ସ୍ଥଳରେ ଜ୍ଞାନ ସମ୍ବନ୍ଧରେ ମହତ୍ତ୍ୱ ପୂର୍ଣ୍ଣ ସିଦ୍ଧାନ୍ତ ଉପସ୍ଥାପିତ ହୋଇଛି । ନହିଜ୍ଞାନେନ ସଦୃଶ ପବିତ୍ର ମିହ୍ୟବିଦ୍ୟତେ, ଜ୍ଞାନେ ପରିସମାପ୍ୟତେ, ଇତ୍ୟାଦି ତେବେ ଜ୍ଞାନକୁ ବୋଧଗମ୍ୟ କରିବା ପାଇଁ ଉପନିଷଦ ମାନଙ୍କରେ ନିର୍ଦ୍ଦେଶିତ ହୋଇଅଛି । ଏହା ବ୍ୟତୀତ ତତ୍ତ୍ୱ ଉପଦେଶର ଅନ୍ୟ କୌଣସି ପ୍ରକାର ହୋଇନପାରେ, ଯଦ୍ୱାରା ପରମାର୍ଥ ଦୃଷ୍ୟା ଜୀବକୁ ସ୍ୱୟଂହିଁ ଏକ ଅଦ୍ୱିତୀୟ ଅଖଣ୍ଡ ସ୍ୱରୂପରେ ଅନାଦି କାଳରୁ ଚାଲିଆସିଥିବା ଏହି ଜଗତଭ୍ରମ ନିବୃତ୍ତ ହୋଇ ପାରିବ ଏବଂ ଜୀବ ସ୍ୱୟଂ ବାସ୍ତବିକ ଅଦ୍ୱିତୀୟ ଅଖଣ୍ଡ ସ୍ୱରୂପରେ ପ୍ରତିଷ୍ଠିତ ହୋଇ ଶାଶ୍ୱତ ଶାନ୍ତିକୁ ପ୍ରାପ୍ତ କରିପାରିବ ।

ଜ୍ଞାନରୂପ ନିତ୍ୟ ବୋଧମୟ ନିଜରୂପ ଆତ୍ମାରେ ପ୍ରତିଷ୍ଠିତ ହୋଇ ଶାଶ୍ୱତ ଶାନ୍ତିମୟ ହୋଇଯିବା ହିଁ ଜୀବର ପରମ ପୁରୁଷାର୍ଥ । ଏହି ପରମ ପୁରୁଷାର୍ଥ ବୋଧ ଉପନିଷଦୀୟ ଜ୍ଞାନ ନିଷ୍ଠାଦ୍ୱାରା ହିଁ ହୋଇପାରିବ ।ତତ୍ତ୍ୱ ନିଷ୍ଠ ନହୋଇ କୈବଲ୍ୟ ପ୍ରାପ୍ତି ହୋଇପାରେନା । ଉପନିଷଦୀୟ ସିଦ୍ଧାନ୍ତ ଦେଖନ୍ତୁ ଋତେ ଜ୍ଞାନାନ୍ନମୁକ୍ତିଃ ।

ମୁଣ୍ଡକ ଉପନିଷଦ ତତ୍ତ୍ୱ ଜ୍ଞାନର ମହିମା ବର୍ଣ୍ଣନ କରି କହିଛନ୍ତି-

ବେଦାନ୍ତ ବିଜ୍ଞାନ ସୁନିଶ୍ଚିତାର୍ଥାଃ<br>
  ସନ୍ନ୍ୟାସ ଯୋଗାଦ୍ୟତୟଃ ଶୁଦ୍ଧସତ୍ତ୍ୱାଃ<br>
ତେବ୍ରହ୍ମଲୋକେଷୁ ପରାନ୍ତକାଳେ<br>
  ପରାମୃତାଃ ପରିମୃଚ୍ୟନ୍ତି ସର୍ବେ । (୩।୨।୬)

ଏହି ଜ୍ଞାନର ସ୍ୱରୂପ ସମ୍ବନ୍ଧରେ ସ୍ପଷ୍ଟ କରିବାକୁ ଯାଇ କୁହାଯାଇଅଛି

ନାହଂ ଦେହୋଽହମାତ୍ମେତି ନିଶ୍ଚୟୋଜ୍ଞାନ ଲକ୍ଷଣମ୍ ।

ମୁଁ ଦେହ ନୁହେଁ, ମୁଁ ହେଉଛି ଆତ୍ମା ଏହିପରି ଯେ ନିଶ୍ଚୟ କରିଥାନ୍ତି ସେ ନିଶ୍ଚୟ ମୁକ୍ତି ହୋଇଥାନ୍ତି । ଏହା ହିଁ ଜ୍ଞାନର ଲକ୍ଷଣ । ଜାବାଳ ଉପନିଷଦ ମଧ୍ୟ ଦୃଢଭାବେ ଏହି ସିଦ୍ଧାନ୍ତକୁ ଦୃଢୀଭୂତ କରିଛି । ମୁଁ ଦୋହ ନୁହେଁ, ମୁଁ ପ୍ରାଣ ନୁହେଁ, ଇନ୍ଦ୍ରିୟ ନୁହେଁ, ମନ ନୁହେଁ, ଜୀବ ନୁହେଁ, ମୁଁ ତ ସଦା ସାକ୍ଷୀ ରୂପ ହୋଇଥିବାରୁ କେବଳ ଆତ୍ମବ୍ରହ୍ମ ହିଁ

ହୋଇଥାଏ । ଏହି ନିଶ୍ଚୟାତ୍ମିକା ବୁଦ୍ଧିକୁ ଜ୍ଞାନ ନିଷ୍ଠା, ତତ୍ତ୍ୱ ନିଷ୍ଠା ଅଥବା ସମାଧି ଯୁକ୍ତ କୁହାଯାଇଥାଏ । ମୈତ୍ରେୟ ଉପନିଷଦରେ ଦେହକୁ ଦେବାଳୟ ଏବଂ ଜୀବକୁ ଶିବ କୁହାଯାଇଛି । ଅଜ୍ଞାନ ରୂପକ ନିର୍ମାଲ୍ୟ ତ୍ୟାଗ କରି ସୋଽହଂ ଭାବେ ପୂଜନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଦେହଭାବକୁ ପରିହାର କରିବା ପ୍ରୟୋଜନ । ଅର୍ଥାତ୍ ଯେଉଁ ଶରୀର ଦୃଶ୍ୟ ହେଉଛି ଏହା ମୁଁ ନୁହେଁ । ମୁଁ ଠାରୁ ଏହା ପୃଥକ । ଯେପରି ଘର । ମୋର ଘର କିମ୍ବା ଏହା ମୋର ଘର । କିନ୍ତୁ ମୁଁ ଘର ନୁହେଁ । ସେହିପରି ଏହା ମୋର ଦେହ କିନ୍ତୁ ମୁଁ ଦେହ ନୁହେଁ । ଏହିପରି ମନସ୍ଥିତିରେ ରହିବାକୁ ଦେହଭାବ ତ୍ୟାଗ କରିବା କୁହାଯାଇଛି ।

ନାହଂ ଦେହୋ ଜନ୍ମମୃତ୍ୟୁ କୁତୋ ମେ ନାହଂ ପ୍ରାଣଃ କ୍ଷୁତ୍‌ପିପାସେ କୁତୋ ମେ
ନାହଂଚେତଃ ଶୋକମୋହ କୁ ତୋ ମେ ନାହଂ କର୍ତ୍ତା ବନ୍ଧ ମୋକ୍ଷ କୁତୋମେ ।୨ ୧।
(ସର୍ବସାରଂ ଉପନିଷଦ)

ମୁଁ ଦେହନୁହେଁ ତେଣୁ ଜନ୍ମ ମୃତ୍ୟୁ କାହିଁ ? ମୁଁ ପ୍ରାଣ ନୁହେଁ, ତେଣୁ କ୍ଷୁଧା ବା ମୋର କାହିଁ ?ମୁଁ ଚେତନ ନୁହେଁ ତେଣୁ ଶୋକ ମୋହ ମୋର ବା ଆସିବ କୁଆଡୁ । ମୁଁ କର୍ତ୍ତା ନୁହେଁ ତେଣୁ କର୍ମଫଳ (ଇଷ୍ଟାନିଷ୍ଟ) ଯାହା ମଧ୍ୟ ପ୍ରାପ୍ତ ହେବ ତାହା କର୍ତ୍ତାକୁ ହିଁ ହେବ । ମୁଁ କର୍ତ୍ତା ହୋଇନଥିବାରୁ ବନ୍ଧ ମୋକ୍ଷ ମୋର ବା କାହିଁ ?

ପ୍ରଚଳିତ ସାମାଜିକ ବା ପାରିବାରିକ ସଂସ୍କାର, ଶିକ୍ଷା ଆଦି ଦ୍ୱାରା ଭ୍ରମାତ୍ମକ ସିଦ୍ଧାନ୍ତକୁ ମନ ମଧ୍ୟରେ ଧରି ବସିଛୁ ଏବଂ ସେହି ବିଚାରକୁ ଛାଡିବାକୁ ପ୍ରସ୍ତୁତ ନୁହେଁ । ଫଳରେ ପରାମାତ୍ମାଙ୍କ ସଂଧାନ ଆମେ ବାହାରେ ଖୋଜିବୁଲୁଛୁ । ସ୍ୱୟଂ ଶାନ୍ତି ସ୍ୱରୂପ ହୋଇ ବାହ୍ୟ, ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ମଧ୍ୟରେ ଆନନ୍ଦ ଋହୁଁଛୁ । ତହିଁରେ ଆନନ୍ଦ ଯେ ନାହିଁ ତାହା ନୁହେଁ କିନ୍ତୁ ତାହା କ୍ଷଣିକ ଏବଂ ପରକ୍ଷଣରେ ତାହା ବିଷାଦର କାରଣ ହେବ । କିନ୍ତୁ ଯିଏ ଶାଶ୍ୱତ ଆନନ୍ଦର ଉତ୍ସ, ଯିଏ ଆମ ପ୍ରତ୍ୟେକଙ୍କ ହୃଦୟରେ ବିରାଜିତ ।ତାଙ୍କ ପ୍ରତି ଆମର ଦୃଷ୍ଟି ଯାଉନାହିଁ କିମ୍ବା ଏଇ କଥାରେ ବିଶ୍ୱାସ ମଧ୍ୟ ହେଉନାହିଁ । ଉପନିଷଦରେ ତନ୍ନ ତନ୍ନ କରି ଯୁକ୍ତି ସହ ଆତ୍ମବୋଧ, ଆତ୍ମସାକ୍ଷାତକାରକୁ ମନୁଷ୍ୟଜୀବନର ଶ୍ରେଷ୍ଠ ପୁରୁଷକାର ଭାବେ ଉପସ୍ଥାପିତ କରାଯାଇଛି ।

ଯେଉଁ ସାଧନା ନିଜେ କରିବା ନିତାନ୍ତ ପ୍ରୟୋଜନ ପାରମ୍ପାରିକ ଶଗଡଗୁଳାରୁ

ବିଚ୍ୟୁତ ପରି ଜଣାପଡୁଥିବାରୁ, ଆମେ ସେହି ଦୁର୍ଗମ ପଥରେ ପଥିକ ହେବାର ସାହସ ସଂଚୟ କରିପାରୁନାହୁଁ । ଫଳତଃ କର୍ତ୍ତା ଭୋକ୍ତାର ବିଭ୍ରମ ଗ୍ରସିତ ହେବା କାରଣରୁ ଆବାଗମ ଚକ୍ରରେ ଘୂରିବୁଲିବା ନିଶ୍ଚୟ କରିନେଇଛୁ । କେତେଜନ୍ମର ସାଧନା ତଥା ଈଶ୍ୱରାଶୀର୍ବାଦ ଯୋଗୁ ଯେଉଁ ଦେବଦୁର୍ଲଭ ମାନବ ଜନ୍ମ ପ୍ରାପ୍ତ ହୋଇଥିଲା ତାହା ଆହାର, ନିଦ୍ରା, ଭୟ, ମୈଥୁନରେ ସମାପ୍ତ ହୋଇଯିବା ପୂର୍ବରୁ ଈଶ୍ୱରାଭିମୁଖୀ ହୋଇ ତତ୍‌ଦିଗରେ ଅଗ୍ରଗତି କରିବା ଆମର ଧ୍ୟେୟ ହେଉ । ଚିନ୍ତନର ଦିଗ ପରିବର୍ତ୍ତନ ହେଉ ।



# ପ୍ରାଣାୟାମର ମୂଳ ଉଦ୍ଦେଶ୍ୟ

ଭାରତୀୟ ଯୋଗବିଦ୍ୟା ଅତ୍ୟନ୍ତ ପ୍ରାଚୀନ, ଏହା କୌଣସି ଆଜିକାଲିର ନୁହେଁ । ସୁପ୍ରସିଦ୍ଧ ଯୋଗ ଦର୍ଶନ, ଷଡ଼ ଦର୍ଶନ ମଧ୍ୟରେ ଏକ ପ୍ରମୁଖ ଦର୍ଶନ । ଯୋଗର ଉଲ୍ଲେଖ ଓ ପ୍ରାରମ୍ଭ ବୈଦିକ ବାଙ୍ମୟରେ ଦେଖିବାକୁ ମିଳିଥାଏ । ଏହି ଜ୍ଞାନବିଜ୍ଞାନ ପ୍ରାଚୀନ କାଳରୁ ପରମ୍ପରାକ୍ରମେ ପ୍ରଚଳିତ ହୋଇଆସୁଅଛି । ଏହା ଆମ ସଂସ୍କୃତି, ଆମର ଏକ ମୂର୍ଦ୍ଧନ୍ୟ ଶାସ୍ତ୍ର ।

ସାଂପ୍ରତିକ କାଳରେ ନିଜକୁ ଯୋଗୀ ଏବଂ ଯୋଗ ଶାସ୍ତ୍ର ବିଶାରଦ କହୁଥିବା ଅଧିକାଂଶ ପ୍ରଚାରକ ପ୍ରାଣାୟାମକୁ ରୋଗ ନିବାରଣ ନିମନ୍ତେ ପ୍ରୟୋଗ କରୁଅଛନ୍ତି । ପ୍ରାଚୀନ ଶାସ୍ତ୍ରରେ ଏହା ରୋଗ ନିବାରଣ ଅର୍ଥରେ ଉଲ୍ଲେଖ ହୋଇଥିବାର ମଧ୍ୟ ସୂଚାଉଛନ୍ତି । କିନ୍ତୁ କୌଣସି ଗ୍ରନ୍ଥକର୍ତ୍ତା ଏହାକୁ କେବଳ ରୋଗ ନିବାରଣ ନିମନ୍ତେ ଉଲ୍ଲେଖ କରିନାହାଁନ୍ତି ।

ଏ ସମ୍ବନ୍ଧରେ ଜଣେ ଯୋଗୀଗୁରୁଙ୍କ ଉକ୍ତି ଉଦ୍ଧାର କରାଯାଉଛି- ନଡିଆ ଗଛକୁ ଆମେ ସମସ୍ତେ ଜାଣନ୍ତି । କୋଙ୍କଣରେ ଏହାକୁ କଳ୍ପ ବୃକ୍ଷ କୁହାଯାଏ । କାରଣ ନଡିଆରୁ ଅନେକ ଉପକାରୀ ବସ୍ତୁ ପ୍ରାପ୍ତ ହୋଇଥାଏ । ଏହାର କୌଣସି ଅଂଶ ନିରୁପଯୋଗୀ ହୋଇନଥାଏ । କିନ୍ତୁ କେବେ କଣ ଶୁଣା ଅଛି କି କେହି କେବେ ପହଁରା (ଝାଡୁ) ସାମଗ୍ରୀ ପ୍ରାପ୍ତି ନିମିତ୍ତନଡିଆ ବଗିଚା କରିଥାଏ ? ସେ ଫଳ ସବୁକୁ ଫୋପାଡି ଦେଇ ଶୁଖିଲା ପତ୍ର ଗୁଡାକୁ ସାଇତି ରଖେ କି ? କିନ୍ତୁ ଯୋଗ ଶାସ୍ତ୍ରକୁ ନେଇ ଆଜିକାଲି ଏପରି ଦେଖାଯାଉଛି । କଣ ଯୋଗଶାସ୍ତ୍ର ବସ୍ତୁତଃ ମୁଖ୍ୟ ଭାବେ ରୋଗ ନିବାରଣ ପାଇଁ କରାଯାଇଥିଲା କି ? ପ୍ରଜ୍ଞାଚକ୍ଷୁ ସନ୍ଥ ଶ୍ରୀ ଗୁଲାବରାବଜୀ ମହାରାଜ ସ୍ୱୀୟ ଗ୍ରନ୍ଥ ସାଧୁବୋଧରେ ଯୋଗାଭ୍ୟାସ ସାଧିବା ପରେ ନାସ୍ତିକ କିଏ ରହେ ? ଏହି ପ୍ରଶ୍ନର ଉତ୍ତରରେ ସେ କହନ୍ତି କି, ଯେ ପୂରା ମାନସିକ ବଳକୁ ଶାରୀରିକ ରୋଗର ନିବାରଣ ପାଇଁ ଖର୍ଚ୍ଚ କରିଦିଏ, ଯେପରି ନିଜ ଆଗରେ ଥୁଆ ହୋଇଥିବା ଖାଦ୍ୟ ଥାଳିକୁ ଛାଡି ଅନ୍ୟର ଥାଳିକୁ ଟାଣି ଆଣୁଥିବା ଶିଶୁକୁ ମା ଯେପରି ଦଣ୍ଡ ଦେଇଥାନ୍ତି, ସେହିପରି

ଔଷଧୀରେ ପରମେଶ୍ୱରୀ ଶକ୍ତି ଥିଲେ ହେଁ ଯେ ରୋଗ ନିବାରଣ ହେତୁ ଯୋଗଶକ୍ତିର ଉପଯୋଗ କରିଥାଏ, ସେ ଭଗବାନଙ୍କର ପ୍ରିୟ ହୋଇନପାରେ ।

ପରମ୍ପରା ଅନୁସାରେ ଯୋଗ ଦର୍ଶନର ପ୍ରଣେତା ମହର୍ଷି ପତଂଜଳିଙ୍କୁ ଶ୍ରୀ ଶେଷଦେବଙ୍କର ଅବତାର ଭାବେ ଗ୍ରହଣ କରାଯାଇଛି । ଅଷ୍ଟାଦଶ ଶତାବ୍ଦୀର ପଣ୍ଡିତ ଶ୍ରୀ ରାମଚନ୍ଦ୍ର ଦୀକ୍ଷିତଙ୍କ ପ୍ରଣୀତ ପତଂଜଳି ଚରିତ ଗ୍ରନ୍ଥରେ ପତଂଜଳିଙ୍କ ସ୍ତୁତିର ଏକ ଶ୍ଳୋକ ଏହିପରି-

ଯୋଗେନ ଚିତ୍ତସ୍ୟ ପଦେନ ବାଚଂ
ମଳଂ ଶରୀରସ୍ୟ ଚବୈଦ୍ୟକେନ ।
ଯୋଽ ପାକରୋତ୍ତଂ ପ୍ରବରଂ ମୁନୀନାଂ
ପତଞ୍ଜଳିଂ ପ୍ରାଞ୍ଜଳି ରାନତୋଽସ୍ମି ॥

ବାଣୀର ଅଶୁଦ୍ଧତା ନରହିଲେ, ବାଣୀ ଶୁଦ୍ଧ ହୋଇଯାଏ । ଶବ୍ଦର ମର୍ମ ବୋଧଗମ୍ୟ ହୋଇଥାଏ, ଶବ୍ଦର ସାମର୍ଥ୍ୟ ବୁଝିହୋଇଥାଏ, ଏଥିପାଇଁ ମହର୍ଷି ପତଂଜଳି ଶେଷରୂପ ଅର୍ଥାତ୍ ନିଜର ମୂଳ ରୂପରେ ବ୍ୟାକରଣ ଶାସ୍ତ୍ର ରଚନା କରିଥିଲେ । ତାଙ୍କନାମରେ ଏକ ବିଖ୍ୟାତ ବ୍ୟାକରଣ ଶାସ୍ତ୍ର ମହାଭାଷ୍ୟ ସୁପ୍ରଚଳିତ । ସେହିପରି ମନର ମଳ ଦୂର ହେବା ଏବଂ ଆତ୍ମ ସ୍ୱରୂପ ପ୍ରାପ୍ତି ନିମିତ୍ତ ମହର୍ଷି ପତଂଜଳି ଯୋଗଶାସ୍ତ୍ର ରଚନା କରିଥିଲେ । ଉତ୍ତମ ଆରୋଗ୍ୟ, ନିର୍ଦ୍ଦୋଷ ଶରୀର ଏବଂ ବ୍ୟାଧି ଦୂର କରିବା ନିମିତ୍ତ ସେ ହିଁ ଚରକାଚାର୍ଯ୍ୟ ଅବତାର ଧାରଣ କରି ଚିକିତ୍ସା ଶାସ୍ତ୍ର ଚରକ ସଂହିତାର ପ୍ରଣୟନ କରିଥିଲେ ।

ଏହି ବିଚାର ଅତ୍ୟନ୍ତ ସ୍ୱାଭାବିକ ଯେ ଯଦି ମହର୍ଷି ପତଂଜଳି ରୋଗ ନିବାରଣ ମାର୍ଗ ସୂଚାଇବା ପାଇଁ ହିଁ ଯୋଗଶାସ୍ତ୍ର ରଚନା କରିଥିଲେ, ତେବେ ପୁନଃ ସେ କାହିଁକି ପୃଥକ ଭାବେ ଚରକ ସଂହିତା ରଚନା କଲେ ବା କରିବାର ଆବଶ୍ୟକତା ଥିଲା ? ଏହାର ଅର୍ଥ ହେଉଛି ବୈଦ୍ୟଶାସ୍ତ୍ର ଏବଂ ଯୋଗଶାସ୍ତ୍ର ଦୁଇଟିର ପ୍ରୟୋଜନ ମୂଳତଃ ଭିନ୍ନ ଥିଲା । ବୈଦ୍ୟଶାସ୍ତ୍ରର କହିବା ହେଉଛି କି ରୋଗ ଚିକିତ୍ସା କରିବା ସମୟରେ କିଛି ତତ୍ତ୍ୱର ପାଳନ କରିବା ଜରୁରୀ । ବୈଦ୍ୟଙ୍କୁ ସର୍ବପ୍ରଥମ ଏହା ଦେଖିବାକୁ ହେବ ଯେ ରୋଗ ମାନସିକ ସ୍ତରରେ ଅଥବା ଶାରୀରିକ ସ୍ତରରେ ଅଛି ? ଯଦି ରୋଗ ଶାରୀରିକ ସ୍ତରରେ ଅଛି ତାହାକୁ ଔଷଧୀଦ୍ୱାରା ଦୂର କରାଯାଇଥାଏ । ଯଦି ଔଷଧୀ ଦ୍ୱାରା ରୋଗ ଦୂର ନହେଲା ତେବେ ଶଲ୍ୟ ଚିକିତ୍ସା ଦ୍ୱାରା ଦୂର କରାଯାଏ । ଏଥିରେ ଯଦି ଠିକ୍ ନହେଲା, ତେବେ ମନ୍ତ୍ର, ତନ୍ତ୍ର ଦୈବତଶାସ୍ତ୍ର ଅଥବା ମନୋବଳ ପ୍ରୟୋଗ କରାଯାଏ । ଏଥିରେ ଯଦି ନୋହିଲା, ତେବେ ମହାତ୍ମାଙ୍କ ସତସଙ୍ଗର କୃପା । ମହାତ୍ମାଙ୍କ ସେବା

କର ଅଥବା ସତ୍ତ୍ୱଗୁଣ ବୃଦ୍ଧି କରିବା ପାଇଁ ଶାସ୍ତ୍ରୋକ୍ତ ଯତ୍ନ କରିବା ବିଧେୟ ।ରୋଗ ଯଦି ମାନ୍‌ସିକ, ଅଥବା ମାନସିକ ସ୍ତରର ତେବେ ବିଶିଷ୍ଟ ଔଷଧୀ ଏବଂ ତନ୍ତ ମନ୍ତ୍ରରେ ଠିକ୍ ହୋଇଥାଏ, ଅନ୍ୟଥା ମହାପୁରୁଷଙ୍କ ଆଶୀର୍ବାଦରେ ଠିକ୍ ହୁଏ । ଶାରୀରିକ ରୋଗକୁ ବ୍ୟାଧି କୁହାଯାଏ ଏବଂ ମନର ରୋଗକୁ ଆଧି କହିଥାନ୍ତି । ଏପରି ଆଧି ଓ ବ୍ୟାଧି ଦୁଇଟି ଯାକ ଉପର୍ଯ୍ୟୁକ୍ତ କ୍ରମରେ ଦୂର ହୋଇଥାନ୍ତି ।

ଆମର ଭୌତିକ ଶରୀର ପଞ୍ଚ ମହାଭୂତରେ ଗଠିତ । ଏହି ମହାଭୂତଙ୍କର ଅସାମଞ୍ଜସ୍ୟ ହେତୁ ତିନିଦୋଷର ଉତ୍ପନ୍ନ ହୋଇଥାଏ । ଆକାଶ ଓ ବାୟୁରୁ ବାତଦୋଷ, ଅଗ୍ନିରୁ ପିତ୍ତ ଦୋଷ, ଅଗ୍ନି ଏବଂ ଜଳରୁ କଫଦୋଷ ସୃଷ୍ଟି ହୋଇଥାଏ । ଏହି ତିନିଦୋଷର ପରସ୍ପର ମିଶ୍ରଣ ହେତୁ ନାନା ବ୍ୟାଧି ଉତ୍ପନ୍ନ ହୁଏ । ଅବ୍ୟବସ୍ଥିତ ଆହାର, ବିହାର, ବିଶ୍ରାମ  ଯୋଗୁ ଏଦୋଷ ବହୁଗୁଣିତ ହୋଇ ଶରୀରର ଆଭ୍ୟନ୍ତରୀଣ କ୍ରିୟାଶୀଳ ଶକ୍ତିରେ ବାଧା ସୃଷ୍ଟି କରନ୍ତି  ଫଳରେ ଶରୀର କାର୍ଯ୍ୟକ୍ଷମ ହେବାର ସାମର୍ଥ୍ୟ ହରାଇବସେ ଏବଂ ଦୀର୍ଘ ମିଆଦି, ଘାତକ ବ୍ୟାଧିରେ ପରିଣତ ହୁଏ ।

ଏଥି ମଧ୍ୟରେ ପ୍ରତ୍ୟେକ ଦୋଷର ଦୁଇଟି ଲେଖାଁ ଗତି ହୁଏ (୧) ସଂଚୟ, ଅର୍ଥାତ୍ ଦୋଷର ନିର୍ଦ୍ଦିଷ୍ଟ ସ୍ଥାନରେ ସଂଚୟ ସଂଗ୍ରହ ହେବା ଏବଂ (୨)ପ୍ରକୋପ ଅର୍ଥାତ୍ ଦୋଷର  ବୃଦ୍ଧି ହେବା କାରଣରୁ ସେହି ସ୍ଥାନରୁ ଅନ୍ୟସ୍ଥାନକୁ ଗତି, ଦୋଷର ଏହି ଦୁଇ ଗତି ହିଁ ଆଧି ବ୍ୟାଧି ଉତ୍ପନ୍ନ କରିଥାନ୍ତି ।

ସେହିପରି ରୋଗ ମଧ୍ୟ ତ୍ରିବିଧ (୧) କର୍ମଜ- କର୍ମ କାରଣରୁ ଉତ୍ପନ୍ନ ବ୍ୟାଧି, (୨) ଦୋଷଜ- ଦୋଷ କାରଣରୁ ଉତ୍ପନ୍ନ ରୋଗ, (୩) ଉଭୟଜ ଅର୍ଥାତ୍ କର୍ମ ଏବଂ ଦୋଷ ଉଭୟ କାରଣରୁ ଉତ୍ପନ୍ନ ରୋଗ । ଏଥିମଧ୍ୟରୁ କର୍ମଜ ରୋଗ ଜପ,ତପ, ମନ୍ତ୍ରଦ୍ୱାରା ଠିକ୍ ହୋଇଥାଏ । ଦୋଷଜ ରୋଗ ଔଷଧୀ ଦ୍ୱାରା ଠିକ୍ ହୁଏ କିନ୍ତୁ ଉଭୟଜ ରୋଗ ନିମିତ୍ତ ଔଷଧୀ ସହିତ, ଜପ-ତପ, ମନ୍ତ୍ର ମଧ୍ୟ ଆବଶ୍ୟକତା ହୋଇଥାଏ ।

ରୋଗ ଶାରୀରିକ ମାନସିକ, ଆଗନ୍ତୁକ ଏବଂ ସ୍ୱାଭାବିକ ଏହିପରି ଋରିପ୍ରକାର ହୋଇଥାଏ । ଶାରୀରିକର ଅର୍ଥ ହେଉଛି, ବାତାଦିଦୋଷରେ ଶରୀରରେ ହେଉଥିବା ରୋଗ । ମାନସିକର ଅର୍ଥ ରଜ-ତମ କାରଣରୁ ମନରେ ସୃଷ୍ଟି ଯାବତୀୟ ରୋଗ । ଆଗନ୍ତୁକର ଅର୍ଥ ହେଉଛି ଅଭିଘାତ ଆଦି, ଦୈବୀୟ ଅପଘାତ ଆଦିରୁ ସୃଷ୍ଟରୋଗ, ସ୍ୱାଭାବିକର ଅର୍ଥ ହେଉଛି ନିଦ୍ରା, କ୍ଷୁଧା, ତୃଷା, ଆଦି ଶାରୀରିକ ଏବଂ ମାନସିକ ଅନୁଭବ ।

ପ୍ରାଚୀନ କାଳରେ ଆମର ଏହି ଚିକିତ୍ସାର ସୂର୍ଯ୍ୟବିଜ୍ଞାନ ନାମକ ଏକ ଦିବ୍ୟ ଶାସ୍ତ୍ର ପ୍ରଚଳିତ ଥିଲା । ସେହି ସୂର୍ଯ୍ୟ ବିଜ୍ଞାନରେ ପ୍ରାଣଚିକିତ୍ସା ନାମକ ଏକ ସ୍ୱତନ୍ତ୍ର ବିଭାଗ

ସମାବିଷ୍ଟ ହୋଇ ଥିଲା । ପ୍ରାଣ ଚିକିତ୍ସାର ଅର୍ଥ ହେଉଛି -ନିଜର ବିଶୁଦ୍ଧ ପ୍ରାଣ ସହାୟତାରେ ଅନ୍ୟର ରୋଗ ଦୂର କରିବା । କିନ୍ତୁ ଏହି ପ୍ରାଣ ଚିକିତ୍ସା କରିବ କିଏ ? ଏଥିପାଇଁ ଶାସ୍ତ୍ରକାର ଅଧିକାରକୁ ସ୍ପଷ୍ଟ କରିଛନ୍ତି । ଏ ପ୍ରସଂଗରେ ଋଷିଙ୍କ ଉକ୍ତି ହେଉଛି- ଯାହାର ନିଜର ଅଙ୍ଗରସ ଅର୍ଥାତ୍ ପ୍ରାଣ ବିଶୁଦ୍ଧ ହୋଇଅଛି, ଯାହାର ମନ ଭଗବଦାର ହୋଇ ଯାଇଅଛି, ଯେ ସର୍ବଦା ଭଗବତଚିନ୍ତନରେ ନିମଗ୍ନ ରହିଛନ୍ତି, ଯେ କାହାରିକୁ ଉପେକ୍ଷା କରନ୍ତି ନାହିଁ । ଏହପିରି ନିରପେକ୍ଷ, ନିଷ୍କାମ, ଆତ୍ମସଂଯମୀ, ମହାତ୍ମାଙ୍କର ଏ ସମସ୍ତ ଆବଶ୍ୟକତା ଥାଇ ମଧ୍ୟ ସେ ପ୍ରାଣ ଚିକିତ୍ସା କହିବାକୁ ଋହୁଁଥିବେ ।

ସାଂପ୍ରତିକ ସମୟରେ ପ୍ରାଚୀନ ପ୍ରାଣ ଚିକିତ୍ସାର ତିନି ବ୍ୟାବହାରିକ ଏବଂ ପରିବର୍ତ୍ତିତ ସ୍ଥୁଳରୂପ କ୍ରମଶଃ ଆମ ନିକଟରେ ଆସି ପହଞ୍ଚିଛି । ଏହାର ଗୋଟିଏ ବିଭାଗ ହେଉଛି ଆକ୍ୟୁପ୍ରେସର ଏବଂ ଆକ୍ୟୁପଙ୍କଚର୍ । ଅନ୍ୟ ବିଭାଗ ପ୍ରାଣର ହିଲିଙ୍ଗ ନାମରେ ପ୍ରଚଳିତ, ରେକି ଆଦି ମଧ୍ୟ ଏହି ପର୍ଯ୍ୟାୟର ଅନ୍ତର୍ଗତ ଏବଂ ତୃତୀୟ ବିଭାଗ ଯୌଗିକ ଚିକିତ୍ସା (ପ୍ରାଣାୟାମ, ମୁଦ୍ରାଆଦି ଦ୍ୱାରା ହେଉଥିବା ଚିକିତ୍ସା) ଭାବରେ ଜଣାଯାଇଥାଏ ।

ଆଜି ଯାହାକୁ ଆମେ ଆକ୍ୟୁପ୍ରେସର ଅଥବା ଆକ୍ୟୁପଙ୍କଚର ନାମରେ ଜାଣନ୍ତି, ଏହି ଶାସ୍ତ୍ର ପ୍ରଥମେ ସୂର୍ଯ୍ୟ ବିଜ୍ଞାନ ଅନ୍ତର୍ଗତ ମର୍ମବିଜ୍ଞାନ ନାମରେ ପ୍ରସିଦ୍ଧଥିଲା । ଯେଉଁ ବ୍ୟକ୍ତିଙ୍କ ଅନ୍ତଃକରଣ ଶୁଦ୍ଧ ହୋଇନାହିଁ, ଯାହାଙ୍କ ପ୍ରାଣ ବିଶୁଦ୍ଧ ନୁହେଁ, କିନ୍ତୁ ଯିଏ ଅନ୍ୟର ରୋଗ ଚିକିତ୍ସା କରିବାକୁ ଅଧିକ ଆଗ୍ରହ ରଖିଥାନ୍ତି, ଏହିପରି ବ୍ୟକ୍ତିଙ୍କୁ ମର୍ମ ବିଜ୍ଞାନ ଚିକିତ୍ସା କରିବାକୁ ଋଷିଙ୍କ ଅନୁମତି ରହିଥିଲା । କିନ୍ତୁ ଏପରି ବ୍ୟକ୍ତିଙ୍କୁ ପ୍ରାଣର ହିଲିଂ ଅଥବା ଯୌଗିକ ଚିକିତ୍ସା ଯେପରି ଉପଋର ପଦ୍ଧତିକୁ ଛୁଇଁବା ପର୍ଯ୍ୟନ୍ତ ଅନୁମତି ନଥିଲା । ଏହାର ମଧ୍ୟ କିଛି ଶାସ୍ତ୍ରୀୟ କାରଣ ରହିଛି । ଏହି ପଦ୍ଧତିରେ କେବଳ ପ୍ରାଣ ସହାୟତାରେ ହିଁ କାହାରି ରୋଗ ଠିକ୍ କରାଯାଇପାରୁଥିଲା । ଏଣୁ ସ୍ୱୟଂ ଉପଋର କର୍ତ୍ତାଙ୍କ ପ୍ରାଣ ଶୁଦ୍ଧ ହେବା ଅତ୍ୟନ୍ତ ଆବଶ୍ୟକ । ଯେଉଁ ପ୍ରାଣରେ ରୋଗବୀଜ ସମାବିଷ୍ଟ ହୋଇଛି, ସେହି ରୋଗୀର ଅଶୁଦ୍ଧପ୍ରାଣକୁ ଉପଋର କର୍ତ୍ତା ଶୁଦ୍ଧ ପ୍ରାଣଦ୍ୱାରା ହିଁ ଶୁଦ୍ଧ କରାଯାଇଥାଏ । ଅନ୍ୟଥା ଏହି ପଦ୍ଧତିରେ ଉପଋର କର୍ତ୍ତାଙ୍କ ପ୍ରାଣ ମଧ୍ୟ କିଛି ମାତ୍ରାରେ ରୋଗୀର ଦୂଷିତ ପ୍ରାଣର ଅଶୁଦ୍ଧିକୁ ସାଙ୍ଗରେ ଘେନି ଫେରି ଆସିଥାଏ । ଏହି ପଦ୍ଧତିକୁ କିପରି ଟାଳି ଦିଆଯାଇପାରିବ, ଏହି ଜ୍ଞାନ ନହୋଇଥିଲେ ସମୟକ୍ରମେ ଏପରି ଚିକିତ୍ସା କରୁଥିବା ବ୍ୟକ୍ତି ସ୍ୱୟଂ ରୋଗଗ୍ରସ୍ତ ହୋଇଥାଏ । ନିଜର ଏହିପରି ଅଶୁଦ୍ଧ ହୋଇଥିବା ପ୍ରାଣକୁ କିପରି ଶୁଦ୍ଧ କରିହେବ ଅଥବା କୌଣସି କେଉଁପରି ଦୋଷକୁ ଟାଳି ଦିଆଯାଇପାରିବ ? ଏହାର ନିର୍ଦ୍ଦିଷ୍ଟ ଏବଂ ଶାସ୍ତ୍ରୀୟ ଜ୍ଞାନ ଆଜିର ଅଧିକାଂଶ ଉପଋର କର୍ତ୍ତା ଅଥବା ରେକିମାଷ୍ଟରଙ୍କଠାରେ ଦେଖିବାକୁ ମିଳେନାହିଁ । କୌଣସି ସ୍ଥାନରେ ଏହା

ଶିକ୍ଷା ଦିଆଯାଉନାହିଁ । ଆତ୍ମସଂରକ୍ଷଣର ପଦ୍ଧତି ଆଜିକାଲି ଲୁପ୍ତ ହୋଇଯାଇଛି । ଉପଚାର କର୍ତ୍ତା ନିଜ ପ୍ରାଣକୁ ଶୁଦ୍ଧ କିପରି କରିବେ ? ଏହାର ଜ୍ଞାନ ପ୍ରାଚୀନ ସୂର୍ଯ୍ୟ ବିଜ୍ଞାନର ପ୍ରାଣଚିକିତ୍ସା ଜାଣିଥିବା ଭିନ୍ନ ଅନ୍ୟ କାହାରିକୁ ଜଣାନାହିଁ ।

ଅଥର୍ବବେଦର ଏକାଦଶ କାଣ୍ଡର ଚତୁର୍ଥ ସୂକ୍ତ ପ୍ରାଣସୂକ୍ତ ନାମରେ ପ୍ରସିଦ୍ଧ । ପ୍ରାଣରେ ଯେଉଁ ରୋଗ ନିବାରକ ଔଷଧୀ ଶକ୍ତି ରହିଛି, ତାହା ଆମକୁ ଦୀର୍ଘ ଜୀବନ ପାଇଁ ପ୍ରାପ୍ତ ହେଉ, ଏହା ଋଷି ନବମ ମନ୍ତ୍ରରେ କହିଛନ୍ତି-

ଯାତେ ପ୍ରାଣ ପ୍ରିୟା ତନୂର୍ଯୋ ତେ ପ୍ରାଣ ପ୍ରେୟସୀ
ଅଥୋ ଯଦ୍‌ଭେଷଜଂ ତବ ତସ୍ୟ ନୋ ଧେହି ଜୀବସେ ।
(ଅଥର୍ବ ୧୧।୪।୯)

ମାତ୍ର ପ୍ରାଣର ଏହି ଔଷଧୀ ଶକ୍ତି, ଆଥର୍ବଣୀ, ଅଂଗୀରସୀ, ଦେବୀ ଏବଂ ମାନୁଷୀ ଏହି ଚାରି ପ୍ରକାର ଔଷଧୀ ଚିକିତ୍ସା ଦ୍ୱାରା ପ୍ରାପ୍ତ କରି ହିଁ ସୁସ୍ଥ ହୋଇଥାଏ । ଈଶ୍ୱର ଇଚ୍ଛାରେ ତଥା ପ୍ରାଣ ପ୍ରେରଣାରେ ହିଁ ଏ ସମସ୍ତ ଚିକିତ୍ସା ପଦ୍ଧତି ଫଳଦାୟୀ ହୋଇଥାଏ ।

ଆଥର୍ବଣୀ ରାଙ୍ଗିରସୀ ଦୈବୀର୍ମନୁଷ୍ୟଜା ଉତ ।
ଔଷଧୟଃ ପ୍ରଜାୟନ୍ତେ ଯଦାତ୍ୱଂ ପ୍ରାଣ ଜିନ୍ୱସି ॥ (ଅଥର୍ବ ୧୧।୪।୧୬)

ଏ ଚିକିତ୍ସା ପଦ୍ଧତି ଯେବେ ଫଳଦାୟୀ ହୁଏନାହିଁ ତେବେ ତାହାକୁ ନିୟତି ବୁଝିବା ଉଚିତ ହେବ । କିନ୍ତୁ ତାହା ନକରି ଜବରଦସ୍ତ ପ୍ରାଣାୟାମ ଯେପରି ଶ୍ରେଷ୍ଠସାଧନର ରୋଗ ନିବାରଣ ହେତୁ ପ୍ରୟୋଗ କରିବା ପରେ ଏହା ଈଶ୍ୱରୀୟ ନିୟମର ପ୍ରତିକୂଳ ସିଦ୍ଧ ହୋଇଥାଏ, ଯାହା ଈଶ୍ୱରଙ୍କୁ ପସନ୍ଦ ହୋଇନଥାଏ ।

ହଠଯୋଗ ଦ୍ୱାରା ବିଶେଷତଃ ହଠ ଯୋଗର ପ୍ରାଣାୟାମ ପ୍ରକ୍ରିୟା ଦ୍ୱାରା ରୋଗର ନିବାରଣ କରିବା ଶାସ୍ତ୍ର ପରମ୍ପରାରେ ଅପ୍ରସସ୍ତ ଭାବେ ଗୃହୀତ । ଶାସ୍ତ୍ରରେ ଏହାର ନିନ୍ଦା ଦେଖିବାକୁ ମିଳିଥାଏ । ଏହାର ଏକ କାରଣ ହେଉଛି ଯେବେ ଏହାଦ୍ୱାରା ସୁଲଭ ସୁରକ୍ଷିତ ଏବଂ ଶସ୍ତା ରୋଗ ନିବାରଣର ପଦ୍ଧତି ସକଳ ଈଶ୍ୱରୀୟ କୃପାରେ ଉପଲବ୍ଧି ହୋଇଥାଏ ଏବଂ ସେହି ପଦ୍ଧତି ଅବଲମ୍ବନ କରିବା ଦ୍ୱାରା କୌଣସି ହାନି ନହେବା । ତେବେ ସେହି ପଦ୍ଧତି ଉପଯୋଗ କାହିଁକି କରାନଯିବ ? କରିବା ଉଚିତ । ଏବେ ଦେଖିବା କୌଣସି ରୋଗ ଯେବେ ଔଷଧୀ ଦେଖାଇବା ମାତ୍ରକେ ଠିକ୍ ହୋଇଥାଏ ତେବେ ଔଷଧୀ ସେବନ କରିବା ତଥା ଏହା ସଂପର୍କୀତ ବ୍ୟୟ କରିବାର ଆବଶ୍ୟକତା ନଥାଏ । ଔଷଧି ଦେଖାଇ ଏହି ରୋଗକୁ ଆରୋଗ୍ୟ କରିବା ଉଚିତ୍ ।

ରୋଗ ଚିକିତ୍ସା ପାଇଁ ଈଶ୍ୱରୀୟ ବିଧାନ ଅନୁସାରେ ଅନ୍ୟ ଉତ୍ତମ ସାଧନ ଉପଲବ୍ଧ ଥାଇ ମଧ୍ୟ, ରୋଗ ନିବାରଣ ହେତୁ ପ୍ରାଣ ଚିକିତ୍ସାର ଉପଯୋଗକୁ ମହାତ୍ମାମାନେ ଗୌଣ ଭାବେ ବିଚାର କରି ଅଛନ୍ତି । ଏହାର ମଧ୍ୟ କିଛି ମହତ୍ତ୍ୱପୂର୍ଣ୍ଣ କାରଣ ରହିଛି । ଶାରୀରିକ, ମାନସିକ, ସ୍ୱାଭାବିକ ଏବଂ ଆଗନ୍ତୁକ ଏ ଚାରିପ୍ରକାର ବ୍ୟାଧି ମୁଖ୍ୟତଃ ଆମର ପୂର୍ବକର୍ମ ଅନୁସାରେ ଏହି ଜନ୍ମରେ ସୃଷ୍ଟି ହୋଇଥାଏ । ଏହାର ଅର୍ଥ ହେଉଛି ଯେ ପୂର୍ବଜନ୍ମରେ ଆମେ ଯେଉଁ ପାପ ଅର୍ଜନ କରିଅଛୁ, ସେହି ପାପ (କର୍ମ)ର ଫଳ ସ୍ୱରୂପ ଏହି ବ୍ୟାଧି ସୃଷ୍ଟି ହୋଇଥାଏ । ଏହି ଜନ୍ମରେ କୌଣସି ରୋଗ ହେବା ଅଥବା କଷ୍ଟ ହେବା, ଆମେ ଦୁଃଖୀ ହେବା ଏହିପରି ଘଟଣା ଘଟିବା, ଏହା ସେହିପାପ କର୍ମର ହିଁ ଫଳ ହୋଇଥାଏ । ଏହିପରି ପାପ ପୂର୍ଣ୍ଣତଃ ଏକ ସଂଗେ ଫଳିତ ହୁଏନାହିଁ । କୌଣସି କର୍ମର ଫଳ ପ୍ରାପ୍ତି ନିମିତ୍ତ ଏକ ବିଶିଷ୍ଟ କାଳ ଅବଧି ଆବଶ୍ୟକ ହୋଇଥାଏ । ଏହାର ମଧ୍ୟ କିଛି ନିୟମ ରହିଛି । କାଳ ସ୍ୱାଭାବିକ ଭାବେ ପ୍ରଭାବିତ ହେଉଛି । କାଳକ୍ରମ ଅନୁସାରେ ଯେବେ ଏହି ବିଶିଷ୍ଟ କର୍ମକୁ ଭୋଗିବା ସମୟ ଆସେ, ତେବେ ସେହି ଯୋଗରେ ବିଶିଷ୍ଟ ରୋଗ ପ୍ରକଟ ହୋଇଥାଏ ତଥା ତାର ରୋଗ ଶରୀର ଉପରେ ଆସିଥାଏ । ତେବେ ଏହି ରୋଗକୁ ହିଁ ପ୍ରତ୍ୟକ୍ଷ ଭୋଗିବାକୁ ପଡିଥାଏ ।

ଏହାର ଅର୍ଥ ହେଉଛି, ରୋଗର ମୂଳବୀଜ ଆମର ଫଳୋନ୍ମୁଖ ପାପ କର୍ମ ହିଁ ହୋଇଥାଏ । ଆମର ସମସ୍ତ ପୂର୍ବକର୍ମ ସଂସ୍କାର ରୂପୀ ବୀଜ ଆମ ପ୍ରାଣର ହୋଇଥାଏ ଏବଂ କାରଣ ଏହିକି ଆମର ପ୍ରାଣ ସତତ ଚଞ୍ଚଳ ହୋଇଥାଏ । ଏହାର ଅସଂଖ୍ୟ କ୍ରିୟାପ୍ରକ୍ରିୟା ମଧ୍ୟ ଚଳମାନ । ପ୍ରାଣ ଚଞ୍ଚଳ ଏବଂ ଅଶୁଦ୍ଧ । ଏଣୁ ଶରୀରର ନାନାପ୍ରକାର ଗତି ବିଧି ପରିଦୃଷ୍ଟ ହୁଏ । ଏହି ଚଞ୍ଚଳ ଏବଂ ଅଶୁଦ୍ଧ ପ୍ରାଣ ରୋଗର ଅନେକ-ବୀଜ ନିଜ ପେଟରେ ରଖି ରହିଥାଏ । ଈଶ୍ୱରୀୟ ସଂକଳ୍ପନା ଅନୁସାରେ କାଳାନ୍ତରରେ ତାହା ତନ୍ମଧ୍ୟରେ ବିଶିଷ୍ଟ-ବୀଜକୁ ଖୋଲିଥାଏ । ପୁନଃ ପ୍ରାଣରୁ ସେହି ରୋଗ ମନ-ଦୋଷ-ଧାତ୍ୱାଦି କ୍ରମରେ ଆମ ଶରୀରକୁ ଆସିଯାଇଥାଏ । ଶେଷରେ ଆମକୁ ଏହାକୁ ପ୍ରତ୍ୟକ୍ଷ ଭୋଗିବାକୁ ହୋଇଥାଏ । କୌଣସି ରୋଗର ଶରୀରରେ ପ୍ରକଟ ହେବାର ଏହି ନିୟମ ବା ରୀତି । ତେବେ ପୁନଃ ପ୍ରାଣାୟାମ ମୂଳତଃ କାହାପାଇଁ ନିର୍ଦ୍ଦେଶିତ ହୋଇଛି । ଏହାକୁ ମଧ୍ୟ ଜାଣିବା । ମହର୍ଷି ପତଂଜଳି କହିଛନ୍ତି କି ଯୋଗଃ ଚିତ୍ତବୃତ୍ତି ନିରୋଧଃ (ଯୋଗସୂତ୍ର ୧।୨) ଚିତ୍ତବୃତ୍ତି ନିରୋଧ ହେଉ, ଚିତ୍ତବୃତ୍ତି ସ୍ଥିର ହେଉ ଏଥିପାଇଁ ଅଷ୍ଟାଙ୍ଗ ଯୋଗର ଚତୁର୍ଥ ଅଂଗ ରୂପେ ପ୍ରାଣାୟାମ ଗୃହୀତ । ଏଣୁ ପ୍ରାଣାୟମର ମୁଖ୍ୟ ହେତୁ ପ୍ରାଣକୁ ସ୍ଥିର କରିବା ଏବଂ ଏହାକୁ ଯୋଗ ମାଧ୍ୟମରେ ହିଁ ସାକ୍ଷାତକାର କରିବା । ଏହାର ଅନ୍ୟ କୌଣସି ପ୍ରଧାନ ହେତୁ ହୋଇନଥାଏ । ପ୍ରାଣାୟାମ କରିବା ଦ୍ୱାରା ଯେତେ ଅଶୁଦ୍ଧ ପ୍ରାଣ ସ୍ଥିର ହୋଇଥାଏ, ତେବେ ସେହି ପ୍ରାଣରେ ନିହିତ

ରୋଗର ବୀଜ ତତ୍କ୍ଷଣ କ୍ଷୀଣ ହୋଇଥାଏ । ଫଳତଃ  ଅନାୟାସରେ କିଛି ସମୟ ପାଇଁ ସ୍ୱାସ୍ଥ୍ୟ ଲାଭ ହେବାର ଦେଖାଯାଇଥାଏ । ଯେ ନିୟମ ପୂର୍ବକ ପ୍ରାଣାୟାମ ଅଭ୍ୟାସ କରନ୍ତି, ତାଙ୍କୁ ସହଜରେ ଦୀର୍ଘକାଳ ଯାବତ୍ ସ୍ୱାସ୍ଥ୍ୟ ଲାଭ ହୋଇଥାଏ । କିନ୍ତୁ ଯେ ଯାବତ ପ୍ରାଣାୟମ ଅଭ୍ୟାସ ଜାରି ରହିଥାଏ । ସେ ଯାବତ ଅଶୁଦ୍ଧ ପ୍ରାଣ ସ୍ଥିର ରହିଥାଏ । ଅଭ୍ୟାସ ଛାଡି ଦେବା ପରେ ହିଁ ସେହି ପ୍ରାଣ ମୂଳ ସଂସ୍କାର ଅନୁସାରେ ପୁନଃ ଚଞ୍ଚଳ ହେବାରେ ଲାଗିଯାଏ । ଚଞ୍ଚଳ ହେବାରୁ ହିଁ ଦବି ରହିଥିବା ରୋଗବୀଜ ପୁନଃ ପୁଷ୍ଟ ହୋଇ କ୍ରିୟାଶୀଳ ହୋଇଥାଏ । ଅର୍ଥାତ୍ ପ୍ରାଣ ଯେବେ ଅଶୁଦ୍ଧ ହୁଏ, ତେବେ ପ୍ରାଣାୟମ କରିବା ରୋଗ ନାଶନର ସ୍ଥାୟୀ ପ୍ରତିକାର ନୁହେଁ । ଯେ ପର୍ଯ୍ୟନ୍ତ କେବଳ କୁମ୍ଭକ ସାଧ ହୋଇନଥାଏ, ଅନ୍ତଃକରଣ ଶୁଦ୍ଧ ସାତ୍ତ୍ୱିକ ହୋଇନଥାଏ, ସେ ପର୍ଯ୍ୟନ୍ତ ପ୍ରାଣର ରୋଗବୀଜ ସମୂଳେ ନାଶ ମଧ ହୁଏନାହିଁ ।

ପ୍ରାଣ ଓ ଚିତ୍ତର ଅଶୁଦ୍ଧ ଅବସ୍ଥାରେ କରାଯାଉଥିବା ପ୍ରାଣାୟାମରେ କେବଳ କିଛି ସମୟ ପାଇଁ ରୋଗବୀଜ ଦବି ରହେ । ତାହା ସଂପୂର୍ଣ୍ଣ ନଷ୍ଟ ହୁଏନାହିଁ । କାଳାନ୍ତରରେ କର୍ମପ୍ରାବଲ୍ୟ ପୁନଃ ପ୍ରକୋପ ଦେଖାଇଥାଏ ।

ନିଃସର୍ଗତ ସେହି ରୋଗବୀଜ କେବଳ ଭୋଗୀବା ଦ୍ୱାରା ହିଁ ସମୂଳେ ନଷ୍ଟ ହୋଇଥାଏ । ଏହାର ଏକ ଏବଂ ଅମୋଘ ଉପାୟ ଏବଂ ଏହା ଭଗବତୀ ଶକ୍ତି ସ୍ୱୟଂ ଏହି ରୋଗବୀଜକୁ ନଷ୍ଟ କରିଥାନ୍ତି, ସେହି ଶକ୍ତି ହିଁ ପ୍ରାଣ ନିର୍ମାଣ କରିଥାଏ । ସେହି କାରଣରୁ କର୍ମ ନିର୍ମିତ ହୋଇଥାଏ । ଏଣୁ ତାହାଙ୍କ ଦ୍ୱାରା ଏହି ରୋଗବୀଜ ନଷ୍ଟ କରିବା ଉଚିତ୍ । ସେହିପରି  ସେହିଶକ୍ତି ସମସ୍ତ ରୋଗର ଉଚ୍ଚାଟନ କରିପାରେ । ଏହି ଶକ୍ତି ଦ୍ୱାରା ଏପରି କରିବା ସବୁଠାରୁ ସୁଗମ ମାର୍ଗ ସିଦ୍ଧ ହୋଇଥାଏ । ଏଥିରେ ଶାସ୍ତ୍ରୀୟ ଦିଗରୁ କୌଣସି ଆପତ୍ତି ବା ବିରୋଧ ହୁଏନାହିଁ । କିନ୍ତୁ ଯଦି ପ୍ରାଣଦ୍ୱାରା ହିଁ ସମୂଳେ ନଷ୍ଟ କରିବାକୁ ହେବ । ତେବେ ସେଥିପାଇଁ ପ୍ରାଣ ଅତ୍ୟନ୍ତ ବିଶୁଦ୍ଧ ପ୍ରତ୍ୟକ୍ଷ ଶକ୍ତିରୂପ ହେବା ଅତ୍ୟାବଶ୍ୟକ ।

ସଦ୍‌ଗୁରୁ କୃପା ହେବାପରେ ସେହି କୃପା ଯୋଗରୁ ଶିଷ୍ୟର କୁଣ୍ଡଳିନୀଶକ୍ତି ଜାଗ୍ରତ ହୋଇଥାଏ । ଏହି ଶକ୍ତି ସାଧନାରେ ଶୁଦ୍ଧିର ନାନା କ୍ରିୟାଦ୍ୱାରା ଧୀରେ ଧୀରେ ସାଧକର ପ୍ରାଣକୁ ହିଁ ଶୁଦ୍ଧ କରିଥାଏ । ଏଥି ସହିତ ତାହା ଏହି ସଂସ୍କାର ରୂପୀ ରୋଗ ବୀଜକୁ ମଧ କ୍ରମଶଃ ଭସ୍ମ କରି ଦେଇଥାଏ । ଯେଉଁ ଯେଉଁ ରୋଗବୀଜକୁ ଏହା ଭସ୍ମ କରି ଦେଇଥାଏ, ସେହି ସେହି ରୋଗ ଆପେ ଆପେ ନଷ୍ଟ ହୋଇଯାଏ । ରୋଗ ନିବାରଣର ଏହା ସର୍ବୋତ୍ତମ ବିଶ୍ୱାସନୀୟ ଏବଂ ସ୍ଥାୟୀ ପଦ୍ଧତି ।

କିନ୍ତୁ ଏହାର ବିପରୀତ ଯଦି କୌଣସି ପ୍ରାଣକୁ ଅଶୁଦ୍ଧ ହୋଇ ମଧ କେବଳ ପ୍ରାଣାୟାମ ଦ୍ୱାରା ରୋଗ ନିବାରଣର  ପ୍ରୟାସ କରିବ, ତେବେ ରୋଗବୀଜ ସମୂଳେ

ନଷ୍ଟ ହେବନାହିଁ । ପ୍ରାଣ ସୂକ୍ଷ୍ମ ହେବା ହେତୁ ସେହି, ରୋଗବୀଜ ତାତ୍‌କାଳୀକ ଅବସ୍ଥାରେ ଦବିଯିବ ଏବଂ କାଳାନ୍ତରରେ ପୁନଃ ପ୍ରକୋପିତ ହେବ । ଏ ସମ୍ବନ୍ଧରେ କୁହାଯାଇ ପାରେ ଯେ ଯଦି ଏହା ପୁଣି ପ୍ରକୋପିତ ହେବ ପୁନଃ ପ୍ରାଣାୟାମ କରିବା । ତେବେ ଦ୍ୱିତୀୟ ଥର କରାଯାଉଥିବା ପ୍ରାଣାୟାମର କୌଣସି ଉପଯୋଗ ହେବନାହିଁ । ଯେଉଁ ରୋଗ ଅଶୁଦ୍ଧ ପ୍ରାଣାୟାମ ଦ୍ୱାରା ଦବିଗଲା ଏବଂ ପୁନଃ ଉପରକୁ ଉଠିଆସିଲା, ତେବେ ତାହା ଅଶୁଦ୍ଧ ପ୍ରାଣ ସହାୟତାରେ ଦ୍ୱିତୀୟଥର ଦବିବ ନାହିଁ, ଏହା ଶାସ୍ତ୍ରୀୟ ନିୟମ ।

ସମୁଦାୟ ପ୍ରଶ୍ନ ଉଠିଥାଏ କି, ସତ୍ୟ ହେଉଛି ଏହା ଯେ କଣ ରୋଗ ନିବାରଣ ପାଇଁ ପ୍ରାଣାୟାମ କରିବା ଉଚିତ୍ ? ଏହାର ନିର୍ଣ୍ଣୟ ଏବଂ ଶାସ୍ତ୍ରୀୟ ଉତ୍ତର ଏହା ହେବ ଯେ କେବଳ ରୋଗ ନିବାରଣ ପାଇଁ ପ୍ରାଣାୟାମର ଉପଯୋଗ କରାଯାଏ ନାହିଁ ।

ଏହାର ଅନ୍ୟ ଏକ ଶାସ୍ତ୍ରୀୟ କାରଣ ହେଉଛି ଯେ ପ୍ରାଣ ହେଉଛି ଜୀବନୀଶକ୍ତି । ପ୍ରାଣ ସହ ଖେଳିବା ମହାବିଷଧର ସର୍ପ ସହ ଖେଳିବା ପରି । ଏହା କୌଣସି ସାଧାରଣ କାମ ନୁହେଁ । ପ୍ରାଣ ସହ ଖେଳିବା ସମୟରେ, ପ୍ରାଣକୁ ନିୟମିତ କରିବା ସମୟରେ ଯଦି ଭୁଲରେ ପ୍ରାଣ ସାମାନ୍ୟ ବିକୃତ ହୋଇଯାଏ, ଗୋଟିଏ ନାଡିରୁ ଅନ୍ୟ ନାଡି ଚାଲିଯାଏ, ଅଥବା ମଝିରେ ଅଟକିଯାଏ, ତେବେ ଏପରି କିଛି ବ୍ୟାଧି ସୃଷ୍ଟି ହୋଇଯାଏ ଯେ ଏହା କୌଣସି ଔଷଧ ଦ୍ୱାରା ଠିକ୍ ହୋଇ ନପାରେ କିମ୍ବା କୌଣସି ସାମାନ୍ୟ ଯୋଗୀ ଦ୍ୱାରା ମଧ୍ୟ ଠିକ୍ ହୋଇପାରେନାହିଁ ।

ଏଣୁ ପ୍ରାଣାୟାମକୁ କୌଣସି ମର୍ମଜ୍ଞ ଅଧିକାରୀ ଗୁରୁଦ୍ୱାରା ଶାସ୍ତ୍ର ଶୁଦ୍ଧ ରୀତିରେ ବୁଝିନେବା, ଏବଂ ଏହାର ପରିଚାଳନାରେ ଅତ୍ୟନ୍ତ ସାବଧାନ ସହକାରେ ଯମ, ନିୟମର ପାଳନ କରି ନିଷ୍ଠାର ସହ କରିବା ଏକାନ୍ତ ଆବଶ୍ୟକ । ଆଜିକାଲି ଏହି ଗୁରୁ ଶିଷ୍ୟ ଦୁର୍ଲଭ ହୋଇଯାଇଛନ୍ତି । ଏହି ହେତୁ ଏହାର ଅନେକ ପ୍ରସଙ୍ଗ ଦେଖାଶୁଣାରେ ଆସିଅଛି କି ମନକୁ ମନ ପ୍ରାଣାୟାମ କରିବାଦ୍ୱାରା ଏହା ସମାପ୍ତ ହୋଇଯାଏ । ପୁନଃ କୌଣସି ଅନିଷ୍ଟ ପରିଣାମ ସମ୍ମୁଖକୁ ଆସିଥାଏ ।

ସାଧାରଣ ସୂଚନାଟିଏ ଏଠାରେ ଦେଉଛି– ନିଜ ସଂପ୍ରଦାୟର ସାଧନା ପ୍ରଣାଳୀରେ ଭ୍ରାମରୀ ପୂର୍ବରୁ କପାଳଭାତି ଅଥବା ଭସ୍ତ୍ରିକା କ୍ରିୟା, ବିଶିଷ୍ଟ ପଦ୍ଧତିରେ କିଛି ସମୟ ପର୍ଯ୍ୟନ୍ତ କରିବାକୁ ହୋଇଥାଏ । ଏହି ପ୍ରକ୍ରିୟାକୁ ପ୍ରାୟତଃ ଶକ୍ତି ହିଁ ସମ୍ଭାଳି ରଖିଥାଏ ଏଣୁ ଏହା ସୁରକ୍ଷିତ ହୋଇଥାଏ । ଯଦି କେହି ଅଧିକ ସମୟ ପର୍ଯ୍ୟନ୍ତ ଭସ୍ତ୍ରିକା କରେ କିଛି ଦିନପରେ ତାର ବ୍ଲଡପ୍ରେସର ବଢିଯିବା ନିଶ୍ଚିତ ।

ପ୍ରାଣକୁ ସମ୍ଭାଳିବା ସହଜ କଥା ନୁହେଁ, ଏହି କାମ ଅତ୍ୟନ୍ତ ସୂକ୍ଷ୍ମ ମାପଚୁପ କଲାପରି । ଏଣୁ ଯେପରି ଇଚ୍ଛା ଢଙ୍ଗରେ ପ୍ରାଣ ସହ ଖେଳନାହିଁ । ଅଶୁଦ୍ଧ ପ୍ରାଣ ମୂଳତଃ

ଚଞ୍ଚଳ ହୋଇଥିବା ହେତୁ ତାକୁ ଆମେ ଯେବେ ସ୍ଥିର କରିବାକୁ ପ୍ରୟାସ କରୁ, ତେବେ ସେ (ତାହା) ଅଧିକ ଚଞ୍ଚଳ ହୋଇଯାଏ, ପ୍ରାଣ ଯେବେ ଉପଯୁକ୍ତ ବିଧିରେ ସ୍ଥିର ନହୁଏ, ତେବେ ବିକୃତ ହୋଇଥାଏ, ପ୍ରାଣ ବିକୃତ ହେଲେ ଯୋଗ ସାଧନକୁ କେବେ ଠିକ୍ ହୋଇନପାରିବା ଆଧିବ୍ୟାଧିର ସମ୍ମୁଖୀନ ହେବାକୁ ପଡିଥାଏ । (ଏ ସମ୍ବନ୍ଧରେ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ରହିଛି, ଦୀର୍ଘ ବର୍ଣ୍ଣନା ହେବା କାରଣରୁ ନିବୃତ୍ତ ହେଲୁ) ।

ଆମ ପ୍ରାଚୀନ ଶାସ୍ତ୍ରରୁ ଏହି ନିଷ୍କର୍ଷ ମିଳିଥାଏ କି ଯୋଗର ଉପଯୋଗ, ପ୍ରାଣାୟାମର ଉପଯୋଗ କେବଳ ଆତ୍ମ ସାକ୍ଷାତକାର ପାଇଁ ହିଁ କରାଯାଇଥାଏ । ରୋଗ ନିବାରଣ ପାଇଁ ନୁହେଁ । କିନ୍ତୁ ଯଦି ବହୁତ ଜରୁରୀ ରହିଛି, ତେବେ ଯୋଗ ସାଧନର ପ୍ରୟୋଗ କରିବାରେ କୌଣସି ବାଧା ନାହିଁ ।

ସାଂପ୍ରତିକ ପରିବର୍ତ୍ତିତ ଜୀବନଶୈଳୀ, ମାନସିକ ଉଦ୍‌ବେଗ, ଈର୍ଷା, ବୃଥା ଅହଂକାର, ପ୍ରତିଦ୍ୱନ୍ଦୀ ମନୋଭାବ, ଅଭିମାନ ଇତ୍ୟାଦି ମାନସିକ ଚାପ ସହିତ ବିଷାକ୍ତ ଖାଦ୍ୟ, ପ୍ରଦୂଷିତ ବାୟୁ, ଜଳ ଏବଂ ସର୍ବୋପରି ପ୍ରାକୃତିକ ଧାରାରୁ ଦୂରକୁ ଯାଇ କୃତ୍ରିମତାକୁ ଆପଣେଇବା ଦ୍ୱାରା ନୂତନ ରୋଗ ସଂଭାର ଘେନି ଆସୁଛି । ଭଗବତ୍ ଦର୍ଶନ ଯେ ଜୀବନର ପରମ ଲକ୍ଷ୍ୟ ଏହା କୌଣସି ଆନୁଷ୍ଠାନିକ ବା ଅଣଆନୁଷ୍ଠାନିକ ଭାବେ ସୂଚନା ପର୍ଯ୍ୟନ୍ତ ଦିଆଯାଉନାହିଁ । ଭୌତିକ ବାଦର ଆକର୍ଷଣ ତାର ଜୟଗାନ ଏବଂ ତଦନୁସାରେ ଜୀବନ ଗଠନ ଦ୍ୱାରା ମାନସିକ ଅସଂତୁଳନ ଓ ଅଶାନ୍ତି ମଧ୍ୟରେ ରାଜା ରଂକ ସମସ୍ତେ ଛନ୍ଦି ହୋଇପଡିଛନ୍ତି । ନିଷ୍କର୍ଷରେ ଆର୍ଯ୍ୟ ଋଷିଙ୍କ ପ୍ରଦର୍ଶିତ ମାର୍ଗ ସଂପର୍କିତ ନିର୍ଦ୍ଦେଶ ଦେଖନ୍ତୁ ।

ସୁସ୍ଥ ଶରୀର, ସୁସ୍ଥମନ ଓ ସୁସ୍ଥ ପ୍ରାଣର ଏକତ୍ରାବସ୍ଥାନକୁ ଆମେ ସୁସ୍ଥବ୍ୟକ୍ତି କହିପାରିବା । ଋଷିବୃନ୍ଦ ଅନେକ ପ୍ରକାର ଯୋଗାସନ (ଅଭ୍ୟାସ) ମଧ୍ୟରୁ ଅଳ୍ପ କିଛି ସୁରକ୍ଷିତ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଅତ୍ୟନ୍ତ ଉପଯୁକ୍ତ ଆସନ ଚୟନ କରି ଏକ ସମୂହ (ପ୍ୟାକେଜ) ନିର୍ମାଣ କରିଛନ୍ତି । ଆସନର ଏହି ବିଶିଷ୍ଟ ସମୂହକୁ ସୂର୍ଯ୍ୟ ନମସ୍କାର କୁହାଯାଇଛି। ସୂର୍ଯ୍ୟ ନମସ୍କାର କାରୀକୁ ବିଶେଷତଃ ସାଧକମାନଙ୍କ ପାଇଁ ଯେତିକି ଶାରୀରିକ ବ୍ୟାୟାମ ଆବଶ୍ୟକ ହୋଇଥାଏ, ତଦନୁପାତିକ ଭାବେ ବ୍ୟାୟାମ ବିଧିବଦ୍ଧଭାବେ ହୋଇଥାଏ । ଏଣୁ ସୂର୍ଯ୍ୟ ନମସ୍କାର ସାଧକଙ୍କ ପାଇଁ ସହଜ, ସରଳ ଏବଂ ଉତ୍କୃଷ୍ଟ ବ୍ୟାୟାମ ।



# ମନୁଷ୍ୟର ମହାନ
# କଲ୍ୟାଣକାରୀ ବିଧାନ- "ଦାନ"

ସଫଳ ଜୀବନ ତାକୁ କୁହାଯିବ, ଯେ ମନୁଷ୍ୟ ଜୀବନ ପ୍ରାପ୍ତି କରି ଆପଣାର କଲ୍ୟାଣ କରିଥାଏ । ଭୌତିକ ଦୃଷ୍ଟିରୁ ଜୀବନରେ ସାଂସାରିକ ସୁଖ ସମୃଦ୍ଧି ଲାଭକୁ ଆମେ ଆପଣାଇ କଲ୍ୟାଣ ମାନିଥାଉ, କିନ୍ତୁ ବାସ୍ତବ କଲ୍ୟାଣ ହେଉଛି ଜନ୍ମମରଣ ଚକ୍ରରୁ ମୁକ୍ତ ହେବା ଅର୍ଥାତ୍ ଭଗବତ୍ ପ୍ରାପ୍ତି । ମହର୍ଷି ଗଣ ଏ ସଂପର୍କରେ ସମସ୍ତ ଯୁଗରେ ଏହାର ଉପାୟ ସୂଚାଇଛନ୍ତି । ଚାରି ଯୁଗରେ ପୃଥକ ପୃଥକ ଚାରିଗୋଟି ତତ୍ତ୍ୱ ବା ବିଚାରର ସାଧନା ଦେଖାଯାଏ । ମାନବ ଜୀବନର ସଫଳତା ନିମିତ୍ତ ଧର୍ମଶାସ୍ତ୍ରର ଆଦ୍ୟ ପ୍ରଣେତା ମହର୍ଷି ମନୁ କହିଛନ୍ତି-

ତପଃ ପରଂ କୃତଯୁଗେ ତ୍ରେତାୟାଂ ଜ୍ଞାନମୁଚ୍ୟତେ ।

ଦ୍ୱାପରେ ଯଜ୍ଞ ମେବାହୁ ଦାନମେକଂ କଲୌଯୁଗେ ॥

ସତ୍ୟଯୁଗରେ ତପ, ତ୍ରେତୟାରେ ଜ୍ଞାନ, ଦ୍ୱାପରରେ ଯଜ୍ଞ ଏବଂ କଳିରେ ଦାନ ମନୁଷ୍ୟର କଲ୍ୟାଣର ସାଧନ ।

ତୈତ୍ତିରୀୟ ଉପନିଷଦରେ ଏ ସଂବଧରେ କଥିତ ଅଛି- ଶ୍ରଦ୍ଧୟା ଦେୟମ୍ । ଅଶ୍ରଦ୍ଧୟା'ନା' ଦେୟମ୍ । କ୍ରିୟା ଦେୟମ୍, ହ୍ରିୟାଦେୟମ୍, ଭିୟା ଦେୟମ୍, ସଂବିଦା ଦେୟମ ।

ଅର୍ଥାତ୍ ଦାନ ଶ୍ରଦ୍ଧା ପୂର୍ବକ କରିବା ଉଚିତ୍ । ଶ୍ରଦ୍ଧା ବିନା କରିବା ଅନୁଚିତ୍ । ଶ୍ରଦ୍ଧେୟାଦେୟମା ଅଶ୍ରଦ୍ଧୟା ଅଦେୟମ୍ । ନିଜର ସାମର୍ଥ୍ୟ ଅନୁସାରେ ଉଦାରତାପୂର୍ବକ ଦେବା ଉଚିତ୍ । (ଶ୍ରିୟାଦେୟମ୍) ବିନମ୍ରତା ପୂର୍ବକ ଦେବା ଉଚିତ୍ (ହ୍ରିୟାଦେୟମ୍) ଦାନ ନକଲେ ମୋତେ ପରଲୋକରେ ମିଳିବନାହିଁ, କିମ୍ବା ସାମର୍ଥ୍ୟ ଥାଇ ନ ଦେଲେ

ଈଶ୍ୱର କୋପ ଭୟରେ ଦେବା ଉଚିତ (ଭିୟାଦେୟମ୍) ପ୍ରମାଦରେ ଭୟରେ କିମ୍ବା ଉପେକ୍ଷାରେ ନଦେଇ ଜ୍ଞାନପୂର୍ବକ, ବିଧିପୂର୍ବକ, ଆଦର ପୂର୍ବକ ଏବଂ ଉଦାରତାପୂର୍ବକ ନିଃସ୍ୱାର୍ଥ ଭାବରେ ଦେବା ଉଚିତ୍ (ସଂବିଦା ଦେୟମ୍) ଯେପରି ଦିଅ କିନ୍ତୁ ଦେବା ଉଚିତ୍ । ମାନବ ଜାତି ପାଇଁ ଦାନ ପରମ ଆବଶ୍ୟକ । ଦାନ ବିନା ମାନବର ଉନ୍ନତି ଅବରୁଦ୍ଧ ହୋଇଯାଏ ।

ବୃହଦାରଣ୍ୟକ ଉପନିଷଦର ଆଖ୍ୟାନ ଅନୁସାରେ ଦେବ, ମାନବ ଦାନବ ବ୍ରହ୍ମାଙ୍କ ନିକଟକୁ ଯାଇ ନିଜ ନିଜ ଉନ୍ନତିର ବିଧାନ କାମନା କରିଥିଲେ । ପ୍ରଜାପତି ବ୍ରହ୍ମା ଗୋଟିଏ ମାତ୍ର ଅକ୍ଷର "ଦ" କହିଥିଲେ । ଦେବତାମାନେ ଏହି ଅକ୍ଷରକୁ ଇନ୍ଦ୍ରିୟଦମନ, ଅସୁରମାନେ 'ଦ' ଅକ୍ଷରକୁ ଦୟା ଏବଂ ମାନବମାନେ 'ଦ' ଅକ୍ଷର ଦ୍ୱାରା ଦାନ କରିବାର ଉପଦେଶ ଦେଇ ପ୍ରତ୍ୟେକଙ୍କ କଲ୍ୟାଣର ସୂତ୍ର ସୁଝାଇଛନ୍ତି । ଅତଃ ମାନବ ଆପଣାର ଅଭ୍ୟୁଦୟ ପାଇଁ ଦାନ କରିବା ଉଚିତ୍ ।

ଦାନପାଇଁ ସ୍ଥାନକାଳ ଏବଂ ପାତ୍ର ବିଚାର- ଶାସ୍ତ୍ରର ଏ ସଂବଧରେ ବ୍ୟାପକ ବିଚାର ହୋଇଛି । ଗୀତାରେ ଏ ସଂବଂଧିତ ଉକ୍ତି ଦେଖନ୍ତୁ -

ଦାତବ୍ୟମିତି ଯଦ୍ଦାନଂଦୀୟତେଽନୁପକାରିଣେ

ଦେଶେ କାଳେଚ ପାତ୍ରେଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ॥ (ଗୀତା ୧୭।୨୦)

ଦାନ କୌଣସି ଶୁଭସ୍ଥାନରେ କାଶୀ, କୁରୁକ୍ଷେତ୍ର, ଅଯୋଧ୍ୟା, ମଥୁରା, ଦ୍ୱାରକା, ଶ୍ରୀକ୍ଷେତ୍ର, ବଦରୀ ନାରାୟଣ, ଗଂଗୋତ୍ରୀ, ଯମୁନେତ୍ରୀ, କେଦାରନାଥ, ହରିଦ୍ୱାର, ପ୍ରୟାଗ, ପୁଷ୍କର ଆଦି ତୀର୍ଥରେ ଗଂଗାଗର୍ଭ, ଗଂଗାତଟ, ମନ୍ଦିର, ଗୋଶାଳା, ପାଠଶାଳା ଏକାନ୍ତସ୍ଥାନ, ଅଥବା ସୁବିଧା ଅନୁସାରେ ନିଜଘରେ କେଉଁଠାରେ ପବିତ୍ର ସ୍ଥଳରେ କରିବା ଉଚିତ୍ ।

କାଳ- ଶୁଭକାଳରେ ଦାନଦେବା ଉଚିତ୍ । ଏପରିକି ଦାନ, ମନରେ ଉତ୍ସାହହେବା ସମୟରେ ଦେବା ଉଚିତ୍ । କାରଣ ଜୀବନର ଅବଧି କାହାକୁ ବା ଜଣା ? କିନ୍ତୁ ଶାସ୍ତ୍ରରେ ପୁଣ୍ୟକାଳର ନିର୍ଦ୍ଦେଶ ରହିଛି । ଅମାବାସ୍ୟା ପୂର୍ଣ୍ଣମା, ସଂକ୍ରାନ୍ତି, ତିଥିକ୍ଷୟ ଦିବସ, ବିଷୁବ, ତୁଳା ସଂକ୍ରାନ୍ତି, କାର୍ତ୍ତିକ ଶୁକ୍ଳ ନବମୀ (ସତ୍ୟଯୁଗ) ଅକ୍ଷୟତୃତୀୟା (ତ୍ରେତା), ମାଘ ଅମାବାସ୍ୟା (ଦ୍ୱାପର) ଭାଦ୍ର କୃଷ୍ଣତ୍ରୟୋଦଶୀ (କଳିଯୁଗର ଆରମ୍ଭ ଦିନ) ଏ ଗୁଡିକ ଯୁଗ ତିଥି ଏବଂ ଉକ୍ତ ତିଥିରେ ଦାନ ଫଳ ଅକ୍ଷୟ ହୋଇଥାଏ । କିନ୍ତୁ ଏପରି କିଛି ଦାନ ରହିଛି, ଯେଉଁଠି କାଳ ବା ମୁହୂର୍ତ୍ତକୁ ଅପେକ୍ଷା କରାଯାଏ ନାହିଁ ଯଥା

ମୃତ୍ୟୁ କାଳୀନଦାନ, (ପଞ୍ଚମହାଦାନ, ଅଷ୍ଟମହାଦାନ, ପଞ୍ଚଧେନୁ ଋଣାପନୋଦ, ପାପାପନୋଦ, ଉତକ୍ରାନ୍ତିଧେନୁ, ବୈତରଣୀ ଧେନୁ ତଥା ମୋକ୍ଷଧେନୁ କରିବାର ବିଧି । ମୃତ୍ୟୁପରେ ପିଣ୍ଡଦାନ ଏବଂ ଶଯ୍ୟାଦାନ ଆଦିରଦାନ ମଧ୍ୟ ସମୟରେ କରାଯାଇଥାଏ । ଅନ୍ନଦାନ ଏବଂ ଜଳଦାନର କୌଣସି ସମୟସୀମା ନାହିଁ । କୌଣସି ସମୟରେ ଯାଚକ ବ୍ୟକ୍ତିର ଉପସ୍ଥିତି ହେଲାପରେ ତତ୍‌କାଳ ଏହି ଦାନ ଦିଆଯାଇଥାଏ ।

ପାତ୍ର- ଶାସ୍ତ୍ରରେ ଦେଶ କାଳପରି ପାତ୍ରର ମଧ୍ୟ ବିଚାର କରାଯାଇଛି । ସତ୍‌ପାତ୍ରରେ ଦିଆଯାଇଥିବା ଦାନ ସଫଳ ଏବଂ ସାତ୍ତ୍ୱିକ ହୋଇଥାଏ । ମହର୍ଷି ଯାଜ୍ଞ ବଳକଙ୍କ ମତରେ ଦାନ ପାଇଁ ଅନ୍ୟବର୍ଣ୍ଣ ଅପେକ୍ଷା ବ୍ରାହ୍ମଣ ଶ୍ରେଷ୍ଠ, ତନ୍ମଧ୍ୟରେ ଯେ କର୍ମ ନିଷ୍ଠ ସେ ଶ୍ରେଷ୍ଠରେ କର୍ମନିଷ୍ଠ ମାନଙ୍କ ମଧ୍ୟରେ ଯେ ବିଦ୍ୟା ଏବଂ ତପସ୍ୟାରତ, ତଥା ବ୍ରହ୍ମତତ୍ତ୍ୱ ବେତ୍ତା ଶ୍ରେଷ୍ଠତମ । ଅପାତ୍ରରେ ଦାନଦେବାପାଇଁ ପ୍ରତିକୂଳ ବିଚାର ମଧ୍ୟ ଦେଖାଯାଏ । ଅପାତ୍ରେ ଦୀୟତେ ଦାନଂ ଦାତାରଂ ନରକଂ ନୟେତ୍ । ଅର୍ଥାତ୍ ଅପାତ୍ରରେ ଦିଆଯାଉଥିବା ଦାନ ଦାତାକୁ ନରକକୁ ନିଏ । ସୁତରାଂ ଦାନଦେବା ସମୟରେ ସଜାଗ ଏବଂ ସତର୍କ ରହିବା ବିଧି । ଦାନ ଧର୍ମର ଚାରି ବିଭାଗ- ଭଗବାନ ବ୍ୟାସ ଦାନଧର୍ମକୁ ଚାରିଭାଗରେ ବିଭକ୍ତ କରିଅଛନ୍ତି ।

(୧) ନିତ୍ୟଦାନ- ପ୍ରତ୍ୟେକ ବ୍ୟକ୍ତି ଆପଣା ସାମର୍ଥ୍ୟ ଅନୁସାରେ କର୍ତ୍ତବ୍ୟ ବୁଦ୍ଧିରେ ନିତ୍ୟ କିଛି ନା କିଛି ଦାନ କରିବା ଉଚିତ୍ ।

(୨) ନୈମିତ୍ତିକ ଦାନ- ଜ୍ଞାନ ଅଜ୍ଞାତ କୃତ ପାପର ପ୍ରଶମନ ହେତୁ ତୀର୍ଥ ଆଦି ସ୍ଥଳରେ ଏବଂ ଅମାବାସ୍ୟା, ପୂର୍ଣ୍ଣିମା, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟୋପରାଗ, ଆଦି ପୁଣ୍ୟକାଳରେ ଯେଉଁ ଦାନ କରାଯାଏ ତାହା ନୈମିତ୍ତିକ ଦାନ ।

(୩) କାମ୍ୟଦାନ- କୌଣସି କାମନା ପୂର୍ତ୍ତି ପାଇଁ ଐଶ୍ୱର୍ଯ୍ୟ, ଧନ-ଧାନ୍ୟ, ପୁତ୍ର ପୌତ୍ର ଆଦିର ପ୍ରାପ୍ତି ତଥା ନିଜର କିଛି କାର୍ଯ୍ୟ ସିଦ୍ଧି ହେତୁ ଯେଉଁ ଦାନ କରାଯାଏ, ତାହା କାମ୍ୟଦାନ ।

(୪) ବିମଳ ଦାନ- ଭଗବତ୍ ପ୍ରୀତି ପ୍ରାପ୍ତି କରିବା ନିମନ୍ତେ ନିଷ୍କାମ ଭାବରେ, ଲୌକୀକ ସ୍ୱାର୍ଥ ବିନା, ବ୍ରହ୍ମଜ୍ଞାନୀ ଅଥବା ସତ୍‌ପାତ୍ରରେ ଦିଆଯାଇଥିବା ଦାନକୁ ବିମଳଦାନ କୁହାଯାଏ । ଦେଶକାଳ ବିଚାରି କିମ୍ବା ନିତ୍ୟ ଦାନ କରାଯାଉଥିଲେ ସର୍ବାଧିକ କଲ୍ୟାଣକାରୀ ହୋଇଥାଏ । ଏହା ସର୍ବଶ୍ରେଷ୍ଠ ଦାନ ।

ଦାନରହସ୍ୟ- ସ୍କନ୍ଦ ପୁରାଣରେ ଦାନର ରହସ୍ୟ ସଂପର୍କରେ ଉଲ୍ଲେଖ ଅଛି-

ଦ୍ୱିହେତଃ ଷଡାଧିଷ୍ଠାନଂ ଷଡଙ୍ଗଚ ଦ୍ୱିପାକ ଯୁକ୍ ।

ଚତୁଃପ୍ରକାର ତ୍ରିବିଧଂ ତ୍ରିନାଶଂ ଦାନ ମୁଚ୍ୟତେ । (ସ୍କନ୍ଦ ପୁରାଣ ମାହେଶ୍ୱର)

ଅର୍ଥାତ୍ ଦାନର ଦୁଇହେତୁ, ଛ ଅଧିଷ୍ଠାନ, ଛ ଅଂଗ, ଦୁଇ ପ୍ରକାର ଫଳ ଚାରିପ୍ରକାର ତିନିଭେଦ ଏବଂ ତିନି ବିନାଶ କାରଣ ରହିଛି ।

ଦାନର ଦୁଇହେତୁ- ଶ୍ରଦ୍ଧା ଏବଂ ଶକ୍ତି କୁହାଯାଏ । ଦାନର ମାତ୍ରା ନୁହେଁ କିନ୍ତୁ ଶ୍ରଦ୍ଧା ଏବଂ ଶକ୍ତି ହିଁ ଫଳର ବୃଦ୍ଧି ବା କ୍ଷୟର କାରଣ ହୋଇଥାଏ ।

ଅଧିଷ୍ଠାନ (୧) ଧାର୍ମିକ ଭାବନାରେ କୃତଦାନ ଧର୍ମଦାନ (୨) ପ୍ରୟୋଜନ ବଶରେ ଦାନକୁ ଅର୍ଥଦାନ କୁହାଯାଏ, (୩) ସୁରାପାନ ଏବଂ ଜୁଆ ପ୍ରସଙ୍ଗରେ ଅନଧିକାରୀକୁ ଦାନ କାମଦାନ (୪) ମାଗିବା ଲୋକ ସର୍ବ ସମକ୍ଷରେ ମାଗିବା କାରଣରୁ ଲଜ୍ଜାବଶତଃ ପ୍ରତିଜ୍ଞା କରି ଦିଆଯାଉଥିବା ଦାନ ଲଜ୍ଜାଦାନ (୫) ଶୁଭ ସମାଚାର ଶୁଣି ଯେଉଁ ଦାନ ଦିଆଯାଏ ତାହା ହର୍ଷଦାନ (୬) ନିନ୍ଦା, ହିଂସା ଏବଂ ଅନର୍ଥ ଭୟରେ ଯେଉଁ ଦାନ ଦିଆଯାଏ ତାହା ଭୟଦାନ ।

ଦାନର ଛ ଗୋଟି ଅଂଶ -ଦାନକର୍ତ୍ତା, ପ୍ରତିଗ୍ରାହୀ, ଶୁଦ୍ଧି, ଦାନର ପଦାର୍ଥ, ଦେଶ କାଳ ଏହା ଦାନର ଛଅଂଗ କୁହାଯାଇଛି ।

(୧) ଦାନକର୍ତ୍ତା- ଧର୍ମାତ୍ମା ଦାନର ଅଭିଳାଷ ରଖିବା ବ୍ୟକ୍ତି, ବ୍ୟସନରହିତ, ପବିତ୍ର କର୍ମରେ ଜୀବିକା ଚଳାଉଥିବା ହେବା ଉଚିତ୍ ।

(୨) ପ୍ରତିଗ୍ରହୀତା -ସାତ୍ତ୍ୱିକ, ଦୟାଳୁ, କୁଳ , ବିଦ୍ୟା, ଆଚାର ଶ୍ରେଷ୍ଠ ଏବଂ ଶୁଦ୍ଧଜୀବନ ବୃତ୍ତି କରୁଥିବା ହୋଇଥିବା ଦରକାର ।

(୩) ଶୁଦ୍ଧିର ଅର୍ଥ -ଦାତା ପ୍ରତିଗ୍ରହୀତାଙ୍କ ପ୍ରତି ପ୍ରେମ ଅନୁରାଗ ରଖିବା ଉଚିତ୍ । ଦୋଷ ଦୃଷ୍ଟି ଦେଖିବା ଅନୁଚିତ୍ ।

(୪) ଦାନର ପଦାର୍ଥ ବା ଧନ- ନିଜର ପ୍ରଯତ୍ନ ଉପାର୍ଜିତ ହେବା ଦରକାର ଅନ୍ୟକୁ ପ୍ରତାରିତ ବା ଠକେଇଧନ ଅଧର୍ମ ବିତ୍ତ ଦାନପାଇଁ ଅନୁପଯୁକ୍ତ ।

(୫) ଦେଶ ଏବଂ (୬) କାଳ- ଯେଉଁ ପଦାର୍ଥ ଯେଉଁ ଦେଶରେ ଦୁର୍ଲଭ ସେହିଦାନ ଶ୍ରେଷ୍ଠ ହୋଇଥାଏ । ଦାନର ଚାରି ପ୍ରକାର -ଧ୍ରୁବ, ତ୍ରିକ, କାମ୍ୟ ଏବଂ ନୈମିତ୍ତିକ ଏ ଚାରିଦାନର ପ୍ରକାର କୁହାଯାଇଛି ।

(କ) ସର୍ବସାଧାରଣ ଉପକାର ଯଥା ବଗିଚା ଲଗାଇବା, ଧର୍ମଶାଳା ନିର୍ମାଣ, ପାନୀୟ ଜଳର ବ୍ୟବସ୍ଥା କରିବା ଇତ୍ୟାଦି ପାଇଁ ଦିଆଯିବା ଦାନକୁ ଧ୍ରୁବ କୁହାଯାଏ । (ଖ) ପ୍ରତିଦିନ ଦିଆଯାଉଥିବା ଦାନକୁ ତ୍ରିକା କୁହାଯାଏ ।

(ଗ) ଇଛା ପୂର୍ତ୍ତି ପାଇଁ ପ୍ରଦତ୍ତଦାନକୁ କାମ୍ୟ ଦାନ କୁହାଯାଏ । (ଘ) ନୈମିତ୍ତିକ ଦାନ ତ୍ରିବିଧ (୧) ସଂକ୍ରାନ୍ତି ଗ୍ରହଣ ଇତ୍ୟାଦି ସମୟ ତିଥିରେ କରାଯାଉଥିବା ଦାନ, (୨)ଶ୍ରାଦ୍ଧ ଇତ୍ୟାଦି ଅବସରରେ ଦିଆଯାଉଥିବା ଦାନ, (୩) ବିଦ୍ୟାପ୍ରାପ୍ତି ଏବଂ ସଂସ୍କାର ଗୁଣ ଅପେକ୍ଷାରେ କରାଯାଉଥିବା ଦାନ ଗୁଣାପେକ୍ଷ ନୈମିତ୍ତିକ ଦାନ ।

ଦାନର ବହୁବିଧ ରୂପ- ବସ୍ତୁତଃ ଦାନର ରୂପ ଅନେକ । କିଛିତ ପ୍ରତ୍ୟକ୍ଷ ଦାନଯାହା ଆମକୁ ଦୃଶ୍ୟ ହୁଏ । ନିଜ ଅର୍ଜିତ ଧନରୁ ତ୍ୟାଗ କରିବାକୁ ହୋଇଥାଏ । ଯେପରି ଅନ୍ନଦାନ, ଜଳଦାନ,ବସ୍ତ୍ରଦାନ, ଭୂମିଦାନ, ଗୃହଦାନ, ସ୍ୱର୍ଣ୍ଣଦାନ, ଶଯ୍ୟାଦାନ, ତୁଳାଦାନ, ପିଣ୍ଡଦାନ, ଆରୋଗ୍ୟଦାନ, ଗୋଦାନ ଇତ୍ୟାଦି । ଏହି ଦାନଗୁଡିକର ସ୍ୱକୀୟ ମହତ୍ତ୍ୱ ରହିଛି । ଏହାର ଦେବତା ମଧ୍ୟ ପୃଥକ ପୃଥକ । ସବୁପାଇଁ ମନ୍ତ୍ର ମଧ୍ୟ ସ୍ୱତନ୍ତ୍ର । କିନ୍ତୁ ଏପରି କିଛି ଦାନ ରହିଛି, ଯାହାପାଇଁ କୌଣସି ପ୍ରକାର ଧନ ଖର୍ଚ୍ଚ କରିବାକୁ ପଡେନାହିଁ । ଏହି ପ୍ରକାରଦାନ ମଧ୍ୟ ବହୁତ ମହତ୍ତ୍ୱ ରଖିଥାଏ । ଯଥା-

(୧) ମଧୁର ବଚନ ଦାନ- ଯଦି କୌଣସି ବ୍ୟକ୍ତି କଷ୍ଟରେ ରହିଛି, ତେବେ ତାକୁ ମଧୁର ବଚନ ଦ୍ୱାରା ସାନ୍ତ୍ୱନା ପ୍ରଦାନ କରାଯାଇପାରେ । କେବେ କଠୋର ବଚନ ଶ୍ରବଣରେ ଆନ୍ତରୀକ ପୀଡା ହୋଇଥାଏ, କିନ୍ତୁ ମଧୁର ବଚନ ସମସ୍ତଙ୍କୁ ପ୍ରିୟ ଲାଗେ ଏବଂ ଏଥିପାଇଁ ପଇସା ଖର୍ଚ୍ଚ ହୋଇନଥାଏ । ମଧୁର ବଚନରେ ସମସ୍ତଙ୍କୁ ପ୍ରସନ୍ନତା ମିଳିଥାଏ ।

(୨) ପ୍ରେମଦାନ- ବାସ୍ତବ ପ୍ରେମ ତ୍ୟାଗରେ ସମାହିତ । ଯଦି ଆମେ ଅନ୍ୟ ପ୍ରତି ପ୍ରେମଭାବ ରଖୁ ତେବେ ପ୍ରୟୋଜନ ହେଲେ ତ୍ୟାଗ କରିବାର ତତ୍‌ପରତା ରହିଥାଏ । ସମସ୍ତଙ୍କ ପ୍ରତି ପ୍ରେମଭାବ ରଖିବା ବାସ୍ତବରେ ଈଶ୍ୱରଙ୍କୁ ପ୍ରେମ କରିବା ।

(୩) ଆଶ୍ୱାସନା ଦାନ- କେବେ ସଂକଟ ଗ୍ରସ୍ତ ବ୍ୟକ୍ତି ଜୀବନର ଆଶ୍ୱାସନାର ମହତ୍ତ୍ୱ ଖୁବ୍ ବେଶୀ । କେବେ ସମାଧାନର ସୂତ୍ର ନପାଇ ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ ହୋଇଯାଆନ୍ତି । ଏପରି ସ୍ଥିତିରେ ସହାୟତାର ଆଶ୍ୱାସନା ଦେଇ ଅଥବା ସତ୍ ପ୍ରେରଣା ଦେଇ ତାକୁ ତହିଁରୁ ନିବୃତ୍ତ କରାଇ ପୁନଃ ସଂସାର ଯାତ୍ରାରେ ସ୍ୱାଭାବିକ ସ୍ତରକୁ ଫେରାଇ ଆଣିବା । ଆଶ୍ୱାସନା ଦ୍ୱାରା ତାଙ୍କ ମନୋବଳ ବୃଦ୍ଧି ହୋଇଥାଏ ।

(୪) ଆଜୀବିକା ଦାନ- ଜୀବନଯାପନ ଏବଂ ପରିବାର ପ୍ରତିପୋଷଣ ନିମିତ୍ତ ଆଜୀବିକା ଆବଶ୍ୟକ । ଯେଉଁ ବ୍ୟକ୍ତି କାହାରି ପାଇଁ ଆଜୀବିକା ବ୍ୟବସ୍ଥା କରିଥାନ୍ତି ସେହି ଦାନକୁ ଆଜୀବିକା ଦାନ କୁହାଯାଏ ।

(୫) ଛାୟାଦାନ- ରାସ୍ତାର ଉଭୟ ପାର୍ଶ୍ୱରେ ଛାୟା ଓ ଫଳପ୍ରଦ ବୃକ୍ଷ ଲଗାଇ ପଥିକମାନଙ୍କୁ ଛାୟାଦାନ କରାଯାଇଥାଏ ।

(୬) ଶ୍ରମଦାନ- ନିଜ ସାମର୍ଥ୍ୟ ଅନୁସାରେ ସୁଯୋଗ ଆସିଲେ ଶ୍ରମଦାନ କରିବାଦ୍ୱାରା ନିଜକୁ ଆନନ୍ଦ ଅନୁଭୂତି ମିଳିଥାଏ । କୌଣସି ବୃଦ୍ଧ, ଅସକ୍ତ ବ୍ୟକ୍ତିର ଜିନିଷପତ୍ର ଉଠାଇ ପାରୁନାହିଁ, ତେବେ ତା ଜିନିଷ ଉଠାଇ ଦିଅ,ଅସମର୍ଥ ପଡୋଶୀଙ୍କୁ ବଜାରରୁ ଜିନିଷପତ୍ର ଆଣିଦେବା, ଏ ସମସ୍ତ ଶ୍ରମଦାନ ଅନ୍ତର୍ଗତ । ବୃକ୍ଷରୋପଣ ଇତ୍ୟାଦିରେ ମଧ୍ୟ ଶ୍ରମଦାନ ହୋଇଥାଏ ।

(୭) ଶରୀରର ଅଂଗ ଦାନ - 'ଶରୀରଂ ବ୍ୟାଧିମନ୍ଦିରମ୍' କୁହାଯାଇଛି- ଆଜିକାଲି କାହାକୁ କେବେ ଅସାଧ୍ୟ ବ୍ୟାଧି ହେବ ତାହା କୁହାଯାଇନପାରେ । ପୁନଃ ଗାଡିମଟର ଇତ୍ୟାଦିର ବହୁଳ ବ୍ୟବହାର ଦୁର୍ଘଟଣା ଜନିତ କ୍ଷତି କ୍ରମଶଃ ବୃଦ୍ଧିପାଇବାରେ ଲାଗିଛି । ଏପରିସ୍ଥିତିରେ ରୋଗୀ ପାଇଁ ରକ୍ତର ପ୍ରୟୋଜନ ଜରୁରୀ । ରକ୍ତଦାନରେ କାହାରି ଜୀବନ ରକ୍ଷାହୋଇପାରେ । ତେଣୁ ରକ୍ତଦାନ କରି ନିଜେ ଅନ୍ୟର ଜୀବନ ରକ୍ଷାର ମହାଦାନୀ ହୋଇଯାଆନ୍ତୁ । ସେହିପରି କୀଡନି ଇତ୍ୟାଦି ଦାନ ଦ୍ୱାରା ଅନ୍ୟର ଅଶେଷ ଉପକାର ହୋଇ ପାରୁଛି । ସୁତରାଂ ସମୟ ସୁଯୋଗ ଆସିଲେ ସ୍ୱୟଂ ଅଙ୍ଗଦାନ କରି ମହାନ୍ ହୋଇଯାଆନ୍ତି ।

(୮) ସମୟଦାନ- ନିଃସ୍ୱାର୍ଥ ଭାବରେ କୌଣସି ସେବାକାର୍ଯ୍ୟରେ ଆପଣା ସମୟ ବିନିଯୋଗ କରିବା ହେଉଛି ସମୟଦାନ ।

(୯) କ୍ଷମାଦାନ- କୌଣସି ଶକ୍ତିଶାଳୀ ଏବଂ ସାମର୍ଥ୍ୟ ସଂପନ୍ନ ବ୍ୟକ୍ତି ଅପରାଧ ହେବାପରେ ମଧ୍ୟ ଅପରାଧୀକୁ ଦଣ୍ଡ ନଦେଇ କ୍ଷମା କରିଦେଇଥାନ୍ତି ଏହାକୁ କ୍ଷମାଦାନ କୁହାଯାଏ । କ୍ଷମାଶୀଳ ବ୍ୟକ୍ତିଙ୍କ ମହତ୍ତ୍ୱ ଶାସ୍ତ୍ରରେ ଦେଖିବାକୁ ମିଳେ ।

କ୍ଷମାଧର୍ମଃ କ୍ଷମାସତ୍ୟଂ କ୍ଷମାଦାନଂ କ୍ଷମାଯଶଃ ।

କ୍ଷମା ସ୍ୱର୍ଗୀୟ ସୋପାନ ମିତି ବେଦ ବିଦୋ ବିଦୁଃ ॥

କ୍ଷମା ହିଁ ଧର୍ମ, କ୍ଷମା ସତ୍ୟ, କ୍ଷମା ହିଁ ଦାନ, ଯଶ ଓ ସ୍ୱର୍ଗକୁ ଶିଡି । କ୍ରୋଧ ଉପରେ ବିଜୟୀ ହେବାପରେ କ୍ଷମାର ପ୍ରତିଷ୍ଠା ହୋଇଥାଏ ।

କ୍ଷମାକଲେ ଝିଅ କ୍ଷମାତ ମିଳଇ କ୍ଷମାର ନମିଳେ ଅନ୍ତ

କ୍ଷମାର ଗ୍ରହୀତା କ୍ଷମା ଦାତା ନୁହେଁ ଏଭୁବନେ ଭାଗ୍ୟବନ୍ତ ।

(ଶର୍ମିଷ୍ଠା -ନନ୍ଦକିଶୋର ବଳ)

(୧୦) ସମ୍ମାନଦାନ- କୌଣସି ବ୍ୟକ୍ତିକୁ ସମ୍ମାନ ଦେବାଦ୍ୱାରା ତାଙ୍କର ଅନ୍ତରାତ୍ମା ପ୍ରସନ୍ନ ହୋଇଯାଏ । ଏଣୁ ଅନ୍ୟକୁ ସମ୍ମାନ ଦେବାର ଅଭ୍ୟାସ ବୃଦ୍ଧି କରିବା ବିଧେୟ ।

ଗୋଧନ ଗଜଧନ ବାଜିଧନ ଓଉର ରତନ ଧନଦାନ

ତୁଳସୀ କହତ ପୁକାର କେ ବଡୋ ଦାନ ସମ୍ମାନ ॥

(୧୧) ବିଦ୍ୟାଦାନ- ବିଦ୍ୟା ମନୁଷ୍ୟର ସର୍ବୋତ୍ତମ ଧନ । ଏହା ଦ୍ୱିବିଧ, ଲୌକିକ ଓ ପାରଲୌକିକ । ବିଦ୍ୟା ତାହାକୁ କୁହାଯିବ, ଯଦ୍ୱାରା ମୁକ୍ତି ବା ମୋକ୍ଷ ମିଳେ । (ସାବିଦ୍ୟା ଯା ବିମୁକ୍ତୟେ) ଲୌକିକ ବିଦ୍ୟାର ମହତ୍ତ୍ୱ ସର୍ବବିଦିତ । ସବୁପଦାର୍ଥ ମଧ୍ୟରେ ଏହା ଉତ୍ତମ । ବିଦ୍ୟାଦାନ ଅନେକ ପ୍ରକାର କରାଯାଇପାରେ । ଅଧ୍ୟାପନା ଦ୍ୱାରା ଛାତ୍ରଙ୍କୁ ପୁସ୍ତକଦାନ ଦେଇ, ଛାତ୍ରବୃତ୍ତି, ଆବାସ ଏବଂ ଅନ୍ୟାନ୍ୟ ସାମଗ୍ରୀ ଦେଇ ବିଦ୍ୟାଦାନ କରାଯାଇଥାଏ । ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଏବଂ ଗବେଷଣା ପରିଷଦ ସ୍ଥାପନା ଦ୍ୱାରା ବିଦ୍ୟାଦାନର ମାର୍ଗ ପ୍ରଚଣ୍ଡ ହୋଇଥାଏ ।

(୧୨) ପୁଣ୍ୟଦାନ- କୌଣସି ଆପଣାର ବ୍ୟକ୍ତି ମୃତ୍ୟୁ ସମୟ ବା ମୃତ୍ୟୁପରେ ତାଙ୍କୁ ସଦ୍‌ଗତି ପ୍ରାପ୍ତି ପାଇଁ ତାଙ୍କର ଉଦ୍ଧାର ହୋଇଯାଉ, ଏଥିନିମିତ୍ତ ଦୟାପରବଶ ହୋଇ ଆପଣା ଜୀବନରେ କହିଥିବା ପୁଣ୍ୟ ଯଥାତୀର୍ଥ, ବ୍ରତ, ସଂଥସେବା, ଅନ୍ନଦାନ ଆଦି ପୁଣ୍ୟକୁ ଓ ପୁଣ୍ୟଫଳକୁ କାହାରିକୁ ସଂକଳ୍ପ କରିଦେବା, ପୁଣ୍ୟଦାନ ।

(୧୩) ଜପଦାନ- ପୁଣ୍ୟଦାନର ଏକ ଭିନ୍ନରୂପ ଜପଦାନ । କେହି କେହି ନିଜର ମାତାପିତା ନିଜର ସନ୍ତାନ ଆଦିଙ୍କର ସୁଖଶାନ୍ତି ତଥା ଆରୋଗ୍ୟ ନିମିତ୍ତ ଜପ କରିଥାନ୍ତି । ଏହା ମଧ୍ୟ ଏକ ଅପ୍ରତ୍ୟକ୍ଷଦାନ । କେହି ଅନ୍ୟର ମଙ୍ଗଳପାଇଁ ଜପଦାନ କରିବା ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ଏଥିରେ ଦୁଇଟି ଲାଭ ହୁଏ ପ୍ରଥମତଃ ପରୋପକାରୀ ଏବଂ ଆଧ୍ୟାତ୍ମିକ ପ୍ରବୃତ୍ତିର ବୃଦ୍ଧି ହୋଇଥାଏ ।

(୧୪) ଭକ୍ତିଦାନ- ଭଗବତ୍ ଭକ୍ତିର ମାର୍ଗ ନିର୍ଦ୍ଦେଶ କରି କାହାକୁ ସେହି ପଥରେ ଆରୂଢ଼ କରିଦେବା ହେଉଛି ଭକ୍ତିଦାନ ।

(୧୫) ଆଶିଷଦାନ- କୌଣସି ସାଧୁ ସନ୍ନ୍ୟାସୀ, ସନ୍ଥ, କର୍ମନିଷ୍ଠବ୍ରାହ୍ମଣ, ଅଥବା ସତୀସାଧ୍ୱୀ ପୌଢ ମହିଳାଙ୍କୁ ପ୍ରଣାମ, ଅଭିବାଦନ କରିବାପରେ, ସେ ଯେଉଁ ଆଶୀର୍ବାଦ ପ୍ରଦାନ କରିଥାନ୍ତି ତାହାକୁ ଆଶିଷଦାନ କୁହାଯାଇଥାଏ ।

ଏ ସମସ୍ତ ପ୍ରକାର ଦାନ ମାନବଜୀବନର କର୍ତ୍ତବ୍ୟ ରୂପରେ ଆଧ୍ୟାତ୍ମିକ ଉନ୍ନତିର ସାଧନ । ଏଥିସହିତ ଏପରି କିଛିଦାନ ରହିଛି ଯାହା ଦ୍ରବ୍ୟ ଉପରେ ହିଁ ଆଧାରିତ, ତାହାର ମଧ୍ୟ ମହତ୍ୱକମ୍ ନୁହେଁ ।

(୧) ଆଶ୍ରୟଦାନ- ଯେଉଁ ବ୍ୟକ୍ତି ସମ୍ପନ୍ନ ଏବଂ ଉଦାର ମନୋଭାବପନ୍ନ, ସେମନେ ଧର୍ମଶାଳା ଆଦି ନିର୍ମାଣ କରି ଯାତ୍ରୀମାନଙ୍କ ପାଇଁ ରାତିବିଶ୍ରାମର ଆଶ୍ରୟ ଦେଇଥାନ୍ତି । କେହି ଅନାଥାଶ୍ରମ, ବୃଦ୍ଧାଶ୍ରମ ଯେପରି ସଂସ୍ଥା ନିରାଶ୍ରୟକୁ ଆଶ୍ରୟ ଦେଇଥାନ୍ତି । ଯେଉଁଠି ଅନ୍ନ, ବସ୍ତ୍ର ଇତ୍ୟାଦିର ସୁବିଧା ରହିଥାଏ । ଏଥି ସହିତ କୌଣସି ଅଭ୍ୟାଗତ, ଅତିଥିଙ୍କୁ କିଛି ସମୟ ପାଇଁ ଆଶ୍ରୟ ଦେବା ପୂର୍ଣ୍ୟ ପ୍ରଦ ।

(୨) ଭୂମିଦାନ- ସଂପତ୍ତିଶାଳୀ ବ୍ୟକ୍ତି କୌଣସି ଗରିବ ବ୍ରାହ୍ମଣଙ୍କ ଅଥବା ନିଜ ଅଧୀନରେ ଥିବା ସେବକ, କର୍ମଚାରୀଙ୍କୁ ଭୂମିଦାନ କରିଥାନ୍ତି । ମନ୍ଦିର, ଗୋଶାଳା, ବିଦ୍ୟାଳୟ, ଧର୍ମଶାଳା ଇତ୍ୟାଦି ନିର୍ମାଣ ପାଇଁ ଭୂମି ଯୋଗାଇ ଦେବାକୁ ଭୂମିଦାନ କୁହାଯାଏ । ସନ୍ଥ ବିନୋବା ଭୂଦାନ ଆନ୍ଦୋଳନ କରି ବହୁ ଗରିବ ଲୋକଙ୍କର ମହୋପକାର ସାଧନ କରିଥିଲେ ।

(୩) ସ୍ୱର୍ଣ୍ଣଦାନ -ଦାନ ମଧ୍ୟରେ ସ୍ୱର୍ଣ୍ଣଦାନର ମହିମା ବିଶେଷ । ସ୍ୱର୍ଣ୍ଣଦାନ ଦ୍ୱାରା ଐଶ୍ୱର୍ଯ୍ୟ ଏବଂ ଆୟୁ ବୃଦ୍ଧି ହୋଇଥାଏ । କୌଣସି ବସ୍ତୁର ଅଭାବରେ ସେହି ବସ୍ତୁର ନିଷ୍କ୍ରିୟ ରୂପେ ସ୍ୱର୍ଣ୍ଣଦାନ ବିଧିରହିଛି ।

(୪) କନ୍ୟାଦାନ- ଭାରତୀୟ ସଂସ୍କୃତିରେ କନ୍ୟାଦାନର ମହିମା ଖୁବ୍ ବେଶୀ । ଶାସ୍ତ୍ରରେ କନ୍ୟାକୁ ଲକ୍ଷ୍ମୀରୂପେ ବିଚାର କରି ବିଷ୍ଣୁ ରୂପ ବରକୁ ପ୍ରଦାନ କରିବା ବିଧି । ଏଥି ସହିତ କନ୍ୟାର ମାତା-ପିତା ଭ୍ରାତା ବରବଧୂଙ୍କୁ ଆଭୂଷଣ, ପୋଷାକ ଏବଂ ସାମର୍ଥ୍ୟ ଅନୁସାରେ ଅର୍ଥଦାନ କରିଥାନ୍ତି । ଏହା ଏକ ବିଶିଷ୍ଟ ପରମ୍ପରା ।

(୫) ଆରୋଗ୍ୟଦାନ- ବ୍ୟାଧିଗ୍ରସ୍ତ ବ୍ୟକ୍ତିକୁ ଚିକିତ୍ସା ଉପଲବଧ କରିବା ଗରିବ ଅଥବା ଅସହାୟ ବ୍ୟକ୍ତିକୁ ଔଷଧ, ଫଳ ଆଦିରେ ସହାୟତା କରି ଏବଂ ରୋଗ ପ୍ରଶମନ ହେତୁ ସହାୟତା ବ୍ୟବସ୍ଥା ଦ୍ୱାରା ସୁସ୍ଥ କରିବାକୁ ଆରୋଗ୍ୟଦାନ କୁହାଯାଏ ।

(୬) ବସ୍ତ୍ରଦାନ- ମନୁଷ୍ୟର ପ୍ରାଥମିକ ଆବଶ୍ୟକତା ମଧ୍ୟରେ ଏହା ପରିଗଣିତ । କିଛି ନିର୍ଦ୍ଧନ ଏବଂ ଅସହାୟ ବ୍ୟକ୍ତିଙ୍କ ପାଖରେ ବସ୍ତ୍ରର ଅଭାବ ହେବାରୁ ତାଙ୍କ ଶରୀର ରକ୍ଷା ନିମନ୍ତେ ବସ୍ତ୍ରଦାନ ମହତ୍ତ୍ୱପୂର୍ଣ୍ଣ ଶୀତକାଳରେ  କମ୍ବଳ ଆଦି ଶୀତବସ୍ତ୍ର ଗରିବଛାତ୍ର ସାଧୁସନ୍ଥ, ନିର୍ଦ୍ଧନ ଅସହାୟ ଲୋକଙ୍କୁ ଦାନ ଦିଆଯାଏ ।

(୭) ଗ୍ରହଦାନ- ମନୁଷ୍ୟ ଜୀବନରେ ଗ୍ରହଦଶା ପରିବର୍ତ୍ତିତ ହୋଇଥାଏ । ଗ୍ରହ ଦଶାଅନୁସାରେ ଜୀବନରେ ଅନୁକୂଳତା ପ୍ରତିକୂଳତା ଅନୁଭୂତ ହୋଇଥାଏ । ପ୍ରତିକୂଳ ପରିସ୍ଥିତିରେ ଗ୍ରହଶାନ୍ତି ବିଧାନ ପାଇଁ ଜ୍ୟୋତିଷ ଏବଂ ଧର୍ମଶାସ୍ତ୍ର ମାନଙ୍କରେ ବ୍ୟାପକ ଚର୍ଚ୍ଚା ହୋଇଛି ।  ସେହିସେହି ଦାନ ବସ୍ତୁ ଗ୍ରହବିପ୍ର ବା ବ୍ରାହ୍ମଣମାନଙ୍କୁ ଦେଲେ ଗ୍ରହ ପ୍ରସନ୍ନତା ଲାଭ କରିଥାନ୍ତି ଏବଂ କିଛି ଅଂଶରେ ଶାନ୍ତ ହୋଇଥାନ୍ତି ।

(୮) ତୁଳାଦାନ- ଏହା ଜୀବନର ମହତ୍ତ୍ୱପୂର୍ଣ୍ଣ ଦାନ । ପ୍ରାଚୀନ କାଳରେ  ରାଜା ସ୍ୱର୍ଣ୍ଣଦ୍ୱାରା ତୁଳାଦାନ କରିଥାନ୍ତି । ଶାସ୍ତ୍ରରେ ବିବିଧ ଦ୍ରବ୍ୟ୍‌ରେ ତୁଳାଦାନର ଫଳ ମଧ୍ୟ ଉଲ୍ଲିଖିତ । କିନ୍ତୁ କୌଣସି କାମନା ନରଖି ଭଗବତ୍ ପ୍ରାପ୍ତି ଉଦ୍ଦେଶ୍ୟରେ ତୁଳାଦାନ କରିବା ବିଶେଷ କଲ୍ୟାଣକାରୀ ।

(୯) ପିଣ୍ଡଦାନ- ମୃତ୍ୟୁପରେ ମୃତବକ୍ତିର ସୁଖଶାନ୍ତି ପାଇଁ ଶାସ୍ତ୍ରରେ ପିଣ୍ଡଦାନ ପ୍ରକ୍ରିୟା ରହିଛି । ମୃତ ବ୍ୟକ୍ତିର ପୁତ୍ର,ନାତିଙ୍କର କର୍ତ୍ତବ୍ୟ ଏହି ଯେ ମୃତ୍ୟୁପରେ ଶାସ୍ତ୍ରାନୁମୋଦିତ ପିଣ୍ଡଦାନ ଆଦିର ପ୍ରକ୍ରିୟା ପୂର୍ଣ୍ଣ କରନ୍ତୁ ।  ତୀର୍ଥ କ୍ଷେତ୍ର ମାନଙ୍କରେ ପିଣ୍ଡ, ତର୍ପଣ ଦାନର ମହତ୍ତ୍ୱ ଅଧିକ, ଗୟାରେ ପିଣ୍ଡଦାନର ଏକ ସ୍ୱତନ୍ତ୍ରତା ରହିଛି ।

(୧୦) ଗୋଦାନ -ଶାସ୍ତ୍ରରେ ଗୋଦାନର ମହିମା ବିସ୍ତୃତ ଭାବେ ଲକ୍ଷ୍ୟ କରାଯାଇପାରେ । ପ୍ରାଚୀନ କାଳରେ ଗୋରୁଗାଈକୁ ପ୍ରମୁଖଧନ ଭାବେ ବିଚାର କରାଯାଉଥିଲା । ଲୌକିକ ଓ ପାରଲୌକିକ ସମସ୍ତ ପ୍ରକାର ଫଳ ପ୍ରାପ୍ତି ପାଇଁ ଗୋଦାନକୁ ସର୍ବଶ୍ରେଷ୍ଠ ବିଚାର କରାଯାଏ ।

ଗୋକୃତେ ସ୍ତ୍ରୀ କୃତେ ଚୈବ ଗୁରବିପ୍ରକୃତେଽପିବା ।

ହନ୍ୟତେ ଯେ ତୁ ରାଜେନ୍ଦ୍ର ଶକ୍ରଲୋକଂ ବ୍ରଜନ୍ତି ତେ ॥

ଅର୍ଥାତ୍ ଗୋରକ୍ଷା, ଅବଳା ନାରୀଙ୍କ ସୁରକ୍ଷା, ଗୋରୁ ଏବଂ ବ୍ରାହ୍ମଣଙ୍କ ରକ୍ଷା ପାଇଁ ଯେ ପ୍ରାଣ ଉତ୍ସର୍ଗ କରେ ସେ ରାଜେନ୍ଦ୍ର ଯୁଧିଷ୍ଠିର ! ସେ ବ୍ୟକ୍ତି ଇନ୍ଦ୍ରଲୋକ ସ୍ୱର୍ଗବାସୀ ହୋଇଥାଏ ।

ବାରମାସର ଦାନ- ଆମଦେଶରେ ଛ ଋତୁ ଏବଂ ବାରମାସ ଅନୁଭୂତ ହୁଏ । ମାସ ତଥା ଋତୁ ଅନୁସାରେ ବିବିଧ ପ୍ରକାର ଦାନ ଦେବାର ବିଧି ରହିଛି । ଯେପରି ଗ୍ରୀଷ୍ମଋତୁରେ ଜଳଦାନ, ଛତ୍ର, ପଙ୍ଖା ଆଦିର ଦାନ, ଶୀତଋତୁରେ ଶୀତବାଧା ନିବାରଣ ପାଇଁ ବସ୍ତ୍ରଦାନ, ଅନ୍ନଦାନ, ଲବଣ, ଗୁଡ, ଘୃତ ଇତ୍ୟାଦି ଗରମ ବସ୍ତର ଦାନ କରିବା ଉଚିତ୍ । ମକର ଏବଂ ମେଷ ସଂକ୍ରାନ୍ତି ଅବସରରେ ଛତୁଆ, ତିଳ ଏବଂ ଖେଚୁଡି ଦାନ ପାଇଁ ନିର୍ଦ୍ଦେଶ ରହିଛି । ଏହା ବ୍ୟତୀତ ବର୍ଷର ପ୍ରତ୍ୟେକ ମାସରେ କୌଣସି ଅନ୍ନ ଏବଂ ପଦାର୍ଥର ଦାନ ବିଧାନ ନିର୍ଦ୍ଦେଶିତ ହୋଇଛି ।

ପୌରାଣିକ ବିଋର ଆଧାରରେ ବିବିଧ ବସ୍ତୁର ଅଧିଷ୍ଠାତା ଦେବତା ମଧ ପୃଥକ ପୃଥକ ହୋଇଥାନ୍ତି । ଆକାଶର ଦେବତା-ବିଷ୍ଣୁ, , ଅଗ୍ନିର -ମହେଶ୍ୱରୀ ବାୟୁର ସୂର୍ଯ୍ୟ, ପୃଥିବୀର ଶିବ ଏବଂ ଜଳରଃ ଅଧିପତି ଗଣେଶ । ପୃଥିବୀରେ ଯେଉଁ ଦ୍ରବ୍ୟ ସଂବିଧିତ ତାର ଦେବତା ପୃଥକ୍ । ବସ୍ତୁ ଦାନସମୟରେ ଦେବତାଙ୍କ ନାମ ସଂକଳ୍ପ କାଳରେ ଉଲ୍ଲେଖ ହୋଇଥାଏ । ତୈତ୍ତିରୀୟ ଆରଣ୍ୟକରେ ନିର୍ଦ୍ଦେଶ ରହିଛି କି ବସ୍ତ୍ରର ଦେବତା ସୋମ, 'ଗୋ'ର ଦେବତା ରୁଦ୍ର, ଅଶ୍ୱର ଦେବତା ବରୁଣ, ପୁରୁଷର ଦେବତା ପ୍ରଜାପତି, ଶଯ୍ୟାର ଦେବତା ମନୁ, ଅଜା (ଛେଳି)ର ଦେବତାତ୍ୱଷ୍ଟା, ମେଷର ଦେବତା ପୂଷା ଅଶ୍ୱ ଗର୍ଦ୍ଦଭର ଦେବତା ନିୟତି, ହାତୀର- ହିମବାନ୍, ମାଳା-ଅଳଂକାରର ଦେବତା ଗନ୍ଧର୍ବ, ଧାନ୍ୟପଦାର୍ଥର ବିଶ୍ୱଦେବ, ଅନ୍ନର ବାକ୍, ଭାତର - ବ୍ରହ୍ମା,ଜଳର ସମୁଦ୍ର, ଯାନ ଆଦିର ଉତ୍ତନାଂଗିରସ ଏବଂ ରଥର ଦେବତା ବୈଶ୍ୱାନର ।

ବିଷ୍ଣୁଧର୍ମୋତ୍ତର ପୁରାଣରେ ବିସ୍ତୃତ ଭାବେ ଏହା ଚର୍ଚ୍ଚିତ ।

| ଦେୟ ଦ୍ରବ୍ୟ | ଦେବତା |
|---|---|
| ଭୂମି | ବିଷ୍ଣୁ |
| ଧେନୁ | ରୁଦ୍ର |
| କୁମ୍ଭ, କମଣ୍ଡଳୁ ଆଦି ଜଳପାତ୍ର,ସମୁଦ୍ରୋତ୍ପନ୍ନ ରତ୍ନାଦି | ବରୁଣ |
| ସ୍ୱର୍ଣ୍ଣ ତଥା ସମସ୍ତ ଲୌହ ପଦାର୍ଥ | ଅଗ୍ନି |
| ସମସ୍ତ ଫସଲ ପକ୍ୱାନ୍ନ ପଦାର୍ଥ | ପ୍ରଜାପତି |
| ସମସ୍ତ ସୁଗନ୍ଧ ପଦାର୍ଥ | ଗନ୍ଧର୍ବ |
| ବିଦ୍ୟା ତଥା ପୁସ୍ତକ | ସରସ୍ୱତୀ (ବ୍ରାହ୍ମୀ) |

| | |
|---|---|
| ଶିଳ୍ପ ପଦାର୍ଥ (ବାସନକୁସନ) | ବିଶ୍ୱକର୍ମା |
| ବୃକ୍ଷ, ପୁଷ୍ପ, ଶାକ, ଫଳ | ବନସ୍ପତିଦେବତା |
| ଛତ୍ର, ଶଯ୍ୟା, ରଥ,ଆସନ, ଉପାନହ, | |
| ପ୍ରାଣର ହିତପଦାର୍ଥ | ଆଂଗିରସ |
| ଗୃହ | ସର୍ବଦୈବତ (ବିଶ୍ୱଦେବ) |
| ଅନ୍ୟ ଅନୁକ୍ତ ପଦାର୍ଥ | ବିଷ୍ଣୁ |

ଦାନର ମହତ୍ତ୍ୱରେ ବଡ ରହସ୍ୟ ଲୁକ୍‌କାୟିତ ରହିଛି । ବାସ୍ତବରେ ପ୍ରତ୍ୟେକ ସତ୍‌କାର୍ଯ୍ୟ ହେଉଛି ଦାନ । ଯଦି ଆମେ ନିଜ ଭାଇ ସହ ହସଖୁସିରେ କଥାବାର୍ତ୍ତା କଲୁ ତାହା ମଧ୍ୟ ଦାନ । ଯଦି ଆମେ ନିଜ ସାଙ୍ଗସାଥୀ ଅଥବା କୌଣସି ଅନ୍ୟ ବ୍ୟକ୍ତିକୁ ସତ୍‌କର୍ମର ପ୍ରେରଣା ଦେଉଁ ବା ତାଙ୍କ ହିତରେ କୌଣସି ସତ୍ ପରାମର୍ଶ ଦେଉ ତେବେ ତାହା ମଧ୍ୟ ଦାନ । ଭୂଲଭଟକା ବାଟୋଇକୁ ପ୍ରକୃତ ମାର୍ଗରେ ପହଂଚାଇବା ଅନ୍ଧବ୍ୟକ୍ତିକୁ ମାର୍ଗ ବତାଇଦେବା , ସଡକରେ ପଡିଥିବା ପଥର କଣ୍ଟାକୁ କାଢି ଦେବା, ଭୋକିଲା ବ୍ୟକ୍ତିଙ୍କୁ ଅନ୍ନ ଏବଂ ତୃଷାର୍ତ୍ତକୁ ଜଳ ଦେବା ଏ ସମସ୍ତ ଦାନ କୋଟୀର ଅନ୍ତର୍ଗତ ।

ମହାଭାରତର ଏକ ପରିଚିତ ଆଖ୍ୟାନ- ଯୁଧିଷ୍ଠିର ମହାରାଜଙ୍କର ଅଶ୍ୱମେଧ ଯଜ୍ଞ ସମାପ୍ତ ପ୍ରାୟ । କିଛି ବ୍ରାହ୍ମଣ ଏହି ଯଜ୍ଞର ଭୂୟସୀ ପ୍ରଶଂସା କରୁଥିଲେ । ଏହି ସମୟରେ ଏକ ବିଚିତ୍ର ନେଉଳ କେଉଁଠୁ ଆସି ପହଞ୍ଚିଗଲା ଯାହାର ଅର୍ଦ୍ଧେକ ଅଂଶ ସୁନା ହୋଇଯାଇଛି । ଏ ବିରାଟ ଯଜ୍ଞ ଆୟୋଜନ ତଥା ଏହାର ଫଳକୁ ସେ କୁରୁକ୍ଷେତ୍ରର ଏକ ଦରିଦ୍ର ବ୍ରାହ୍ମଣର ସେରେ ଛତୁଆ ସହ ସମାନ ନୁହେଁ ବୋଲି ପ୍ରକାଶ କଲା ।

ବ୍ରାହ୍ମଣ ତାର ପତ୍ନୀ, ପୁତ୍ର ଏବଂ ପୁତ୍ରବଧୂ- ପରିବାରରେ ଏହି ଚାରିଜଣ । ଥରେ ପ୍ରବଳ ଦୁର୍ଭିକ୍ଷ ପଡିଲା । ତିନିଦିନ ପର୍ଯ୍ୟନ୍ତ ଆହାର ମିଳିଲା ନାହିଁ । ଭିକ୍ଷାରେ ଏକସେର ଯଅ ମିଳିଲା । ସେମାନେ ତାକୁ ଛତୁଆ ତିଆରି କଲେ । ସମସ୍ତଙ୍କ ପାଇଁ ସମାନ ଭାଗ କରି ଛତୁଆ ରଖାଗଲା ଏବଂ ଖାଇବା ପାଇଁ ଉଦ୍ୟତ ହୁଅନ୍ତେ ଜଣେ ବ୍ରାହ୍ମଣ ଅତିଥି ଆସିଗଲେ । ତାଙ୍କୁ ପାଦ୍ୟ ଅର୍ଘ ଦେଇ ସତକାର କରି ଏକ ଚତୁର୍ଥାଂଶ ଛତୁଆ ଦେଲେ । ତହିଁରେ ସେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । କ୍ରମଶଃ ସମସ୍ତଙ୍କ ଭାଗ ଛତୁଆ ତାଙ୍କୁ ଦେଇଦେଲେ, ବସ୍ତୁତଃ ଧର୍ମ ବ୍ରାହ୍ମଣ ବେଶରେ ଅତିଥି ହୋଇଥିଲେ ।

ତାଙ୍କୁ ସଶରୀରେ ସ୍ୱର୍ଗ ଗାମୀ ହେବାପାଇଁ ଆଶୀର୍ବାଦ କଲେ ସ୍ୱର୍ଗରୁ ବିମାନ ଆସିଲା ସପରିବାର ବିମାନ ଆରୋହଣ କରି ସ୍ୱର୍ଗଗାମୀ ହେଲେ ।

ଏହି ଅବସ୍ଥାରେ ପଡିଥିବା ଛତୁକଣିକା, ସ୍ୱର୍ଗୀୟ ପୁଷ୍ପ ଏବଂ ଜଳ,ମାଟି ଇତ୍ୟାଦି ଉପରେ ଗଡିଯିବାରୁ ନେଉଳର ମୁଖ ସହ ଅର୍ଦ୍ଧଶରୀର ସୁନା ହୋଇଯାଇଛି । ସେହିଦିନଠାରୁ ମୁଁ ଅନେକ ଯଜ୍ଞ ସ୍ଥଳ ପରିକ୍ରମା କରିଛି । ପୁନଃ ଏଠାକୁ ମଧ ଆସିଛି କିନ୍ତୁ ମୋର ବାକୀ ଅର୍ଦ୍ଧେକ ଶରୀର ସୁବର୍ଣ୍ଣ ହେଲାନାହିଁ । ଏଣୁ ଏହି ଯଜ୍ଞ ସେହି ସେରକ ଛତୁଆ ଦାନ ତୁଲ୍ୟ ନୁହେଁ । ଏଥିରୁ ଜଣାଗଲା ଦାନ ଏବଂ ତ୍ୟାଗର ପରିମାଣରେ ଏତେ ମହତ୍ତ୍ୱ ନାହିଁ ଯେଉଁ ବୃତ୍ତିରେ ଦାନ ଦିଆଯାଏ, ମହତ୍ୱ ତାର ହିଁ ଅଧିକ । ଯଦି ଦିଆଯାଇଥିବା ଦାନପଛରେ ଯଶ ଲିପ୍‌ସା, ଟିଭି ଖବରକାଗଜରେ ପ୍ରଚାରର ଇଛା ବା ଅହଂଭାବ ରହିଛି, ତେବେ ସେହିଦାନ, ଦାନ ହୋଇ ମଧ ଉଚ୍ଚକୋଟୀର ହୋଇନପାରେ । ଦାନରେ ଦେବାର ଖର୍ଚ୍ଚ, ଏପରିକି ଭାବନା ନଆସିଲେ ତ ତାହା ମହାନ୍‌ଦାନ । ଏହି ଅନୁଭବ ମନରେ ରହିବା ଉଚିତ କି ସବୁକିଛି ପ୍ରଭୁଙ୍କର, ମୋର ନିଜର କିଛି ନାହିଁ । ଏହି ବିଚାର ଦାନର ସାତ୍ତ୍ୱିକତା ନିହିତ । ସବୁ ତାଙ୍କର ଏବଂ ତାଙ୍କ ପ୍ରେରଣାରେ ସବୁହୋଇଛି । ଏଣୁ ତାଙ୍କ କୃପାରେ ଏହି ପୁଣ୍ୟକାର୍ଯ୍ୟ ହେଲା, ମୁଁ ଧନ୍ୟ ହୋଇଗଲି, ମୋର ଧନ ଧାନ୍ୟ କିମ୍ବା ପୌରୁଷ ସଫଳ ହେଲା, ଏହି ଭାବନା ଦାନରେ ହେବା ଉଚିତ୍ ।

ଦାନ ଧର୍ମ, ଅର୍ଥ କାମ ତଥା ମୋକ୍ଷ ଏହି ଚତୁର୍ବର୍ଗର ପ୍ରାପ୍ତିର ସର୍ବଶ୍ରେଷ୍ଠ ସାଧନ ହେଉଛି- ଧର୍ମାର୍ଥ କାମ ମୋକ୍ଷାଣାଂ ସାଧନଂ ପରମଂ ସ୍ମୃତମ୍ -

ଯଦ୍ଦଦାତି ବିଶିଷ୍ଟେଭ୍ୟୋ ଯଚ୍ଚା ଶ୍ନାତି ଦିନେଦିନେ ।

ତଚ୍ଚ ବିତ୍ତ ମହଂମନ୍ୟେ ଶେଷଂ କସ୍ୟାପି ରକ୍ଷତି ॥

ଯେ ବିଶିଷ୍ଟ ସତ୍‌ପାତ୍ରରେ ଦାନ ଦେଇଥାଏ ଏବଂ ଯେ କିଛି ନିଜର ଭୋଜନ ଆଚ୍ଛାଦନରେ ପ୍ରତିଦିନ ବ୍ୟବହାର କରିଥାଏ, ତାହାକୁ ମୁଁ ସେହି ବ୍ୟକ୍ତିର ବାସ୍ତବିକ ଧନ ବା ସଂପତ୍ତି ମାନୁଅଛି, ଅନ୍ୟଥା ଅବଶେଷ ସଂପତ୍ତି ତ ଅନ୍ୟ କାହାରି, ଯାହାର ସେ କେବଳ ରକ୍ଷଣଶୀଳ ମାତ୍ର କରିଥାଏ ।



“ବେଦ”ର ଅର୍ଥ ଜ୍ଞାନ। “ଅନ୍ତ”ର ଅର୍ଥ ହେଉଛି ସର୍ବଶ୍ରେଷ୍ଠ । ତେଣୁ ବେଦାନ୍ତ ହେଉଛି ସର୍ବଶ୍ରେଷ୍ଠ ଜ୍ଞାନ।

ବେଦାନ୍ତ ସର୍ବୋତ୍ତମ ସତ୍ୟର ଶିକ୍ଷାଦିଏ ଯାହାକୁ ଆତ୍ମଜ୍ଞାନ କୁହାଯାଏ। ଏହି ସର୍ବୋତ୍ତମ ସତ୍ୟକୁ ବେଦାନ୍ତରେ ବ୍ରହ୍ମ ବୋଲି କୁହାଯାଇଛି। ଜଗତରେ ଯାହାକିଛି ଦୃଶ୍ୟମାନ ହେଉଛି ତାହା ବ୍ରହ୍ମର ପରିପ୍ରକାଶ। ବେଦାନ୍ତ ଏହି ଶିକ୍ଷା ପ୍ରଦାନ କରେ।

ମନୁଷ୍ୟ ଜନ୍ମ ସୁଖ ଦୁଃଖରେ ଭରା। ମାତ୍ର ମନୁଷ୍ୟ ସବୁସମୟରେ ଆନନ୍ଦ ଚାହେଁ ସୁଖ ଚାହେଁ, ଦୁଃଖ ନୁହେଁ। କାରଣ ମନୁଷ୍ୟର ସ୍ୱରୂପ ହେଉଛି ଆନନ୍ଦ ସ୍ୱରୂପ। ମାତ୍ର ଏହି ଆନନ୍ଦ ମାୟାଦ୍ୱାରା ଆବୃତ ହୋଇରହିଛି। ଏହି କୁହୁଡ଼ି ରୂପକ ମାୟା ଦୂରହେବ ପ୍ରଖର ସୂର୍ଯ୍ୟରଶ୍ମୀ ଦ୍ୱାରା ଯାହାକୁ ଆମେ ଆତ୍ମଜ୍ଞାନ ବୋଲି କହିପାରିବା।

ଅଗ୍ନିରେ ଅବିଦ୍ୟା ଭସ୍ମୀଭୂତ ହେଲେ ବିଦ୍ୟାରୂପ ସୁବର୍ଣ୍ଣ ଜାଜ୍ୱଲ୍ୟମାନ ହୋଇ ଉଠିବ। ଆତ୍ମଜ୍ଞାନ ଜାଗ୍ରତ ହେବ।
ବେଦାନ୍ତର ଶିକ୍ଷା ଏହି ଆତ୍ମଜ୍ଞାନର ଶିକ୍ଷା।